ସୁବିଖ୍ୟାତ କବି

ଉପେନ୍ଦ୍ରଭଞ୍ଜଙ୍କ ବିରଚିତ

# ବୈଦେହୀଶବିଳାସ

ତୃତୀୟ ଖଣ୍ଡ

ସଂସ୍କୃତ ବିଶାରଦ ପଣ୍ଡିତବର୍ଗଙ୍କ ଦ୍ୱାରା

ସରଳାର୍ଥ ଓ ଟୀକା ସହିତ ସଂଶୋଧିତ

ପ୍ରକାଶକ — ଶ୍ରୀ ଗୌରଚନ୍ଦ୍ର ଦାନ୍

ଖଟବିନ୍ ସାହି, କଟକ

ପ୍ରାପ୍ତିସ୍ଥାନ

ଓଡ଼ିଶା ଜଗନ୍ନାଥ କମ୍ପାନୀ

ଶ୍ରୀ ଜଗନ୍ନାଥ ସିଂହ

ବାଲୁବଜାର ପୋ: ଚାନ୍ଦନୀଚୌକ

କଟକ

# ବୈଦେହୀଶ ବିଳାସ

## ତୃତୀୟ ଖଣ୍ଡ ।



### ସପ୍ତବିଂଶ ଛାନ୍ଦ

( ରାଗ ଭୈରବ-ଆଦ୍ୟନ୍ତାନୁପ୍ରାସ )

ବିଜୟୀ ଯେ ଜଗତରେ କାତରେ ବିମନେ ।
ବିଜୟୀ ପଥେ ତୋଳିଲେ କଦମ୍ବ ସୁମନେ ।
ବୀର ହେଜେ ଯେଉଁ ଦିନ କରିବ ଦର୍ଶନ ।
ବିରହେ ଯେ ହୋଇଥିବ କପୋଳ ଏସନ । ୧ ।

---

ସପ୍ତବିଂଶ ଛାନ୍ଦ ।

୧ମ ପଦ—ଜଗତରେ (ସଂସାର ଭିତରେ) ବିଜୟୀ "ଅଟନ୍ତି ଏମନ୍ତ" ଯେ (ରାମ) ୧କାତରେ (ବିରହରେ ବ୍ୟାକୁଳ ହୋଇ) ୨ବିମନେ (ଦୁଃଖିତ ମନରେ) ପଥେ (ମାର୍ଗରେ) କଦମ୍ବ ସୁମନେ (କଦମ୍ବ ଫୁଲ) ଗୋଟିଏ ତୋଳିଲେ । ବୀର (ରାମଚନ୍ଦ୍ର) ମନରେ ହେଜିଲେ 'ମୋର ପ୍ରିୟାଙ୍କୁ' ଯେଉଁଦିନ ଦର୍ଶନ କରିବ ? ସେ (ପ୍ରିୟା) ବିରହେ (ବିରହରେ) କପୋଳ (ତାହା ଗଣ୍ଡସ୍ଥଳ) ଏସନ (ଏହି କଦମ୍ବ ଫୁଲପରି) ହୋଇଥିବ । ଏରୂପ ରୋମାଞ୍ଚିତ ହୋଇଥିବ ଏହି ତାତ୍ପର୍ଯ୍ୟାର୍ଥ । ୧ ।

---

୧—ଅଧୀରେ କାତରେ ତ୍ରସ୍ନୁ ରିତ୍ୟମରଃ ।

୨—ଦୁର୍ମନା ବିମନା ଅନ୍ତର୍ମନାଃ ସ୍ୟାଦିତ୍ୟମରଃ ।

ବିବସନ କରି ନଖ ଶୂଳକେ କଣ୍ଟିତ ।
ବିବଶରୁ ହେବ କି ଏରୂପେ ରୋମାଞ୍ଚିତ ।
ବଙ୍କିଲ ହରି ଖୋଜିଲେ ନ ପାଇ ବିମନ୍ତ ।
ବଙ୍କିମନୟନା ମୋ ହୋଇଲା ଏଦ୍ଧିମନ୍ତ । ୨ ।
ବିଚକ୍ଷଣ ହୋଇଲେ କି ହେବ ପରମ୍ପରା ।
ବିଚଳିତ ଜନ୍ମ ଠାବ ନ କରିବ ପରା ।
ବିବେକ ଜାତରେ ପୁଷ୍ପ ପକାଇ ବେଗରେ ।
ବିବେଚନା କଲେ ଅଛି କର୍ବୁରନଗରେ । ୩ ।
ବହିଲେ କୋପ ଛେଦି ପକାଇଦେବ ଶିର ।
ବହିଲେ ପଥେ ଝମକ ପ୍ରକାଶି ଅସିର ।

---

୨ୟ ପଦ—ବିବସନ ନଖ କଣ୍ଟିତ ନଖଶୂଳକେ ବିବଶରୁ (ଅବଶରୁ) ଏରୂପେ (ଏକ କଦମ୍ବଫୁଲ ପରି) ରୋମାଞ୍ଚିତ ହେବ କି ? ଏମନ୍ତ ବିଗ୍ଭରି ବଙ୍କିଲ (ବଙ୍କଲ ବୃକ୍ଷ ନାଡ଼) ହରି (ଛଡ଼ାଇ) ସେହି ଛେଦନ 'ସ୍ଥାନକୁ' ଖୋଜିଲେ "ରୋମାଞ୍ଚ" ନ ପାଇ ବିମନ୍ତ (ବିମନା) ହେଲେ । ବଙ୍କିମନୟନା (ବକ୍ରଦୃଷ୍ଟି ପ୍ରିୟା) ଏଦ୍ଧିମନ୍ତ (ଏରୂପେ) ହଜିଲା । ଏଧ୍ୱାକୁ ଖୋଜି ନ ପାଇଲ ପରି ତାକୁ ନ ପାଇଲ ଏତ୍କଥା । ୨ ।

୩ୟ ପଦ—ବିଚକ୍ଷଣ (ପଣ୍ଡିତ) ହୋଇଲେ କି ହେବ "ମୁଁ" ବିଚଳିତ ଜନ୍ମ (ମୋ ଧୈର୍ଯ୍ୟ ବିଚଳିତ ହେବାରୁ) ପରମ୍ପରା (ପରିପାଟି କରି) ଠାବ ନ କରିବ ପରା (ପ୍ରିୟାକୁ ଖୋଜି ଠାବ କରି ନ ପାରିବ ପରା) ? "ପୁଣି" ବିବେକ (ସଜ୍ଞାନ) ଜାତରେ (ଜାତ ହୁଅନ୍ତେ) ବେଗରେ (ଶୀଘ୍ର) ପୁଷ୍ପ (କଦମ୍ବ ଫୁଲ) ପକାଇ "ଦେଇ" ବିବେଚନା (ବିଗ୍ଭର) କଲେ "ମୋ ପ୍ରିୟା" [1]କର୍ବୁର ନଗରେ (ଲଙ୍କାପୁରେ) ଅଛି । ୩ ।

୪ର୍ଥ ପଦ—ଯେମନ୍ତ ବିଗ୍ଭର ରାମ କୋପ ବହିଲେ (କଲେ), ଶିର (ସେ ରକ୍ଷସ ମସ୍ତକ) ଛେଦି ପକାଇ ଦେବ । ଅସିର ଝମକ ପ୍ରକାଶି (ଖଡ୍ଗ-ଝମକାଇ) ପଥ ବହିଲେ (ବାଟ ଗ୍ଭଲିଗଲେ) । ଧୃତ ଧନୁଶର (ଧନୁଶର

---

[1]—କର୍ବୁରେ ନଇଋତରାକ୍ଷସ ଇତ୍ୟମରଃ ।

ବିରାଧଙ୍କର ଲକ୍ଷ୍ମଣ ଧୃତ ଧନୁଶର ।
ବିରାଜିଲେ ଋଷ୍ୟମୂକ ଗିରି-ପାରୁଶର ।୪।
ବିବରଗତ ସୁଗ୍ରୀବ ଦେଖି ସେ ଉଭୟ ।
ବି-ବର ଦର୍ଶନେ ଯଥା ପନ୍ନଗ ସଭୟ ।
ବିଳସ୍ଥ କରି ପେଶିଛି ପାଞ୍ଚ ବେନି ଗୃର ।
ବିଳମୁଖଙ୍କ ଯେଣୁ ଗିରି ଅପ୍ରଗୃର । ୫ ।
ବିଧିବେ ମୋତେ ବିଗୃରି ବେପଥୁ ରଚନ ।
ବଧିର ପ୍ରାୟ ନ ଶୁଣେ ମନ୍ତ୍ରୀଙ୍କ ବଚନ ।
ବାଳିଶ କି ତୁମ୍ଭେ, ତାକୁ କହେ ହନୁମାନ ।
ବାଳି ବିନା ପରାକ୍ରମେ କେ ଆମ୍ଭ ସମାନ । ୬ ।

ଧାଷ୍ଣ) ବିରାଧପର (ଦମ) ଲକ୍ଷ୍ମଣ ଋଷ୍ୟମୂକ ଗିରି ପାରୁଶର (ଋଷ୍ୟମୂକ ପର୍ବତ ପାଖରେ) ବିରାଜିଲେ (ପ୍ରବେଶିଲେ) । ୪ ।

୫ମ ପଦ—ସୁଗ୍ରୀବ (ବାଳିର ଭାଇ) ସେ ଉଭୟ (ରାମ ଲକ୍ଷ୍ମଣ ଦୁହିଁଙ୍କି) ଦେଖି ଯଥା ପନ୍ନଗ (ସର୍ପ) ବି-ବର (ଗରୁଡ଼ଙ୍କୁ) ଦର୍ଶନେ (ଦେଖି) ସଭୟ (ଭୟଯୁକ୍ତ ହୋଇ) ବିବରଗତ ହୁଏ (ଗାତରେ ପଶେ) ତଥା ବିବରଗତ ହେଲେ (ଗୁହାରେ ଲୁଚିଲେ) । ବିଳମୁଖଙ୍କ (ବାଳିର) ଯେଣୁ ଅପ୍ରଗୃର (ଅଗମ୍ୟ) ଗିରି (ଋଷ୍ୟମୂକ) "ତେଣୁ" ବିଳସ୍ଥ (ବଳବନ୍ତ) ବେନି ଗୃର ପେଶିଛି "ମନ୍ତ୍ରୀ" ପାଞ୍ଚ (ବିଗୃର) କରି (କଲ) । ୫ ।

୬ଷ୍ଠ ପଦ—ମୋତେ "ଏ ଦୁହେଁ" ବଧିବେ ବିଗୃରି ବେପଥୁ (କମ୍ପ) ରଚନ "ହେଲ" (ଜାତ ହେଲ) । ମନ୍ତ୍ରୀଙ୍କ ବଚନ ବଧିର (କାଲ) ପ୍ରାୟ ନ ଶୁଣି "ହେବା" । ହନୁମାନ୍ ତାକୁ କହେ, ତୁମ୍ଭେ ବାଳିଶ (ପିଲା) କି ? ବାଳି (କିଷ୍କିନ୍ଧ୍ୟା ରାଜା) ବିନା ପରାକ୍ରମେ (ବିକ୍ରମରେ) ଆମ୍ଭ ସମାନ କେ (କେଉଁ ଲୋକ) ଅଛି । "ବାଳି ବ୍ୟତିରେକେ ଆମ୍ଭଙ୍କୁ ଜୟ କରିବାକୁ କେହି ନାହିଁ, ତୁମ୍ଭେ କାହିଁକି ଡରୁଛ ଏହି ଭାବ" ।୬।

୧—ଶାଖାମୃଗ ବଳୀମୁଖା ଇତ୍ୟମରଃ ।
୧—ବାଳଶସ୍ତୁ ଶିଶୌ ମୂର୍ଖେ ଇତି ମେଦିନୀ ।

ବଧୂରେ ଏ ପ୍ରଭା ଥିବ ଲକ୍ଷ ଯୋଖିବାରେ ।
ବଧୂରେ ଏ ପ୍ରଭା ନାହିଁ ପୂର୍ଣ୍ଣେ ଦେଖିବାରେ ।
ବାନପ୍ରସ୍ଥ-ବେଶଧାରୀ ମନକୁ ନ ପାଇ ।
ବାନରପତିର ଦୂତ ହେବେ ଏ କପାଇଁ । ୭ ।
ବଶୀଭୂତ ନୋହି ନଭୋମାର୍ଗେ ସ୍ୟନ୍ଦନରେ ।
ବସି ଯାଉଥିଲା ବାମା ଯୁକ୍ତ କ୍ରନ୍ଦନରେ ।
ବଲ୍ଲରୀ ପଶୁ ପକ୍ଷୀଙ୍କି କରୁଥିଲା ସାକ୍ଷ ।
ବଲ୍ଲଭ ସେ ନାରୀର ହେବେ କି ସାରସାକ୍ଷ । ୮ ।
ବରହୀ ହେଲା ପର୍ଯ୍ୟ ଦଶଇ ତନୁତ ।
ବଟଶ୍ରୀ ରଚିବାରେ ସୁନ୍ଦରେ ଏତ ନୁତ ।

୭ମ ପଦ—'ଏହାଙ୍କ' ଲକ୍ଷ୍ୟ (ଲକ୍ଷ୍ୟକରି) ଯୋଖିବାରେ ୧ ବଧୂରେ (ବସ୍ତୁଖଣ୍ଡଠାରେ) ଏ ପ୍ରଭା ( ତେଜ ) ଥିବ । ଦେଖିବାରେ ପୂର୍ଣ୍ଣେ ବଧୂରେ ( ପୂର୍ଣ୍ଣଚନ୍ଦ୍ରଠାରେ) ଏ ପ୍ରଭା ନାହିଁ । ୨ବାନପ୍ରସ୍ଥ ବେଶଧାରୀ (ବନବାସ ବେଶଧାରୀ) ବାନରପତି (ବାଲିରାଜାର) ଦୂତ ଏ କପାଇଁ ହେବେ, ମନକୁ ନପାଇ (ଏ କଥା ମନକୁ ଯାଉ ନାହିଁ) ଏ ବାଲିଦୂତ ନୁହନ୍ତି ଏହାଭାବ ।

୮ମ ପଦ—ବଶୀଭୂତ ନୋହି (କେବା ଲୋକର ବଶ ନ ହୋଇ) କ୍ରନ୍ଦନରେ ଯୁକ୍ତ ହୋଇ (ରୋଦନ କରି) ନଭମାର୍ଗେ (ଆକାଶ ପଥରେ) ସ୍ୟନ୍ଦନରେ (ରଥରେ) ବସି 'ଯେଉଁ' ବାମା (ସ୍ତ୍ରୀ) ଯାଉଥିଲା 'ପୁଣି ସେ' ବଲ୍ଲରୀ (ଲତା) ପଶୁ (ମୃଗ) ପକ୍ଷୀଙ୍କି ସାକ୍ଷ କରୁଥିଲା ସେ ନାରୀର (ସେ ସ୍ତ୍ରୀର) ଏ ସାରସାକ୍ଷ (ଏ ରାଜୀବଲୋଚନ) ବଲ୍ଲଭ (ପତି) ହେବେ କି ? 'ଏମନ୍ତ ମୁଁ ମନେ କରୁଅଛି' । ୮ ।

୯ମ ପଦ—'ଏହାଙ୍କ' ତନୁ (ଦେହ) ବରହୀ ହେଲା ପର୍ଯ୍ୟ ଦଶଇ ତ 'କୃଶପାଣ୍ଡୁର ହୋଇଥିବାରୁ' ଏହି ଭାବ। ବଟଶ୍ରୀ (ବ୍ରହ୍ମା) ରଚିବାରେ (ଗଢ଼ିବାରେ) ସୁନ୍ଦରେ (ସୁନ୍ଦର ପୁରୁଷଙ୍କ ମଧ୍ୟରେ) 'ଏତ ନୁତ' (ସ୍ତୁତ୍ୟ)

୧—ବଧୂର୍ବଷ୍ଟୌ ଚନ୍ଦ୍ରମସ୍ତାଚ ଧ୍ୱନମଞ୍ଜରୀ ।
୨—ବ୍ରହ୍ମଚାରୀ ଗୃହୀ ବାନପ୍ରସ୍ଥୋଭିକ୍ଷୁ ଚତୁଷ୍ଟୟମିତ୍ୟମରଃ ।

ବାଡ଼ବେୟସୁତ ଖ୍ୟାତେ ସତ ଏ ତରକ ।
ବାଡ଼ ଏତେ କନ୍ୟା ଯେଉଁ ନାମ ଉଚ୍ଚାରକ । ୯ ।
ବହ୍ନି କଙ୍କବେଶ ଯାଇ କେ ଲୁମ୍ପେ ପଶ୍ଚର ।
ବହ୍ନି ବଶେ ତାହ୍ନି ଯେବେ ହୋଇବ ପ୍ରଶ୍ଚର ।
ବାହାର ହେବ ବଚନୁ ପ୍ରାକ୍ରମ ଭରସା ।
ବାହା ଧନୁଁ ଦେଖି ମଣି ଜଣିପାରେ ରସା ।। ୧୦ ।।
ବୃହନ କରି କପଟ ମୂରତି ବିଧାନ ।
ବନସ୍ତୁ ସେ କରୁଣାନିଧାନ ସନ୍ନିଧାନ ।

---

ଅଟନ୍ତି ନୈବୋତ୍ତର ସୁନ୍ଦରଏ; ଏମନ୍ତ ଭାବ । ୧ବାଡ଼ବେୟସୁତ (ନୀଳ-କପି) ଖ୍ୟାତେ (ଜନ୍ମେ) ଏ ତରକ (ଏ ଯେଉଁ ତର୍କ) ସତ (ମିଛନୁହେ); 'ମାଧବ' ଏତେ ବାଡ଼ (ଏତିକି ଅକ୍ଷର) 'ଏନ୍ତୁ' 'ସେ' କନ୍ୟା ଯେଉଁ ନାମ ଉଚ୍ଚାରକ (ଉଚ୍ଚାରଣ କରୁଥିଲ) 'ସେହି ନାମଧାରୀ ଏହି ପୁରୁଷ କି ନୁହନ୍ତି ? ଏହା ବୁଝିବା ଉଚିତ' ଏହି ଭାବ ।୯।

୧୦ମ ପଦ—'ବହ୍ନି ଲୁମ୍ପେ' ୨କଙ୍କ ବେଶ (ଛଦ୍ମଦ୍ୱିଜ ବେଶ) ବହ୍ନି (ଧରି) ଯାଇ କେ ଲୁମ୍ପେ (ଲୁଚେ କିଏ) 'ଏ କଥା' ପଶ୍ଚର; ବହ୍ନି ବଶେ (ଦୈବବଳେ) ତାହ୍ନି (ସେ କଥା) ଯେବେ 'ହୋଇଥାଏ ତେବେ ତ' ପ୍ରଶ୍ଚର (ବିଖ୍ୟାତ) ହୋଇବ । ବଚନୁ (ବାକ୍ୟ କଥାରୁ) ପ୍ରାକ୍ରମ (ପରାକ୍ରମ) ଭରସା 'ଏ ଦୂରକଥା' ବାହାର ହେବ । ବାହା ଧନୁ (ଏହାଙ୍କ ବାହୁ ଓ ଧନୁକୁ) ଦେଖି ମଣି (ବୋଧ କରେ) ରସ (ପୃଥ୍ୱୀ) ଜଣି ପାରେ (ଜୟ କରି ପାରିବେ) । 'ବାହୁବଳ ଧନୁବଳ ଥିଲେପରି ଜଣାଯାଏ, ପଶ୍ଚର ବୁଝିଲେ ସବୁ ଜଣାପଡ଼ିବ ଏହି ଭାବ' ।୧୦।

୧୧ଶ ପଦ—'ଏମନ୍ତ ନୀଳ ଚନ୍ଦ୍ରକାର ଶୁଣି' ସେ (ହନୁମାନ୍) ବହନ (ବେଗରେ) କପଟ ମୂର୍ତ୍ତି (ଛଦ୍ମବେଶ) ବିଧାନ କରି କରୁଣାନିଧାନ ସନ୍ନିଧାନେ (ରାମ ସମୀପେ) ୩ବନସ୍ତୁ (ପଥିକ) 'ଗଲେ' (ଗଲେ) ।

---

୧—ଅଗ୍ନିପୁତ୍ର ନୀଳ ।
୨—କଙ୍କଶ୍ଛଦ୍ମ ଦ୍ୱିଜେ ଖ୍ୟାତୋ ଲୋହପୃଷ୍ଠକୃତାନ୍ତହୋରପି ମେଦିନୀ ।
୩—ବନସ୍ତୁ ପଥିକେ ବୃଷଭେ ପୁମାନପି ମେଦିନୀ ।

ବଦନ୍ତି ବହୁରୁ ଅଛ ଘୋର କାନନର ।
ବଦରିକା ତେଜି କିପାଁ ନାରାୟଣ ନର ।୧୧।
ବାହୁଜମୂର୍ତ୍ତି ତ ଜଟା-ମୁକୁଟ ମଣ୍ଡନ ।
ବାହୁ ବହ ଶସ୍ତ୍ର ଇଚ୍ଛି କାହାର ଖଣ୍ଡନ ।
ବାଚକ ହୋଇଲେ ପୃଚ୍ଛା କରୁ ରଘୁରାଣ ।
ବାଚସ୍ପତିଙ୍କି ବ୍ରହ୍ମା କି ବୁଝାଇ ପୁରାଣ ।୧୨।
ବହୁତ ବିଧାନେ ଦଶରଥଙ୍କ ତନୟ ।
ବହୁଁ ରାମ ଲକ୍ଷ୍ମଣ ନାମକୁ ସବିନୟ ।
ବିଶ୍ୱାମିତ୍ର ଆସି ନେଲେ ଯାଗକୁ ପ୍ରଚୁରେ ।
ବିଶ୍ୱାମିତ୍ର ସୁବାହୁର ନାଶକୁ ବିଚୁରେ ।୧୩।

---

ବଦନ୍ତି (କହିଲେ) ନର ନାରାୟଣ (ଋଷି 'ପ୍ରାୟ') 'ତୁମ୍ଭେ ଦୁହେଁ' ବଦରିକା (ଆଶ୍ରମ) ତେଜି (ତ୍ୟାଗ କରି) କିପାଁ ଘୋର କାନନରେ (ଭୟଙ୍କର ବନରେ) ବହୁରୁ ଅଛ ? ।୧୧।

୧୨ଶ ପଦ—'ଆପଣେ' ତ ବାହୁଜମୂର୍ତ୍ତି (କ୍ଷତ୍ରିୟମୂର୍ତ୍ତି) ଅଟ; ପୁଣି ଜଟାମୁକୁଟମଣ୍ଡନ (ଜଟାରୂପ ମୁକୁଟରେ ଭୂଷଣ) ହୋଇଅଛ; କାହାର ଖଣ୍ଡନ (ଛେଦନ) ଇଚ୍ଛି (ଇଚ୍ଛା କରି) ବାହୁ (ହସ୍ତରେ) ଶସ୍ତ୍ର ବହ (ଧରିଅଛ) । ପୃଚ୍ଛା କରୁ (ସେ ଛଦ୍ମବ୍ରାହ୍ମଣ ଏମନ୍ତ ପଚାରନ୍ତେ) ରଘୁରାଣ (ରାମ) ବାଚକ ହୋଇଲେ (କହିଲେ) । 'ସେକାଳେ ଜଣାଗଲା' ବ୍ରହ୍ମା ବାଚସ୍ପତିଙ୍କି (ବୃହସ୍ପତିଙ୍କି) ପୁରାଣ ବୁଝାଇ କି ? (ବୁଝାଉଅଛନ୍ତି କି ?) ।୧୨।

୧୩ଶ ପଦ—ବହୁତ ବିଧାନେ (ରାକ୍ଷସଙ୍କୁ ଯାଗବଧ ଓ ତରୁଦାନ ଆଦି ବହୁତ ପ୍ରକାରେ) 'ଆମ୍ଭେ' ଦଶରଥ (ଅଯୋଧ୍ୟା ରାଜାଙ୍କର) ତନୟ (ପୁତ୍ର) 'ହେଲୁଁ' । ରାମ ଲକ୍ଷ୍ମଣ ନାମକୁ 'ଆମ୍ଭେ ଦୁହେଁ' ବହୁଁ, ବିଶ୍ୱାମିତ୍ର (ଋଷି) ସବିନୟ (ବିନୟ ଯୁକ୍ତ) ହୋଇ ନେଲେ (ପିତାଙ୍କଠାରୁ ଯାଗ-ରକ୍ଷା ନିମିତ୍ତ ମାଗି ନେଲେ) ବିଶ୍ୱାମିତ୍ର ଯାଗକୁ ପ୍ରଚୁରେ (ଆଡ଼ମ୍ବରେ ଯାଗ ପ୍ରଚାର କରନ୍ତେ) 'ଉପସ୍ଥିତ ହେଲା ଯେଉଁ' ବିଶ୍ୱାମିତ୍ର (ଜଗଦ୍‌ବୈରୀ)

ବିଶ୍ୱବସୁ କୋଟି-ପ୍ରଭ ଶିବଧନୁ ଧରି ।
ବିଭା ହେଲେ ସୀତା କି ଶୋଭିତା ବିମ୍ବାଧରୀ ।
ବଳାରୁ ପରଶୁରାମ ଦର୍ପ ବିଭଞ୍ଜନ ।
ବନାନ୍ତେ ପ୍ରାତେ ଜନକ କରଣ ରାଜନ । ୧୪ ।
ବିଧାସ୍ତୁକ ବନଗତ ମନ୍ଥରା-ମନ୍ତ୍ରିଲା ।
ବିଧାତା ଭାଲ ଲେଖନ ପ୍ରିୟା ଦୂର ଥିଲା ।
ବଞ୍ଚୁଥିଲେ ଦିନ ପଞ୍ଚବଟୀରେ ବିହରି ।
ବଞ୍ଚୁକି ହରିବଲ୍ଲଭୀ ଏ ଅଦ୍ଭୁତ ହରି । ୧୫ ।

---

ସୁବାହୁର ( ରାକ୍ଷସର ) ନାଶକୁ ( ମରଣକୁ ) ବିସ୍ତାର 'କଲେ' । ସୁବାହୁ ମାରି ସ୍ଥାପିତ ରଖିଲେ ଏହିପରି । ୧୩ ।

୧୪ । ୧୫ଶ ପଦ—'ସେଠାରୁ ମିଥିଳାରେ' ବିଶ୍ୱବସୁ କୋଟିପ୍ରଭ ( କୋଟି ସୂର୍ଯ୍ୟପ୍ରଭ ) ଶିବଧନୁ ଧରି କି ଶୋଭିତା ( ଅତି ସୁନ୍ଦରୀ ) ବିମ୍ବାଧରୀ ( ବିମ୍ବୋଷ୍ଠୀ ) ସୀତା ( ଜନକ ରାଜକନ୍ୟା ) ବିଭାହେଲେ । ଏହାଦ୍ୱାରା ଭୁଜ ପରାକ୍ରମ ସୂଚିତ ହେଲା । ବଳାରୁ ( ବୀରଶିରୋମଣି ) ପରଶୁଧର ( ପରଶୁରାମ ) ଦର୍ପ ( ଗର୍ବ ) ବିଭଞ୍ଜନ ( ଭଞ୍ଜନ ) 'କଲେ' । ଏହାଦ୍ୱାରା ନୃପରାକ୍ରମ ସୂଚିତ ହେଲା । ପ୍ରାତେ ( ପ୍ରଭାତରେ ) ରାଜନ କରଣ ( ରାଜ କର ) ଜନକ ( ପିତା ଦଶରଥ ) ବନାନ୍ତେ ( ବନେ ପଠା କରାଅନ୍ତେ ) ବିଧାତା ଭାଲ ଲେଖନ ଥିଲା ( ଭାଲ ପଟ୍ଟରେ ଲେଖିଥିଲା ) ପ୍ରିୟା ଦୂର ( ଅନ୍ତର ) 'ହେବ' । ମନ୍ଥରା ( ବିମାତା କୈକେୟୀଙ୍କ ଦାସୀ ) ମନ୍ତ୍ରିଲା ( ତାହା ଶିଖାଇଲା ) । 'ସେହି କେବଳ ଆତୁର' ବନଗତ ବିଧାସ୍ତୁକ ( ବଚନମାନ ବିଧାନ କଲା ) 'ଅଟେ' । 'ତେଣୁ ରାଜ ଭାରିଯା ଦେନି ବନେ ପଶିଲେ ଏହି ଭାବ' । ପଞ୍ଚବଟୀରେ ( ପଞ୍ଚବଟୀ ବନରେ ) ବିହରି ଦିନ ବଞ୍ଚୁଥିଲେ ( କାଳ କାଟୁଥିଲେ ) ହରିବଲ୍ଲଭୀ ( ସିଂହ ଭାର୍ଯ୍ୟାକୁ ) ବଞ୍ଚୁକ ( ବିଲୁଆ ) ହରି 'ନେଲା' ଏ ଅଦ୍ଭୁତ ( ଏ ବଡ଼ ଆଶ୍ଚର୍ଯ୍ୟ କଥା ) । ସିଂହ ତୁଲ୍ୟ ପରାକ୍ରମଶାଳୀ ରାମର ଭାର୍ଯ୍ୟାକୁ ଶୃଗାଳ ତୁଲ୍ୟ ରାବଣ ହରିନେବା ଅସମ୍ଭବ ଏହି ତାତ୍ପର୍ଯ୍ୟାର୍ଥ । ଏହାଦ୍ୱାରା ଖଳଙ୍କ ସୂଚିତ ହେଲା । ୧୪।୧୫ ।

ବିଲୋକନ କରାଇଲା ବିଚିତ୍ର କୁରଙ୍ଗ ।
ଅଲୋକ ହୋଇ ତା ସଙ୍ଗେ କରିବାରୁ ରଙ୍ଗ
ବେଦନା ଅଗୋଚରରୁ ଜାତ ଅକଥିତ ।
ବୈଦେହୀର ଶଙ୍ଖ ପ୍ରାୟୁ ସିନ୍ଧୁ ମଧ୍ୟେ ସ୍ଥିତ । ୧୬ ।

ବକ୍ଷେନ୍ଦୁ ଜାନକୀ ଅଛି ବୋଲି ଲଙ୍କାଦେଶ ।
କାକ୍ଷେନ୍ଦୁ କବନ୍ଧ ବାହୁ କହିଲା ସନ୍ଦେଶ ।
ବଂଶ ସଂଖ୍ୟା କର ଦଶସଂଖ୍ୟା ତା ଲପନା
ଵିଷମଵର୍ଣିକେ ମୋତେ କରିଛି ତାପନା । ୧୭

---

୧୬ଶ ପଦ—ତୁମ୍ଭେ ବା ବୋଲିବ ସିଂହ ସଦୃଶ୍ୟ ଙ୍କୁ ଶୃଗାଳ କାପର କେଲ ? ବିଚିତ୍ର କୁରଙ୍ଗ ( ଅପୂର୍ବ ଚିତ୍ରିତ ମୃଗ ) ବିଲୋକନ କରାଇଲ ( ଦେଖାଇଲ ) ତା ସଙ୍ଗରେ ( ସେ ମୃଗସଙ୍ଗେ ) ଅଲୋକ ( ଅଦୃଶ୍ୟ ) ହୋଇ ରଙ୍ଗ ( ବିହାର ) କରିବାରୁ 'ଏହା କହେନ୍ତି' । ବେଦନା ( ବ୍ୟାଧି ) ଅଗୋଚରରୁ ( ଗୋଚର ନୋହିବାରୁ ) ଜାତ ଅକଥିତ ( କହି ନୋହେ ) ବୈଦେହୀର ଶଙ୍ଖ ( ଶଙ୍ଖାସୁର ) ପ୍ରାୟୁ ସିନ୍ଧୁ ମଧ୍ୟେ ସ୍ଥିତ ( ରହିଅଛି ) । ଶଙ୍ଖାସୁର ବେଦ ଚୋରି କରି ସିନ୍ଧୁ ମଧ୍ୟେ ଥିବା ପରି ସୀତା ଚୋରି କରି ସିନ୍ଧୁ ମଧ୍ୟରେ ଲୁଚିଅଛି; ତାହା ନ ଗଲେ ବ୍ୟାଧିଜନ୍ମ ହୁଏ ବୋଲିଲ ପ୍ରାୟୁ ମୁଁ ଜାଣି ନ ପାରିବାରୁ ଅକଥନୀୟ ପୀଡ଼ା ମୋର ଜାତ ହେଉଅଛି ଏହି ସରଳାର୍ଥ । ୧୬ ।

୧୭ଶ ପଦ—ଜାନକୀ ବକ୍ଷେନ୍ଦୁ ( ଗଲ ବନ୍ଧୁ ) ଲଙ୍କା ଦେଶ ( ଲଙ୍କା ନଗରେ ) ଅଛି ବୋଲି ବାହୁ ବକ୍ଷେନ୍ଦୁ ( ଭୁଜ ଛେଦବାକୁ ) କବନ୍ଧ ସନ୍ଦେଶ ( ବାର୍ତ୍ତା ) କହିଲ । ବଂଶସଂଖ୍ୟା କର ( ତାହାର କୋଡ଼ିଏ ଭୁଜ ) ତା [1] ଲପନ ଦଶ (ତାହାର ଦଶମୁଖ ) 'ସେହି ଏକା' ବିଷମ ବର୍ଣିକେ ( କାମଶରେ ) ମୋତେ ତାପନ ( ସନ୍ତାପିତ ) କରିଛି । ୧୭ ।

---

[1]—ଆନନଂ ଲପନଂ ମୁଖମିତ୍ୟମରଃ ।

ନିଷମବିଶିଖେ ତାକୁ କରିଣ ଅବଶ ।
ବିଂଶଭୁଜ ଦଶମୁଣ୍ଡ ଛେଦିବି ଅବଶ୍ୟ ।
ବିଗ୍ରହ୍ଁ ମୋ ଜୀବ ଭିନ୍ନ ସେ କରି ପ୍ରକଟ
ବିଗ୍ରହ୍ଁ ତା ଜୀବ ଭିନ୍ନ କରିବି ନିକଟ ୧୮
ବିଭିନ୍ନେ ଶିର କବନ୍ଧ ନୃତ୍ୟନ୍ତି ସମରେ ।
ବିଖ୍ୟାତେ ପ୍ରାଣବିହୀନେ ଭ୍ରମେ ଯେ ସମରେ ।
ବିଦ୍ଧା ମୋର ପ୍ରାଣ ମନ ଜାନକୀ ପାଶରେ ।
ବିକାଶ ତୁମ୍ଭେ କେ ଭ୍ରମ ଏ ବନ ଦେଶରେ । ୧୯ ।
ବଳି ବୁଦ୍ଧି ହେଲୁ ଯେଣୁ ରାମଚରଣରୁ ।
ବଳରିପୁସୋଦରଜ କହେ ପରିଶନ୍ତୁ ।

---

୧୮ଶ ପଦ—ବିଷମ ବିଶିଖେ ( ତୀକ୍ଷ୍ଣ ଶରରେ ) ତାକୁ ଅବଶ ( ଅଶକ୍ତ ) କରିଣ (କରି) 'ତାହାର' ବିଂଶଭୁଜ ଦଶମୁଣ୍ଡ ଅବଶ୍ୟ ( ନିଶ୍ଚୟ ) ଛେଦିବି । ମୋ ବିଗ୍ରହ୍ଁ ( ମୋ ଦେହରୁ ) ଜୀବ ( ମୋ ପ୍ରାଣ ଜାନକୀଙ୍କୁ ) ସେ ଭିନ୍ନକରି ପ୍ରକଟ ( ପ୍ରକାଶ ) ପାଇଅଛି 'ମୁଁ' ନିକଟ ( ନିକଟରେ ) ବିଗ୍ରହ୍ଁ (ଯୁଦ୍ଧକରି ) ତା ଜୀବ ( ତା ପ୍ରାଣ ) 'ତା ଦେହରୁ' ଭିନ୍ନକରିବି ।୧୮।

୧୯ଶ ପଦ— ଶିର ବିଭିନ୍ନେ ( ମସ୍ତକ ବିହୀନରେ ) ସମରେ (ଯୁଦ୍ଧରେ ) କବନ୍ଧ (କବନ୍ଧମାନେ) ନୃତ୍ୟନ୍ତି ( ନାଚନ୍ତି) । ପ୍ରାଣ ( ଜାନକୀ ) ବିହୀନେ ବିଖ୍ୟାତେ (ଜଗତରେ) ଯେ ସମରେ ( ସେହି କବନ୍ଧ ସମାନରେ ) ଭ୍ରମେ (ମୁଁ ଭ୍ରମଇ) ! ମୋର ମନ ପ୍ରାଣ ଜାନକୀ ପାଶରେ ( ପାଖରେ ) ବିଦ୍ଧା 'ହୋଇ ଅଛି' । ତୁମ୍ଭେ କେ ( କିଏ ) ଏ ବନ ଦେଶରେ ( ଏ ବନ ଭୂମିରେ ) (ଭ୍ରମ ଭ୍ରମଣ କର), 'ତାହା' ବିକାଶ (ପ୍ରକାଶ କର) ।୧୯।

୨୦ଶ ପଦ—ରାମ ଚରଣରୁ (ରାମଙ୍କ ପାଦୀନରୁ ) ଯେଣୁ ବଳବୁଦ୍ଧି ହେଲୁ 'ତେଣୁ' ବଳରିପୁସୋଦରଜ (ଇନ୍ଦ୍ରଙ୍କ ଭାଇ ପବନର ପୁଅ ହନୁମାନ୍) ପରିଶନ୍ତୁ ( ରାମ ଏମନ୍ତ ପଚାରନ୍ତେ ) କହେ, ବଳିମୁଖ (ବାନର) ଶ୍ରେଷ୍ଠ ବାଳି ସୁଗ୍ରୀବ 'ଦୁହେଁ' ସୋଦର ( ଭାଇ ) 'ଅଟନ୍ତି' । ତାଙ୍କ

ବଳମୁଖଶତ୍ରୁ ବାଳି ସୁଗ୍ରୀବ ସୋଦର ।
ବଳି ନାହିଁ ବୋଲେ ତାଙ୍କୁ ବେନି ବିବାଦର । ୨୦ ।

ବନବାସୀ ସୁଗ୍ରୀବ ଏ ଗିରି ଅନୁସର ।
ବନଧିରେ ମଇନାକ ଲୁଚିଲାର ସର ।
ବନ୍ଧୁଣୀତନୁଜ ମୁହିଁ ନାମ ହନୂମାନ ।
ବନ୍ଧଣ ତାହାରେ ପ୍ରୀତି ରହେ ସାନୁମାନ ॥ ୨୧ ॥

ବନେ କର ଘନଶ୍ୟାମ ସେ ହେଉ ସାରଙ୍ଗ
ବ ଯେ ତୁମ୍ଭ କୃପାଜଳବଶେ କରୁ ରଙ୍ଗ ।
ବିଧୁକରେ ମହୋଜ୍ଜ୍ୱଳ ଯେମନ୍ତ ରଜନୀ ।
ବିଧୁପ୍ରଭା ଅଧିକ ରଜନୀ ହେଲେ ଜନି ॥ ୨୨ ॥

---

( ସେ ଦୁହିଁଙ୍କୁ ) ବଳେ ( ବଳରେ) 'କେହି' ବଳନାହିଁ (ତାଙ୍କ ତୁଲ୍ୟ ବଳିଷ୍ଠ ଆଉ କେହି ନାହିଁ) ବେନି ( ସେ ଦୁହେଁ ) ବିବାଦିର ( କଳି କରିବାରୁ ) 'ସୁଗ୍ରୀବ ହାରି ପଳାଇ ଆସିଲା' ।୨୦।

୨୧ଶ ପଦ—ଏ ଗିରି ( ଏ ଋଷ୍ୟମୂକ ପର୍ବତକୁ ) ଅନୁସର ( ଆଶ୍ରାକରି ) ବନବାସୀ 'ହୋଇଅଛି' । ବନିଧିରେ (ସମୁଦ୍ରରେ) ମଇନାକ (ମୈନାକ ପର୍ବତ ) ଲୁଚିଲାର ସର (ପ୍ରାୟ) 'ଏ ପର୍ବତେ ସୁଗ୍ରୀବ ଲୁଚି ଅଛି' । ମୁହିଁ ସୁଗ୍ରୀବର' ବନ୍ଧୁଣୀ ତନୁଜ ( ଭଣଜା ) ନାମ 'ମୋହର' ହନୂମାନ । ତାହାରେ (ସେହି ସୁଗ୍ରୀବଠାରେ ) ପ୍ରୀତି ବନ୍ଧଣ (କରି) ସାନୁମାନ (ଏ ପର୍ବତରେ) ରହେ (ରହୁଅଛି) । ୨୧ ।

୨୨ଶ ପଦ—ଘନଶ୍ୟାମ ତୁମ୍ଭେ ଘନଶ୍ୟାମ (ଶ୍ୟାମଘନ ) ହେଲ, ବନେ 'କର' ସେ ( ସୁଗ୍ରୀବ ) ସାରଙ୍ଗ (ଚାତକ ପକ୍ଷୀ ) ହେଉ, ତୁମ୍ଭ କୃପାଜଳ ବଶେ ( ତୁମ୍ଭର କୃପାଜଳ ବଶରେ) ରଙ୍ଗ (ଆହ୍ଲାଦ) କରୁ; ଯେମନ୍ତ ବିଧୁକରେ ( ଚନ୍ଦ୍ର କିରଣରେ) ରଜନୀ (ରାତ୍ରି ) ମହୋଜ୍ଜ୍ୱଳ 'ହୁଏ' ରଜନୀ (ରାତ୍ରି) ଅଧିକ ହେଲେ ବିଧୁପ୍ରଭା (ଚନ୍ଦ୍ର କିରଣ) ଜନି (ଜାତ) ହୁଏ । ରାତ୍ରି ଅଧିକରେ ଚନ୍ଦ୍ର ଓ ଚନ୍ଦ୍ର ଅଧିକରେ ରାତ୍ରିପ୍ରଭା ବୃଦ୍ଧି ହେଲାପରି ତା ଯେଗୁ ତୁମର ଓ ତୁମ୍ଭଯୋଗୁ ତାଙ୍କ ପ୍ରଭା ବୃଦ୍ଧି ହେବ ଏହି ଭାବ ।

ବ୍ୟବସ୍ଥିତେ ପଡ଼ିଅଛୁ ସେସବୁ କାଳ ସାର ।
ବ୍ୟବହାରେ ହେବ ଏବେ ବିଖ୍ୟାତ ସଂସାର ।
ବିଲୋମେ ପଦ୍ମଲୋଚନ ଭଣେ ଭାରତୀକ ।
ବିଲୋକ କରିବା ଧରି ନିଜ ମୂରତିକ । ୨୩ ।
ବହୁଁ ବୀର ଶାଖାମୃଗ ତନୁ ତତପର ।
ବହୁତ ଆନନ୍ଦ ସେହୁଁ ହେଲେ ଖରପର ।
ବିଭୁ ଜଗତର ତହୁଁ ପୁଚ୍ଛିଲେ ଝଟିତ ।
ବିଭୂଷଣ କପି ହୋଇ ଦିବ୍ୟ କଟୀତଟ । ୨୪ ।
ବ୍ରହ୍ମା ବରେ ପାଇଛୁ ମୁଁ ପବନତନୟ ।
ବ୍ରହ୍ମାଣ୍ଡନାଥ ଶୁଣ ହେ ବୋଲି ସବିନୟ ।

---

୨୩ଶ ପଦ—ସେହୁ ( ତୁମ୍ଭ ଯେ ଗୁ ସୁଗ୍ରୀବ ପ୍ରଭୃ ଓ ସୁଗ୍ରୀବ ଯୋଗୁ ତୁମ୍ଭ ପ୍ରଭୃ ଶିବ ଶିଖା ) ତାଙ୍କ ବ୍ୟବସ୍ଥିତେ ( ଆଧିବଶରେ ) ସାର (ଶ୍ରେଷ୍ଠ) ହୋଇ ପଡ଼ିଅଛୁ ଏବେ ବ୍ୟବହାରେ (ବ୍ୟବହାର ଦ୍ୱାରା) ସଂସାର (ଜଗତରେ) ବିଖ୍ୟାତ ହେବ । 'ଏମନ୍ତ ଶୁଣି' ପଦ୍ମଲୋଚନ (ରାମ) ବିଲୋମେ (ଲୋମ ଶୂନ୍ୟ ଛନ୍ଦୁଭିକ ହନୁମାନଙ୍କୁ) ଭାରତୀକ ଭଣେ (କହିଲେ) ନିଜ ମୂରତିକ (ତୁମ୍ଭ ନିଜରୂପ) ଧରି ବିଲୋକ କରିବା (ଦେଖିବା) । କେହୁକେହୁ ବିଲୋମେ (ବିପରୀତରୂପେ) ଅର୍ଥ କରନ୍ତି ଅର୍ଥାତ ହନୁମାନ୍ କହିଲେ ତୁମ୍ଭେ ଯେଉଁ ସେ ସ୍ୱୀକାର ରାମ ତାହା ବିଲୋମରେ କହିଲେ ମୁଁ ସେ ସ୍ୱୀକାର । ୨୩ ।

୨୪ଶ ପଦ—ବୀର ( ହନୁମାନ୍ ) ଶାଖାମୃଗ ( ବାନର ) ତନୁ[1] ତତ୍ପର (ଆସକ୍ତ) ହୋଇ, ବହନ୍ତେ ସେହୁଁ ( କପିରୂପ ଦେଖି ) ଖରପର (ରାମ) ବହୁତଆନନ୍ଦ ହେଲେ । ଜଗତର ବିଭୁ (ପ୍ରଭୁ ରାମ) ତହୁଁ (ସେ କାଳରେ) ଝଟିତ (ଶୀଘ୍ର) ପୁଚ୍ଛିଲେ, କପି ହୋଇ ଦିବ୍ୟ କଟୀତଟ ବିଭୂଷିତ ହୋଇଅଛ । ୨୪ ।

୨୫ଶ ପଦ—ରାମ ଏହା ପଚାରନ୍ତେ ହନୁମାନ୍ କହିଲା—ମୁଁ ପବନତନୟ (ବାୟୁପୁତ୍ର), ବ୍ରହ୍ମାବରେ (ବ୍ରହ୍ମାଙ୍କବରରେ) "ଏକସାଟ" ପାଇଛି; ହେ

---

୧—କ୍ୱଚିତ୍ ପ୍ରତିତାସ୍ତନ୍ତ୍ରାବତ୍ୟମରଃ ।

ବାରବାର ପଦ୍ମପାଦେ ବହି ଦଣ୍ଡବତ ।
ବାରଣବାଣଙ୍କୁ ଘେନି ଗଲା ପରବତ । ୨୫
ବୋଧି ମାତୁଳକୁ ରାମପାଶେ ଭେଟାଇଲା ।
ବୋଧିଦ୍ରୁମତଳେ ପ୍ରବାଳରେ ବସାଇଲା ।
ବିକାଶିତ କଲେ ରାମ ବେଗେ ସ୍ୱଚରିତ ।
ବିକର୍ତ୍ତନସୁତ ପୁନଃ କଥିତ ତ୍ୱରିତ । ୨୬ ।
ବିଧିବଶେ ଋକ୍ଷରାଜା ପଶି ସ୍କନ୍ଦବନେ ।
ବିଧିଲେ ହୋଇଣ ସ୍ତ୍ରୀସ୍ୱରୂପ ଜବନେ ।

---

ବ୍ରହ୍ମାଣ୍ଡନାଥ ! ଶୁଣ ହୋଇଣ ବିନୟକଲା (ଜାଣ କହୁ ବିନତି କଲା) ।
'ରାମଙ୍କୁ କଷ୍ଟ ଦୃଶ୍ୟ ହେବାରୁ ଏ ସ୍ୱୟଂ ଭଗବାନ୍ ଏମନ୍ତ ବିଶ୍ୱରି ହନୁମାନ୍'
ବାରବାର (ପୁନଃପୁନଃ) ପଦ୍ମପାଦେ (ରାମଙ୍କ ଚରଣ କମଳରେ) ଦଣ୍ଡବତ
ବହି (ଦଣ୍ଡପ୍ରାୟ ପଡ଼ି) ବାରଣବାଣଙ୍କୁ (ଚକୋଦ୍ଧାର ରାମଙ୍କୁ) ଘେନି ପରବତ
(ଋଷ୍ୟମୂକ ଗିରିକି) ଗଲା । 'ଅଥବା–ବାରଣବାଣ (ବାରିତ ଋଷ୍ୟମୂକ ଗିରିରୁ
ଅନ୍ୟ ସ୍ଥାନକୁ ନ ଯିବା ସୁଗ୍ରୀବର ଏମନ୍ତ କବୋଧ; ତହିଁକୁ ତାକୁ ଜାଣେ (ରକ୍ଷା)
କଲେ ଏମନ୍ତ ରାମଙ୍କୁ) । ୨୫ ।

୨୬ଶ ପଦ—'ହନୂମାନ୍ ରାମଙ୍କ କଥା ମାତୁଳକୁ (ସୁଗ୍ରୀବକୁ)
'କହି' ବୋଧି (ପ୍ରବୋଧ ଦେଇ) ରାମପାଶେ (ରାମଙ୍କ ନିକଟରେ) ଭେଟା-
ଇଲା; [୧]ବୋଧିଦ୍ରୁମତଳେ (ଅଶ୍ୱତ୍ଥବୃକ୍ଷ ମୂଳରେ) [୨]ପ୍ରବାଳରେ (ନବପଲ୍ଲବ
ଉପରେ) ବସାଇଲା । ରାମ ବେଗେ ସ୍ୱଚରିତ (ଆପଣାର ଚରିତ ସବୁ)
ବିକାଶିତ (ପ୍ରକାଶିତ) କଲେ 'ତାହା ଶୁଣି ବିକର୍ତ୍ତନସୁତ (ସୁଗ୍ରୀବ) ପୁନ
(ପୁଣି) 'ତାହାଙ୍କ ଚରିତ' ତ୍ୱରିତ (ଶୀଘ୍ର) କହିଲେ । ୨୬।

୨୭ଶ ପଦ—ବିଧିବଶେ (ଦୈବବଳରେ) ଋକ୍ଷରାଜ (ଋକ୍ଷ ନାମରେ
ଏକ ରାଜା) "ପୂର୍ବେ' ସ୍କନ୍ଦବନେ (ସ୍କନ୍ଦନାମକ ବନରେ) ପଶି (ପଶିଲେ)
'ସେ ବନରେ ଯେବେ ପୁରୁଷ ପଶନ୍ତି ସେ ସ୍ତ୍ରୀ ହୁଅନ୍ତି ଏମନ୍ତ ପାର୍ବତୀଙ୍କର

---

୧—ବୋଧିଦ୍ରୁମ ଶ୍ଚଲଦଲଃ ପିପ୍ପଳ କୁଞ୍ଜରାଶନଃ ।

୨—ପ୍ରବାଲୋ ବଲ୍ଲକୀ ଦଣ୍ଡେ ବିଦ୍ରୁମେ ନବପଲ୍ଲବେ ଭଣ୍ଡ ଚର୍ଷ୍ମଃ ।

ବୃଷା ଭାନୁ ପାଇଁ ବଧୀତାକୁ ସଂଖୋଳିତ ।
ବୃଷାଲି-ଓରୁକୁ ଦେଖି ରେ ତହିଁ ସ୍ଖଳିତ । ୨୭ ।
ବାଳିଗ୍ରୀବା ପତନେ ପତନ ହେଲୁ ମଧ୍ୟ ।
ବାଳି ବେନି ଖ୍ୟାତ ବଳି ସୁଗ୍ରୀବ ନାମହିଁ ।
ବନରୁ ପାବକଙ୍କର ଯେ ଉଦ୍ଧରି ସାଦରେ ।
ବନାରୁହୋଦ୍ଭବ ସମର୍ପିଲେ ଖଡ଼ଦରେ । ୨୮ ।
ବସୁ ରାଜା ଯୁବରାଜପଦେ କିଷ୍କିନ୍ଧ୍ୟାରେ ।
ବସୁଧାରେ ବାଳି ସମେ ନାହିଁ କେ ଯୋଦ୍ଧାରେ ।

---

ଅଭ୍ରଣ ପ ଦେ ବ ନ୍ଲକୁ ଅଛୁ' । 'ତେଣୁ ସେ ରାଜା' ଜବନେ (ତକ୍ଷଣେ) ସ୍ତ୍ରୀ ସ୍ୱରୂପ (ସ୍ତ୍ରୀ ସ୍ୱରୂପ ଧରିବାରୁ) ବଧୀର (ଅଧୀର) ହୋଇଲା । ସେହି କାଳରେ ବୃଷା (ଇନ୍ଦ୍ର)ଭାନୁ (ସୂର୍ଯ୍ୟ) 'ଦୁହେଁ' ବଧୀତାକୁ ସଂଖୋଳିତ (ସଙ୍ଗେ ଲାଭପାଇଁ) ଯାଇଁ 'ସେହି ସ୍ତ୍ରୀରୂପଧାରୀ ରାଜାର' ବୃଷାଲି ଉରୁକୁ (ଜାନୁଦ୍ୱୟକୁ) ଦେଖି [1]ରେତହିଁ (ଦୁହିଁଙ୍କର ରେତ) ସ୍ଖଳିତ ହେଲା । ୨୭ ।

୨୮ଶ ପଦ— ବାଳିଗ୍ରୀବ (ଇନ୍ଦ୍ରରେତ ବାଳାର ବାଳରେ ଓ ସୂର୍ଯ୍ୟ-ରେତ ତାହାର ଗ୍ରୀବାରେ) ପତନେ (ପଡ଼ନ୍ତେ) 'ଆମ୍ଭେ' ବାଳ ବେନି (ବାଳକ ଦୁଇଗୋଟି ହୋଇ) ମହାପତନ ହେଲୁ (ଭୂମିରେ ପଡ଼ିଲୁ) 'ଆମ୍ଭର' ବାଳି ସୁଗ୍ରୀବ ନାମ ଖ୍ୟାତ ହେଲାହିଁ (ନିଶ୍ଚେ) । ଯେ ବନରୁହୋଦ୍ଭବ (କମଳଜ-ବ୍ରହ୍ମା) 'ସେ' ପାବକଙ୍କର ବନରୁ (ସ୍କନ୍ଦବନରୁ) ସାଦରରେ (ଆଦର ସହିତ) ଉଦ୍ଧରି 'ଆମ୍ଭ ଦୁହିଁଙ୍କି ଆଣି' ଖଡ଼ଦରେ (ଖଡ଼ଦନାମଧାରୀ କିଷ୍କିନ୍ଧ୍ୟାରାଜାଙ୍କୁ) ସମର୍ପିଲେ । ୨୮ ।

୨୯ଶ ପଦ—କିଷ୍କିନ୍ଧ୍ୟାରେ "ଆମ୍ଭେ ଦୁହେଁ" ଯୁବରାଜ ପଦେ ରାଜା 'ହୋଇ' ବସୁଁ (ବସନ୍ତେ) ବସୁଧାରେ (ପୃଥ୍ୱୀରେ) ଯୋଦ୍ଧାରେ (ଯୋଦ୍ଧାପଣରେ) ବାଳିସମ (ବାଳିତୁଲ୍ୟ) କେ (ଆଉ କେହି ନାହିଁ) ।

---

[1]—ଶୁକ୍ରଂ ତେଜୋ ରେତସୀ ଚ ବୀଜ ବୀର୍ଯ୍ୟେନ୍ଦ୍ରିୟାଣିଚ ଇତ୍ୟମରଃ ।

ବାରିଜବନ୍ଧୁ ଉଦେକୁ ଏକେ ଖାରପଣ ।
ବାରିଧି ଗୃହରେ କରି ଆସଇ ତର୍ପଣ । ୨୯ ।
ବାତଙ୍କ ପରାଏ ରିପୁ ଡର୍ଶନେ ଥରନ୍ତି ।
ବାତ ପୁଷ୍ପଗନ୍ଧ ଘ୍ରାଏଁ ବଳାଙ୍କ ହରନ୍ତି ।
ବାଦନ ନ କଲେ ସ୍ୱର୍ଗେ ଦେବତା ଦୁନ୍ଦୁଭି ।
ବାଦ ରଚବ ବଗୁର ଶୁଣିଲେ ଦୁନ୍ଦୁଭି । ୩୦ ।
ବାହାସ୍ଫୋଟ ମାରିବାକୁ ସୁମେରୁ ପର୍ବତେ ।
ବାହାରୁଁ ସେ ଦୈତ୍ୟ ଭୟେ ସ୍ତୁତିରେ ପ୍ରବର୍ତ୍ତେ ।

---

'ଦେଖନ୍ତୁ, ଯେ' ବାରିଜବନ୍ଧୁ (ସୂର୍ଯ୍ୟ) ଉଦେକୁ (ଉଦୟକୁ) ବାରିଧି-ଗୃହରେ ( କ୍ଷୀର ସମୁଦ୍ରରେ ) ତର୍ପଣକରି ଆସନ୍ତି, 'ତାହାଙ୍କ' କେତେ ଖାରପଣ । ୨୯ ।

୩୦ଶ ପଦ—ରିପୁ ଦର୍ଶନେ ( ତାଙ୍କ ଶତ୍ରୁ ଦେଖିଲାମାତ୍ରେ ) ବାତଙ୍କ ( ବାତରୋଗୀ ) ପରାଏ ଥରନ୍ତି ( କମ୍ପିତ ହୁଅନ୍ତି ) । ବାତ (ପବନ) ପୁଷ୍ପଗନ୍ଧ (ପୁଷ୍ପର ସୁବାସ) 'ହରଣକଲା' ପରି 'ତାଙ୍କ ଶତ୍ରୁର' ବଳାଙ୍କ (ଅଧେବଳ) 'ଦେଖିଲାମାତ୍ରେ' ହରନ୍ତି ( ହରି ଆଣନ୍ତି ) । ଏମନ୍ତ ତାଙ୍କର ମହିମା ଏହି ଭଳି । ଦେବତା 'ମାନେ' ପୁଣି [୧] ଦୁନ୍ଦୁଭି (ବାଦ୍ୟ) ବାଦନ ନ କଲେ ( ନ ବଜାଇଲେ ) 'କାରଣ' ? ଦୁନ୍ଦୁଭି (ଦୈତ୍ୟ) ଶୁଣିଲେ 'ଆମ୍ଭ ସାଙ୍ଗେ, ବାଦ ( ବିବାଦ ) ରଚବ ( କରିବ ) ବଗୁର (ଏମନ୍ତ ବିଚାରକରି) 'ଭୟରେ ଦୁନ୍ଦୁଭି ନ ବଜାଇଲେ' । ୩୦ ।

୩୧ଶ ପଦ—ସୁମେରୁ ପର୍ବତେ ବାହାସ୍ଫୋଟ ମାରିବାକୁ ବାହାରୁଁ ( ବାହାରନ୍ତେ ) 'ମେରୁ' ଭୟେ ( ଭୟପାଇ ) ଦୈତ୍ୟ (ଦୁନ୍ଦୁଭି-ଦୈତ୍ୟକୁ) ସ୍ତୁତିରେ ପ୍ରବର୍ତ୍ତେ ( ସ୍ତୁତି କଲା) । 'କହିଲା' ପାରିଲେ ନପୀଣେ ( ତାଙ୍କମାନଙ୍କ ) ସଙ୍ଗମ ରଚ ( କର ) ବିଗ୍ରହ ( ବିବାଦଣ-

---

[୧]—ଦୁନ୍ଦୁଭିସ୍ତୁ ସ୍ମୃତାନ୍ ବରୁଣେ ଦୈତ୍ୟ ଭେଦ୍ୟୈୟାଶ୍ଚ
ଵ୍ୟକ୍ଷ ବନ୍ଦ୍ୟୁତ ନ ଦ୍ୱୟେ ଶତ ମେଦନୀ ।

ବିଭ୍ରାନ୍ତ ପାଇଲେ ରତ କପୀଶେ ସଂଗ୍ରାମ ।
ବିଦ୍ୟୁଦ୍ବର୍ଣ୍ଣଚର ଶୁଣି ଘର୍ଘରିଲା ଏ ଗ୍ରାମ । ୩୧ ।
ବିଧାନେ ମଦାନ୍ଧକସ୍ତ ଯେ ଏ ହରିବର ।
ବିଧା ପ୍ରହାର ଉଚିତେ ପ୍ରକଟ ଘାବର ।
ବଳୀ ଗର୍ବ ଖର୍ବ ହୋଇ ଏତେ କେ ଦଇତ୍ୟ ।
ବଳୀବର୍ଦ୍ଦ ରୂପ ଧରି ହେଉ ମଳାସ୍ମିତ । ୩୨ ।
ବାମ ଯାହେ ଇନ୍ଦ୍ରସୁତ କାହିଁ ତା ରକ୍ଷଣ ।
ବାମ୍ଭକରେ ପାଦ ଧରି ବୁଲାଇଁ ତତ୍କ୍ଷଣ ।
ବିସର୍ଜିଲା ପ୍ରାଣ ନାସାରନ୍ଧ୍ରେ ଜାତ ରକ୍ତ ।
ବିପ୍ରତଟେ ମତଙ୍ଗ ଆଶ୍ରମେ ନେ ବିରକ୍ତ । ୩୩ ।

---

କର ) । 'ବିଦ୍ୟୁଦ୍ବର୍ଣ୍ଣଚର ( ଯୁଧିଷ୍ଠିର-ଦୁନ୍ଦୁଭି ) ଶୁଣି ଏ ଗ୍ରାମ ( ଏ କିଷ୍କିନ୍ଧ୍ୟା-ପୁର ) 'ଆର୍ଯ୍ୟ' ଘର୍ଘରିଲା । ୩୧ ।

୩୨ । ଅନ୍ୱୟ ପଦ—ସେ । ( ଦୁନ୍ଦୁଭି ) ମଦାନ୍ଧ ଙ୍କ ( ମତରେ ଅନ୍ଧ-କସ୍ତ ) 'ହୋଇଥିଲା ସେ ଜାଣ' ମଦାନ୍ଧକସ୍ତ ( ମଦମତ୍ତ ଜନ ) 'ହେଲା' । ଏ ହରିବର ( କପୀଶ୍ୱର ) ହସ୍ତିବର ( ସିଂହ ) 'ହେଲା', 'ବିଧାନ (ବିଧି) ଏ ବିଧାପ୍ରହାର ( ମୁଷ୍ଟି ପ୍ରହାର ) ବିଧାପ୍ରହାର ( ଚକ୍ର ମୁଷ୍ଟି ) 'ହେଲା' "ତାକୁ କରନ୍ତେ" ଘାବର ( ତତ୍ତ ) ପ୍ରକଟ 'ହେବା' ଉଚିତ 'ହେଲା' । ଏତେବେଳେ ( ଏତେ ବିଧା ପ୍ରହାରକେ ) ଦଇତ୍ୟ (ଦୁନ୍ଦୁଭିର ) ବଳୀ ( ବଳିଷ୍ଠ ) 'ମୁଁ, ଏମନ୍ତ ଯେଉଁ ଗର୍ବ 'ସେ' ଖର୍ବ ହୋଇ (ଚୂର୍ଣ୍ଣହୋଇ) ବଳୀବର୍ଦ୍ଦ ( ବୃଷଭ ) ରୂପଧରି ମଳାସ୍ମିତ ହେଉ ( ଫଳାନ୍ତେ ) ଇନ୍ଦ୍ର ସୁତ ( ବାଳି ) ଯାହେ ( ଯାହାଠାରେ ) ବାମ ( ପ୍ରତିକୂଳ ) ତା ( ତାହାର ) ରକ୍ଷଣ ( ରକ୍ଷା ) କାହିଁ, 'ଏମନ୍ତ କହି' ତତ୍କ୍ଷଣ ( ସେହିକ୍ଷଣରେ ) ବାମ-କରେ ( ଆପଣାର ବାମହସ୍ତରେ ) 'ଦୈତ୍ୟର' ପାଦ ଧରି ବୁଲାଇ ( ବୁଲା-ଇଲା ) । ତେଣୁ 'ଦୈତ୍ୟ' ପ୍ରାଣ ବିସର୍ଜିବା 'ହେବାରୁ' ( ଛାଡ଼ିଦେବାରୁ ) 'ଦୈତ୍ୟର' ନାସାରନ୍ଧ୍ରେ ( ନାସିକାବାଟେ ) ରକ୍ତଜାତ 'ହେଲା' ( ବା

ବାହ୍ୱତ ମଣି ଅମରାହ୍ୱତ ସେ ଘୋଷିଲେ ।
ବାହ୍ୱ ଶାପ ତୋର ମୃତ୍ୟୁ ଏ ଶୈଳେ ଆସିଲେ ।
ବାହ୍ୱ ଶବ ତାହା ଜାଣି ଆଣି ଏ ନିକଟେ ।
ବହିତ୍ର ଯେମନ୍ତ ସ୍ଥିତ ସମୁଦ୍ରେ ପ୍ରକଟେ । ୩୪ ।
ବଳାହକୁଁ ପୃଥୁ ଭୃଙ୍ଗ ଭେଦେ ଭଦୁର ।
ବଳାତ୍କାରେ ବାଳି କେତେ ବହି ଏତେ ଦୂର ।
ବଡ଼କ୍ରୋଧେ ତା ଭ୍ରାତ ମାୟାବୀ ଆଗତରେ ।
ବଡ଼ଭୀ ପ୍ରାସାଦ ଭଙ୍ଗି ନଗରୁ ସତ୍ୱରେ । ୩୫ ।

ଭିଲ )। 'ସେ ରକ୍ତ' ମତଙ୍ଗ ( ଋଷି ) ଆଶ୍ରମେ ବାଯ୍ୱତ ହୁଅନ୍ତେ ( ପଡ଼ନ୍ତେ ) ସେ ( ଋଷି ) ବିରକ୍ତ ହେଲେ ( ରାଗିଲେ ) । ୩୨।୩୩

୩୪ଶ ପଦ—ଆଶ୍ରମରେ ରକ୍ତ ପଡ଼ିବାରୁ ଅମରାହ୍ୱତ ( ଦେବହୂତବାଗ୍ମୀ ) ସେ ( ଋଷି ) ବାହ୍ୱତ ( ଅନ୍ନତ ) ମଣି ଘୋଷିଲେ (ଘୋଷିଲେ) । ଏ ଶୈଳେ ( ଏ ଋଷ୍ୟମୂକ ପର୍ବତକୁ ) ଆସିଲେ ତୋର ମୃତ୍ୟୁ ହେଉ' 'ଏମନ୍ତ ଶାପ ବାହ୍ୱ ( ଦେଲେ ) । ତାହା ଜାଣି ( ଏମନ୍ତ ଶାପଦେବାର ଜାଣି ) 'ବାଳି' ଶବ ( ଦୈତ୍ୟର ମୃତଦେହ ) ବହୁ 'ଆଣି' ଏ (ଆଶ୍ରମ ) ନିକଟେ 'ପକାଇଲା' । ବହିତ୍ର ( ବୋଇତ ) ଯେମନ୍ତ ତରଙ୍ଗେ ( ସମୁଦ୍ର ମଧ୍ୟରେ ) ସ୍ଥିତ 'ହୋଇ' ପ୍ରକଟେ "ସେମନ୍ତ ସେ ଶବ ପଡ଼ି ପ୍ରକଟୁଛି" ୩୪ ।

୩୫ଶ ପଦ—୧ ବଳାହକୁଁ ( ଗିରି ଓ ମେଘଠାରୁ ) ପୃଥୁ (ପୃଥୁଳ) ଭୃଙ୍ଗ ( ଉଚ୍ଚ ) 'ପୁଣି ଯେ ଦୈତ୍ୟ ଅଙ୍ଗରେ ଭଦୁର ( ବଜ୍ର ) ନ ଭେଦେ ସେ ଶବକୁ ଏତେଦୂର ବଳାତ୍କାରେ ( ବଳପୂର୍ବକ ) ବହି ଆଣିଲା 'ଏଥିରୁ ଜାଣ "ବାଳି" କେତେ ବଳୀ ( ବଳବାନ୍ ) । 'ଦୁନ୍ଦୁଭି ମରିବାର ଶୁଣି' ତା ଭ୍ରାତା ( ତା ଭାଇ ) ମାୟାବୀ ( ଦୈତ୍ୟ ) ବଡ଼କ୍ରୋଧେ ଆଗତରେ ( ଆସି ) ଏ କିଷ୍କିନ୍ଧାନଗରରୁ ବଡ଼ଭୀ ( ଚନ୍ଦ୍ରଶାଳାପୁରୀ ) ପ୍ରାସାଦ ( ଦେବାଳୟ ) ୨ନଗ ( ବୃକ୍ଷ ) ସତ୍ୱରରେ ଭାଙ୍ଗିଲା । ୩୫

୧—ଗିରି ମେଘୌ ବଳାହକାବିତ୍ୟମରଃ ।
୨—ଶୈଳ ବୃକ୍ଷୌ ନଗା ବଗାବିତ୍ୟମରଃ ।

ବର ସେ ଯୋଦ୍ଧାରେ ମତ୍ତମତ୍ତ ଚପଳ ଚଳେ ।
ବରକ୍ଷେ ଯୁଝି କଢ଼ାଇ ନେଇ ରସାତଳେ ।
ବଳଦ୍ୱାରେ ଦୈତ୍ୟନାଶେ ବାହ୍ୱାର ରୁଧିର ।
ବଳଧେ ଚତ୍ୱରେ ବାଳବନାଶ ଅଧୀର । ୩୬ ।
ବସୁଧାଭୃତରେ ପୋତି ଆସିଲୁଁ ଖବର ।
ବସୁଁ ଅଭିଷେକେ ମୁହିଁ ମିଳେ କର୍ପବର ।
ବାଳାକୁ ମୋ କୋଳୁଁ ଧରି ରଚି ନିଧୁବନ ।
ବାଳାକର୍ଷିବାରେ ନେଇଥିଲ ମୋ ଜୀବନ । ୩୭ ।

୩୬ଶ ପଦ—ଯୋଦ୍ଧାରେ (ଯୋଦ୍ଧାଙ୍କ ମଧ୍ୟରେ) ବର (ଶ୍ରେଷ୍ଠ) ସେ, 'ସେ ଦୈତ୍ୟ ବଳ ସଙ୍ଗେ' ୧ଚପଳେ ଚଳେ (ଗୁପେ ଗୁପେ) ମତ୍ତମତ୍ତ 'ହୋଇ' ବରକ୍ଷେ (ବର୍ଷେ ପର୍ଯ୍ୟନ୍ତ) ଯୁଝି ରସାତଳେ (ପାତାଳକୁ) କଢ଼ାଇ ନେଇ 'ଯୁଝିଲ୍ଲ' ଦୈତ୍ୟନାଶେ (ଦୈତ୍ୟନାଶ ଯାନ୍ତେ) ବଳଦ୍ୱାରେ (ବଦର ବାଟେ) ରୁଧିର ବାହ୍ୱାର 'ହେଲା' । 'ଆମ୍ଭ' ଚତ୍ୱରେ (ମନରେ) 'ଏମନ୍ତ' ବଳଧେ (ହେଲା), ବାଳି ବନାଶ 'ଗଲ' ନେଣୁ ଅଧୀର (ଅସ୍ଥିର) ହେଲୁଁ । ୩୬ ।

୩୭ଶ ପଦ—ଖବର (ସେ ଗର୍ତ୍ତଦ୍ୱାରକୁ) ବସୁଧାଭୃତରେ (ପିବଂତରେ) ପୋତି ଆସିଲୁଁ । ମୁଁ ଅଭିଷେକ୍ତ ହୋଇ ବସୁଁ (ବସନ୍ତେ) 'ଏ ସମୟରେ' କର୍ପିବର (ବାଳି) ମିଳେ (ପ୍ରବେଶିଲ) । ମୋ ଅଭିଷେକ 'ଦେଖି' ମୋ କୋଳୁଁ (ମୋହର କୋଳରୁ) ବାଳାକୁ (ମୋ ଭାର୍ଯ୍ୟାକୁ) ଧରି 'ନେଇ' ୨ନିଧୁବନ (କେଳି) ରଚଲ । ବାଳାକର୍ଷିବାରେ (ମୋ ବାଳ ଝିଙ୍କିବାରେ) ମୋ ଜୀବନ ନେଉଥିଲ । ୩୭ ।

୧—ଚଳଂ ସ୍ୱରୂପାଧରସ୍ୟାଂ ଖଡ୍‌ଗମୁଷ୍ଟି ଶ୍ଚପେଟଯୋଃଶଚ ମେଦନୀ ।
ଚଳପ୍ରହାରେଣ ଶିରଶ୍ଚାମରଶ୍ଚ ପୃଥକ୍ କୃତଂ । ଇତ ପ୍ରୟୋଗଃ ।
୨—ରତଂ ନିଧୁବନଂ ଇତ୍ୟମରଃ ।

ବି-ଜଳ ଦୋଇ ପଳାଉଁ ଗୋଡ଼ାଉଁ ଚରମେ ।
ବିକଳେ ଲୋକାଲୋକ ଡେଇଁଲି କି ଧରମେ ।
ବାହୁଡ଼ଥିବି ସେଠାରୁ ନିଜ କଟକର ।
ବାହୁଜବର ମୁଁ ପଡ଼ୁଁ ସୁବର୍ଣ୍ଣପଙ୍କର । ୩୮ ।
ବିହାୟସ-ବାଣୀ ଶୁଣି ନୟନ ବୁଜିଲି ।
ବିହାର ଡେଇଁପଡ଼ି ଏ ଗିରିରେ ସର୍ଜିଲି ।
ବିଳମ୍ବ ଛଡ଼ ଶ୍ରମର ଯାହା ଯାହା କରେ ।
ବିଲଗ କରି ରଖି ନ ଦେଲି କଟକରେ ।୩୯।
ବୀର ଏକେ ଏକେ ଜିଣି ପାରନ୍ତି ଧରଣୀ ।
ବିରଙ୍ଗ ତାହା ଯୁଝିକୁ ଏହାଙ୍କ କରଣୀ ।
ବିଂଶକର ନେଲି ଦିନ ସ୍ୟନ୍ଦନେ ନଭରେ ।
ବିଷମ ବ୍ୟଥିତମତି ହେଲି ଶୋକଭରେ । ୪୦

---

୩୮-୩୯ଶ ପଦ—ବିଜଳ (ମରକ) ଦୋଇ ପଳାଉଁ ( ମୁଁ ପଳାଇ ଯାନ୍ତେ) ସେ ବାଳି' ଚରମେ ( ମୋ ପଛରେ ) ଗୋଡ଼ାନ୍ତେ (ଗୋଡ଼ାନ୍ତେ) ବିକଳେ (ବିହ୍ୱଳେ) ଲୋକାଲୋକ (ପର୍ବତକୁ) କି ଧରମେ (କେଉଁ ପୁଣ୍ୟ ବଳରେ) ଡେଇଁଲି । ସେଠାରୁ 'ବାଳି' ନିଜ କଟକର (ଆପଣା ପୁରକୁ) ବାହୁଡ଼ିଥିବି । ବାହୁଜବର ! (ହେ କ୍ଷତ୍ରିୟ ବର !) ମୁଁ ସୁବର୍ଣ୍ଣପଙ୍କର (ସ୍ୱର୍ଣ୍ଣମୟ ପଲଙ୍କରେ) ପଡ଼ୁଁ ( ପଡ଼ନ୍ତେ ) ବିହାୟସ ( ଆକାଶ ) ବାଣୀ ଶୁଣି ନୟନ (ଦୁଇ ଆଖି) ବୁଜିଲି । ଡେଇଁ ପଡ଼ି ଏ ଗିରିରେ (ଏହି ଋଷ୍ୟ-ମୂକ ପର୍ବତରେ) ବିହାର ( କ୍ରୀଡ଼ା ) ସର୍ଜିଲି (କଲି) । ବିଳମ୍ବ ଛଡ଼ି ଶ୍ରମର ଯାହା ଯାହା କରେ (ଯାହା ଯାହା ହସ୍ତରେ) 'ଥିଲା' ତାଙ୍କୁ କଟକରେ ନ ରଖି ବିଲଗ କରି ଦେଲା (ଦାହାର କରି ଦେଲା) ୩୮ । ୩୯ ।

୪୦ଶ ପଦ—ଏକେ ଏକେ (ଜଣେ ଜଣେ) ଏ ବୀର ଅଛନ୍ତି, ଧରଣୀକି ଜିଣିପାରନ୍ତି, ତାହା ( ବାଳିର ) ଯୁଦ୍ଧକୁ ଏହାଙ୍କ କରଣୀ (ସାମର୍ଥ୍ୟ) ବିରଙ୍ଗ ( ନିରଙ୍ଗ ) 'ବାଳୀ ବଳିଷ୍ଠ ତାଠାରୁ ଏମାନେ ଦୁର୍ବଳ ଏହିଭାବ' । ବିଂଶକର (ରାବଣ) ସ୍ୟନ୍ଦନେ ( ରଥରେ ) ନଭରେ ( ଆକାଶ ମାର୍ଗେ )

ବାଳୀକି ଛଡ଼ାଇଥାନ୍ତୁ ଆମ୍ଭେ ତୁଚ୍ଛ ରଣେ ।
ବାଳମିନ୍ଙ୍କୁ ଭୟ ହେଲା ଗୁହାରୁ କରଣେ ।
ବିମାନ ଗୃହଁବାକୁ କଣ୍ଟିକ୍ୟାପାଶେ ଥିଲା ।
ବିମାତୃଜ ନୋହେ ବ୍ୟର୍ଥେ ମୋ ଦର୍ପ ମଣ୍ଡିଲା । ୪୧ ।
ବିଭୂତି-ଜଟାଧାରଣ ଚିହ୍ନ ସେ କାହାର ।
ବିଭୂଷା ପକାଇଛୁ କେୟୂର ମଣିହାର ।
ବୋଲି ସେ ଗୁହାରୁ ଆଣିଦେଲା ସେ ଭୂଷଣ ।
ବୋଲି ଦେଲା କି ଚନ୍ଦନ ସବେରଦୂଷଣ । ୪୨ ।

ନେଲି ତିନ ଶୋକରେ, 'ଆମ୍ଭ' ମନ ବିଷମ ବ୍ୟଥିତ ( ଅସାଧାରଣ ଦୁଃଖିତ) ହେଲା ।୪୦।

୪୧ଶ ପଦ—ବାଳୀକି (ଭ୍ରାତୃ ପ୍ରିୟାକୁ) ତୁଚ୍ଛ ରଣେ (ଅଳ୍ପ ସଂଗ୍ରାମରେ) ଛଡ଼ାଇ ଘେନ (ଆଣି) ଥାନ୍ତୁ । ବାଳମିନ୍ଙ୍କୁ (ବାଳିର ମିତ୍ର ହେତୁରୁ) ତାକୁ ଆମ୍ଭର ଭୟ ହେଲା, ଗୁହାର କରଣେ ( ସେ ରାବଣ ବାଳି ଆଗରେ ଗୁହାରି କଲେ ବାଳି ମାରି ପକାନ୍ତା ଏଣୁ ଭୟ ହେଲା) । ବିମାନ ଗୃହଁବାକୁ (ବିମାନକୁ ଦେଖିବାକୁ) କଣ୍ଟିକ୍ୟା ପାର୍ଶ୍ୱେ ଥିଲା; ଏଣୁ ବିଶେଷ ଭୟ ଜନ୍ମିଲା ଏହି ଭାବ' । 'ସେ ବାଳି ମୋହର' ବିମାତୃଜ ନୋହେ ( ଏକମାତାଠାରୁ ଜନ୍ମ) ବ୍ୟର୍ଥେ (ଅକାରଣେ) ମୋ ଦର୍ପ (ଗର୍ବ)ମଣ୍ଡିଲା (ନାଶିଲା) ।

୪୨ଶ ପଦ—ହେ ବିଭୂତିଜଟାଧାରଣ ! ତାହାଙ୍କ (ଚିହ୍ନ ) ମଣିହାର 'ଇତ୍ୟାଦି' ବିଭୂଷା ( ଅଳଙ୍କାରମାନ ) ପକାଇଛି, ସେ କାହାର ଚିହ୍ନ ବୋଲି ସେ (ସୁଗ୍ରୀବ) ଗୁହାରୁ ଆଣି ସେ ଭୂଷଣ ଦେଲା । ସେ ୧ସବେର ଦୂଷଣ ( ସୁ ଗ୍ରୀବ ବାନର ) ଚନ୍ଦନ ବୋଲି ଦେଲା କି ରାମଙ୍କର ଚିତ୍ତପ୍ରସୁଖ ଜାତ ହେଲା ଏହିଭାବ । ୪୨ ।

୧ – ବେର ଦୂଷଣଃ କପୀନ୍ଦ୍ର ବାନର ପର୍ଯ୍ୟାୟଃ ।
[ବେର (ଦେହ) ସମ୍ୟକ୍ ଦୂଷଣ ଯାହାର ]

ବସନ ଅମ୍ଳାନେ ହୋଇଥିଲି ସେ ବନ୍ଧନ ।
ବଶଚିତ୍ତ କବଚକୁଚକୁ ଦେଲି ଧନ ।
ଘାଥି ଘାଥି ବାଣ ପ୍ରହାରିବାରେ ଅତନୁ ।
ବିଥିର ହୋଇ ଏଥିରେ ଘୋଡାଇବ ତନୁ । ୪୩ ।
ବାସଗଣ୍ଠି ଫିଟାଇ ଦେଖିଲେ ଅଳଂକାର ।
ବାସଅଙ୍ଗୀ ପ୍ରଶଂସା କହିଲେ ଏ ପ୍ରକାର ।
ବାମନେତ୍ରାଟି ମଣ୍ଡନ ରତ୍ନମଣ୍ଡନକୁ ।
ବାମ ହେଲି ବିଧି ଏତେକାଳେ ଏମାନଙ୍କୁ । ୪୪ ।
ବିହୀନବେଶ ସେ ନୋହି ଏ ହୋଇ ସମ୍ମତ ।
ବହିତ ଶୋଭା ଅଶେଷ ପ୍ରିୟା ନଭ ମତ ।

---

୪୩ଶ ପଦ—ସେ (ଅଳଂକାର) ବସନ ଅମ୍ଳାନେ (ଅମ୍ଳାନ ବସନରେ) ବନ୍ଧନ (ବନ୍ଧା) ହୋଇଥିଲା, ତା ଦେଖି ରାମ ବିଚାରିଲେ ମୋ ଧନ (ମୋ ପ୍ରିୟା) କବଚକୁଚକୁ (କବଚ କରିବା ନିମିତ୍ତ) ଦେଇ 'ଅଚ୍ଛ ବୋଲି' ବଶଚିତ୍ତ ହେଲେ (ମନକୁ ଆପଣାର ବଶ କଲେ) କାହିଁକି ? ଅତନୁ (କନ୍ଦର୍ପ) ଘାଥି ଘାଥି (ଶ୍ରେଣୀ ଶ୍ରେଣୀ କରି) ବାଣ ପ୍ରହାରିବାରେ ବିଥିର (ଅସ୍ଥିର) ହୋଇ କମ୍ପା ବିଥିକ (ବିଶେଷରେ ସ୍ଥିର) ହୋଇ ଏଥିରେ (ଏହି ଚସ୍ତ୍ର କବଚରେ) ତନୁ (ଦେହକୁ) ଘୋଡ଼ାଇବ (ବାଣ ଭେଦିବ ନାହିଁ) । ୪୩ ।

୪୪ଶ ପଦ—ବାସ ଗଣ୍ଠି (ବସନ ଗଣ୍ଠି) ଫିଟାଇ ଅଲଙ୍କାର ଦେଖନ୍ତେ ବାସଅଙ୍ଗୀ (ସୀତାଙ୍କ) ପ୍ରଶଂସା ଏ ପ୍ରକାର (ଏହିପରି) କହିଲେ ଏ ରତ୍ନମଣ୍ଡନକୁ (ରତ୍ନାଲଙ୍କାରକୁ) ବାମନେତ୍ରା (ବାମଲୋଚନା ସୀତା) ମଣ୍ଡନ (ଭୂଷଣ) ଟି କନ୍ତୁ ଏ ଅଲଙ୍କାର ସୀତାର ଭୂଷଣ ନୁହନ୍ତି; ଏତେକାଳେ ବିଧି ଏମାନଙ୍କୁ (ଏ ଭୂଷଣମାନଙ୍କୁ) ବାମ (ପ୍ରତିକୂଳ) ହେଲା । ଏମାନେ ସୀତା ଅଙ୍ଗରେ ଶୋଭା ପାଉଥିଲେ, ଏବେ ଅଶୋଭା ଦିଶିଲେ ଏହିଭାବ ॥

୪୫—ପଦ ସେ (ପ୍ରିୟା) 'ଅଳଙ୍କାର ବିନା' ବିହୀନ ବେଶ (ବେଶ ବିହୀନ) ନୋହି (ନ ହୁଏ); ଏ (ଏହି ଅଲଙ୍କାର ସବୁ) ବିହୀନ ବେଶ ହୋଇ

ବିଭିନ୍ନ ଧୀନ ହେବାରେ ନକ୍ଷତ୍ରମାଳାରେ ।
ବିଖ୍ୟାତ ଚନ୍ଦ୍ର ନୋହିବ ରଜନୀ ମେଳାରେ । ୪୫ ।
ବିଧାସ୍ତ ହେବାରୁ କରି ତାପ ଘନକାଳ ।
ବିଦିତ କଲା କଙ୍କଣ ମୁଖିବା ତନ୍କାଳ ।

( ହୁଏ ). ଏହା ସମ୍ମତ ( ସର୍ବ ସମ୍ମତ ); ଏହା ଦ୍ୱାରା ସୀତାଙ୍କ ରୂପାଧିକ୍ୟ ସୂଚିତ ହେଲା ✻ । ପ୍ରିୟା ( ମୋ ସୀତା ) ନଭମତ ( ଆକାଶ ପରି ) ଅଶେଷ ଶୋଭାରୁ ( ଅନନ୍ତ ଶୋଭାରେ ) ବନ୍ଧିତ ଅଟେ । 'ଆକାଶ' ଦୀନ ହେବାରେ ନକ୍ଷତ୍ରମାଳାରେ ବିଭିନ୍ନ ହୁଏ । 'ମୋ ପ୍ରିୟା' ଧୀନ ( ଦୁଃଖୀ ) ହେବାରେ ¹ନକ୍ଷତ୍ରମାଳାରେ ( ସତେଇଶ ଗୋଟି ମୁକ୍ତା ମାଳାରେ ) ବିଭିନ୍ନ ହେଲା । 'ଆକାଶ' ରଜନୀ ( ²ଧ ) ମେଳାରେ ( ସଙ୍ଗମରେ ) ବିଖ୍ୟାତ ଚନ୍ଦ୍ର ( ଉଦ୍ଭାସିତ ) ନୋହି 'ଶୋଭାପାଏ' । 'ମୋ ପ୍ରିୟା' ବିଖ୍ୟାତ-²ଚନ୍ଦ୍ର ( ଉଦ୍ଭାସିତ ) 'ହୋଇବାରୁ' ³ରଜନୀ ( ହରିଦ୍ରା ) ମେଳାରେ ( ସଯୁକ୍ତ ) ନୋହିବ । ୪୫ ।

୪୬ଶ ପଦ—କଙ୍କଣାଳଙ୍କାର ଦେଖି ଏମନ୍ତ ବିଚାରିଲେ, ତାପ ( ସନ୍ତାପ ) ଘନକାଳ ହେଲା, 'ସେ' ବିଧାସ୍ତ ( ଉଦିତ ) ହେବାରୁ ତତ୍କାଳ ( ସେଠାରେ ) କଙ୍କଣ ( କଙ୍କଣାଳଙ୍କାର ) ⁴କଙ୍କଣ (ଜଳକଣ) ହେଲା; 'ତାହାର ମୁଖିବା ବିଦିତ ( ପ୍ରକାଶ ) କଲା । ସୂର ( ଶବନାକର ) ଶରଦରେ (ଶରତ୍କାଳରେ) ହସ ସର (ରସପୂର୍ଣ୍ଣ ସିନ୍ଧୁବର-ମାନସରୋବରକୁ) ହଂସ ନଷ୍ଟସ୍ୟ ଆଦରେ ବଦୂରତ ( ଅନାଦର ) କରେ, 'ବର୍ଷାକାଳରେ ଆଦର କରେ' । ବିଦ୍ୟୁଦ୍‌ଘୋଷ ( ସୀତା ) ରସସର (ଶୃଙ୍ଗାର ରସପୂର୍ଣ୍ଣ

✻—ତଦୁକ୍ତଂ—ଅଙ୍ଗାନ୍ୟଭୂଷିତାନ୍ୟେବ କ୍ଷମ୍ୟାଦ୍ୟୈ ର୍ବିଭୂଷଣୈଃ ।
ଯେନ ଭୂଷିତବଦ୍ଭାତି ତଦ୍ରୂପ ମିତି କଥ୍ୟତେ । ଇତି ।
୧—ସୈବ ନକ୍ଷତ୍ରମାଳା ସ୍ୟାତ୍ ସପ୍ତବିଂଶତି ମୌକ୍ତିକୈଃ । ଇତ୍ୟମରଃ ।
୨—ଚନ୍ଦ୍ରଂ ଛନ୍ନେ ଚନ୍ଦ୍ରିକାୟାଂ ମତି ବର୍ଣ୍ଣଃ ।
୩—ରଜନୀ ଜତୁକା ନୀଲୀହରିଦ୍ରା କ୍ଷପୋସୁ ଚ ଇତି କୁମୁଦଃ ।
୪—ପୁଷ୍ପୀ ଶୀର୍ଷ ଜଲେଷ୍ବୁ କମିତି ମେଦିନୀ ।

ବଦୂ୍ୟଦ୍‌ଗୋଷ୍ଠୀ ରସଂସର ସୁରଶରଦରେ ।
ବଦ୍ରତ ହଂସକରେ ନିଷ୍ଟସ୍ପୃ ଆଦରେ । ୪୬ ।
ବନ୍ଦୀ ହୋଇ ରକ୍ଷପୁରେ ଏମନ୍ତ ମତ୍ତରେ ।
ବନ୍ଦିଆ ରଖିଲ ପଦ୍ମ ତାହାର ଶ୍ରୁତିରେ ।
ବଧବାବେଶ ଶଙ୍କାରେ ରଖିଛି ଅତଲ ।
ବଧ୍ୱଂସେ ଏ ଭାବ ଧର୍ମ ସ୍ନେହ କାହିଁ ତଲ । ୪୭ ।
ବର୍ଣ୍ଣନ୍ତେ ଏରୂପେ ସ୍ୱରଭଙ୍ଗ ପରଚରେ ।
ବର୍ଣ୍ଣମାନ ବ୍ୟକ୍ତ ହୋଇ ତହୁଁ ନ ଉଇଚେ ।
ବସ୍ତ୍ରର ସମ ଲଚକ ନୋହିଲ ନିବାର ।
ବସ୍ତ୍ରସ୍ଥଳ ଛିନ୍ନଗଲା ପଡ଼ି ଅଶ୍ରୁ ବାର । ୪୮ ।

---

ସବେବରର ) 'ତାହାଙ୍କର' ସୁରଶରଦରେ ( କାମବାଣ ଭୟରୁ ) ହଂସ କରେ ( ପାଦକଣ୍ଟକାଳଙ୍କାରରେ ) ବଦ୍ରତା ( ଅନୁରକ୍ତା ) ହେଲା । 'ପାଦକଣ୍ଟକ ତାକୁ ଛାଡ଼ିଲ ଏହିଭାବ' । ୪୬ ।

୪୭ଶ. ପଦ—'ସେ ବାଳା' ରକ୍ଷପୁରେ ( ଲଙ୍କାରେ ) ବନ୍ଧ ହୋଇ ରହିବି' ଏମନ୍ତ ମନରେ ( ଏମନ୍ତ ବୁଦ୍ଧିରେ ) ବନ୍ଦିଆ ( ଅଳଙ୍କାରକୁ ) ଶ୍ରୁତିରେ ( ଶ୍ରବଣରେ ) ରଖିଲା ପଦ୍ମ, କାହିଁକି ନା ? ବନ୍ଦୀ ହେବା ଲୋକ ପାଖରେ ବନ୍ଧଆମାନେ ଥାନ୍ତି' 'କରତେ ଯାହା ସେ' ଅତୁଳ (ଅଳଂକାରକୁ) ରଖିଛି 'ସେ କେବଳ' ବିଧବା ବେଶ ଶଙ୍କାରେ । 'ଏହି ଯେଉଁ' ଭାବ ଧର୍ମ ଏ 'ଏକା' ମୋତେ ବିଧ୍ୱଂସେ, ଆଉ ସ୍ନେହ 'ତାକୁ' ତୁଲ ( ସମାନ ) କାହିଁ ( ନାହିଁ ) । ୪୭ ।

୪୮ଶ ପଦ—ଏରୂପେ ବର୍ଣ୍ଣନ୍ତେ, ( ବର୍ଣ୍ଣନା କରନ୍ତେ ) ସ୍ୱରଭଙ୍ଗ (ତାଙ୍କର ବିକୃତ ସ୍ୱର ) ପରଚରେ (ପ୍ରଚାରେ—ପ୍ରକାଶିଲା) । ତହୁଁ ବର୍ଣ୍ଣମାନ ( ଅକ୍ଷର ସବୁ ) ସ୍ପଷ୍ଟ ହୋଇ ନ ଉଠେରେ ( ବୁଝା ନ ଗଲା ) । ଲଚକ ( ଲବମାତ୍ରକ କାଳ ) ବସ୍ତ୍ର ସମ ( ବର୍ଷକ ତୁଲ୍ୟ ) ହେଲା, ଅଶ୍ରୁବାର ( ଲୋତକ ) ପଡ଼ି ବସ୍ତ୍ରସ୍ଥଳ ( ବକ୍ଷସ୍ଥଳ ) ଛିନ୍ନଗଲା, 'ସେ ଅଶ୍ରୁ' ନିବାର ନୋହିଲା ( ବଳାତ୍କାରେ ଉଚ୍ଛୁଳିଲା ) । ୪୮ ।

ବିଷାଦେ ନିଶ୍ୱାସ ତେଜି ହା ସୀତା ଭଷିତ ।
ବିଷାବିଷ୍ଟ କାମକାଣ୍ଡେ ହେଲେ ଆକର୍ଷିତ ।
ବାନ୍ଧନ୍ତେ ଭୂଷା ଲକ୍ଷ୍ମଣ ଏହା ଦେଖି ହେଲେ ।
ବାନ୍ଧିବାରେ କି ଦଣ୍ଡ ହେଲଟି କହି ହେଲେ । ୪୯ ।
ବଜ୍ରଭି ଶପୂନେ ହୃଦୁଁ ହୃଦୟ ଅନ୍ତରେ
ବଡ଼ଭୟାଳୁ ଚମକି ଭିଡ଼ଇ କାତରେ ।
ବିକ୍ଷେପ ଜୀବନ ନୋହିଥିବ କିକ ସଖି ।
ବିଲୋକି ଦଶବଦନ ଭୁଜହିଁ ବିଂଶକି ।
ବଞ୍ଚି କି ଆୟୁତେ ଶଣ ପଡ଼ିଲା ପତିରେ ।
ବଞ୍ଚିଥିବ ଜୀବ ଥିଲେ ହବା ଶବଂଶରେ ।

---

୪୯ଶ ପଦ—ବିଶାଦେ ( ବିଷଣ୍ଣ ହୋଇ ) ନିଶ୍ୱାସ (ଦୀର୍ଘନିଶ୍ୱାସ) ତେଜି ହା ସୀତା ଭଷିତ (ହା ସୀତା ଏମନ୍ତ କହିଲେ) ବିଷାବିଷ୍ଟ (ବିମୋହ) କାମକାଣ୍ଡେ ( କାମ ବାଣରେ ) ଆକର୍ଷିତ ହେଲେ । ଏହା ଦେଖି ଲକ୍ଷ୍ମଣ ହେଲେ ଭୂଷା (ସ ଅଳଂକାରକୁ) ବାନ୍ଧନ୍ତେ ବାନ୍ଧିବାରେ କି ଦଣ୍ଡ ହେଲାଟି ? ଏମନ୍ତ କହି ହେଲେ । ୪୯ ।

୫୦ଶ ପଦ—ବଜ୍ରଭି ଶପୂନେ (ଚନ୍ଦ୍ରଶାଳା ପୁରେ ଶୟନ କରିବାରେ) ହୃଦୁଁ (ହୃଦୟରୁ) ହୃଦୟ ଅନ୍ତରେ (ଅନ୍ତର ହୃଅନ୍ତେ) ବଡ଼ ଭୟାଳୁ "ହେଉଥିଲୁ" ଚମକି "ପଡ଼ି" କାତରେ ଭିଡ଼ଇ "ଏମନ୍ତ ଯେ" ସଖି 'ସେ' ଦଶବଦନ (ଦଶଟା ମୁଖ) ବିଂଶତି ଭୁଜହିଁ ( "କୋଡ଼ିଏଟା ହାତ) ବିଲୋକି (ଦେଖି) ଜୀବନ ବିକ୍ଷେପ କିକି ନୋହିଥିବ (ମରିଯାଇ ନ ଥିବ କି ? )। ୫୦ ।

୫୧ଶ ପଦ—ବଞ୍ଚି କି ( ଶୃଗାଳ ) ଆୟୁତେ ( ଆୟୁଶରେ ) ଶଣ (ଶଶା) ପଡ଼ିଲା ପତିରେ ( ପ୍ରାପ୍ତ ) ଜୀବ (ପ୍ରାଣ) ଥିଲେ ହବା ଶବଂଶରେ (ଅନ୍ତୋରାତ୍ରରେ) ବଞ୍ଚିଥିବ (କିଛି ତାର କର୍ତ୍ତବ୍ୟ ନ ଥିବ) । କପୋତୀ (କପୋତ ସ୍ତ୍ରୀ) ବ୍ୟାଧ ଜାଲେ (ବ୍ୟାଧ ଜାଲରେ) ବନ୍ଧ ହେଲେ ଯେସନ

ବଢ ବ୍ୟାଧିକାଳେ କ୍ଷେଳ କପୋତି ଯେସନ ।
ବଢତା କବରେ ଯେ ସୁନ୍ଦରୀ ସେ ଏସନ ୫୧ ।
ବିନା ଦରଶନେ ତାହା କଷଣ ଭାବରେ ।
ବିନାଶ ନୋହି ରହିଛୁ କାହିଁକି ଜୀବରେ ।
ବରଚ ଆଦ୍ୟନ୍ତ ଅନୁପ୍ରାସ ଆସପଦେ ।
ବୀରବର ଉପଇନ୍ଦ୍ର ଗୁଣ ବାନନ୍ଦପଦେ । ୫୦ ।

—ଃ୦ଃ—

## ଅଷ୍ଟାବିଂଶ ଛାନ୍ଦ ।

ରାଗ—ଦେଶାକ୍ଷ । ଚକ୍ରକେଳି ବାଣୀ ।

ବୋଲେ ସୁଗ୍ରୀବେ ରାମ କ୍ଳେଶଭାଷା । ବେନି ଜନେ ପଡ଼ିଛୁ ଏକାଦଶା ॥
ତ୍ରିଭୁବସୁବଂଶେ ଜାତ ଆମ୍ଭର । ବଧିରେତ ତୁମ୍ଭେ ତାଙ୍କ କୁମର ।୨।

'ବ୍ୟାକୁଳିତ ହୁଏ' । କବରେ (କବିଙ୍କ ଦ୍ୱାରା) ବଢନ୍ତା (ବଢନ୍ତିସ୍ଥା) ଯେ ସୁନ୍ଦରୀ (ସୀତା) ସେ ଏସନ (ଏସନ ବ୍ୟାକୁଳ ହେଉଥିବ) ୫୧ ।

୫ ଶ ପଦ—ବିନା ଦରଶନେ (ଦର୍ଶନ ବ୍ୟତିରେକରେ) ତାଙ୍କୁ ନ ଦେଖି ତାହା କଷଣ ଭାବରେ (ତାଙ୍କ କଷ୍ଟ ଭାବନାରେ) ବିନାଶ ନୋହି "ମୁଁ" କାହିଁକି ଜୀବରେ ( ପ୍ରାଣ ଧରି ) ରହିଅଛୁ ? ଏମନ୍ତେ ଆପଣାକୁ ଧିକ୍କାର କଲେ । ଆଦ୍ୟନ୍ତ ଅନୁପ୍ରାସ ଆସପଦେ (ଆଦ୍ୟନ୍ତ ଅନୁପ୍ରାସର ସ୍ଥାନ) "ଏମନ୍ତ" ଚଉବିଂଶତି ଗୁଣ ବାନନ୍ଦପଦେ ( ବାନ୍ଦନ ପଦରେ ) ବୀରବର ଉପଇନ୍ଦ୍ର (ଭଞ୍ଜଭୂପ) ବରଚ (ରଚିଲେ) । ୫୨ ।

—ଃ୦ଃ—

### ଅଷ୍ଟାବିଂଶ ଛାନ୍ଦ

୧ ମ ପଦ—ରାମ ସୁଗ୍ରୀବେ (ସୁଗ୍ରୀବଙ୍କୁ) କ୍ଳେଶଭାଷା (କଷ୍ଟକଥା) କହେ, (କହନ୍ତି), ବେନିଜନେ (ଆମ୍ଭେ ଦୁଇଜଣଙ୍କ) ଏକ ଦଶା ପଡ଼ିଅଛୁ (ଏଥିରେ କିଛି ନ୍ୟୁନାଧିକ ନାହିଁ) । ୧ ।

୨ୟ ପଦ—ତ୍ରିଭୁବସୁ (ସୂର୍ଯ୍ୟ) ବଂଶେ ଆମ୍ଭର ଜାତ (ଜନ୍ମ) ଅଟେ । ବଧିରେ ତୁମ୍ଭେ ତାଙ୍କ (ସୂର୍ଯ୍ୟଙ୍କ) କୁମର (ପୁତ୍ର) ଅଟ । ୨ ।

ବସୁଁ ଅଯୋଧ୍ୟା କିଷ୍କିନ୍ଧ୍ୟାରାଜନ । ଭୂଷରେ ବନେ ହେଲା ସଦନ ॥
ବାମାବଚ୍ଛେଦ ପରଧରଷଣେ । କଷ୍ଟ ଦିନ ଫଳ-ମୂ-ଳଭକ୍ଷଣେ ।୪।
ବନ୍ଧୁ ଅନୁଜ ମନ୍ତ୍ରୀ ପ୍ରବୋଧନେ । ବୋଧ ହୋଇ ରହୁଥାଇଁ ଜୀବନେ ॥
ବାଧା ମାତା ଭ୍ରାତାରେ ଉପୁଜୁଛି । ଶତ୍ରୁଙ୍କ ସାଧିବା ଇଚ୍ଛା ଅଛି ।୬।
ବ୍ୟବହାରେମିତ୍ର ହେବା ଉଚିତ । ବୋଲେ ସୁଗ୍ରୀବ ଶୁଣ ରଘୁସୁତ ।୭।
ବୁଲ ଧରଣୀ କେବଳ ତୁମ୍ଭେ । ବାଳକରେ ଗିରିରେ ଲୁଚୁ ଆମ୍ଭେ ।

---

୩ୟ ପଦ—ରାଜନ ଭୂଷରେ (ରାଜ୍ୟ ଭୂମିରେ) "ଆମ୍ଭେ" ଅଯୋଧ୍ୟା (ଅଯୋଧ୍ୟା ରାଜ୍ୟରେ) "ତୁମ୍ଭେ" କିଷ୍କିନ୍ଧ୍ୟା (କିଷ୍କିନ୍ଧ୍ୟା ରାଜ୍ୟରେ) ବସୁଁ (ବସନ୍ତେ) ବନେ (ବନରେ) ସଦନ (ଆମ୍ଭ ଦୁହିଁଙ୍କର ବାସ) ହେଲା । ଅଥବା "ଆମ୍ଭେ" ଅଯୋଧ୍ୟା ରାଜନ "ତୁମ୍ଭେ" କିଷ୍କିନ୍ଧ୍ୟା ରାଜନ "ହୋଇ" ବସୁଁ (ବସିବାବେଳେ) ବି-ଭୂଷରେ (ଐଶ୍ୱର୍ଯ୍ୟ ବିହୀନ ହୋଇ (ବନେ ସଦନ ହେଲା)।୩।

୪ର୍ଥ ପଦ—ପରଧରଷଣେ ଶତ୍ରୁର ଦୌରାତ୍ମ୍ୟରେ) "ଆମ୍ଭ ଦୁହିଁଙ୍କର" ବାମାବଚ୍ଛେଦ "ହେଲା", ଫଳ ମୂଳ ଭକ୍ଷଣେ ଦିନକଷ୍ଟ (ଦୁହେଁ ଫଳ ମୂଳ ଖାଇ କାଳ କାଟୁଥାଉଁ) । ୪ ।

୫ମ ପଦ—"ମୁଁ" ବନ୍ଧୁ (ମୋର ମିତ୍ର) ଅନୁଜ ଲକ୍ଷ୍ମଣ) ପ୍ରବୋଧନେ (ବୋଧ ଦେବାରେ) "ତୁମ୍ଭେ" ବନ୍ଧୁ (ହନୁମାନ) 'ଓ' ମନ୍ତ୍ରୀ (ଚାର ମନ୍ତ୍ରୀଙ୍କ ବନିଙ୍କ) ପ୍ରବୋଧନେ ବୋଧ ହୋଇ "ଦୁହେଁ" ଜୀବନ (ପ୍ରାଣ ଧରି) ରହୁଥାଉଁ । ୫ ।

୬ଷ୍ଠ ପଦ—ମୋହର ମାତା (କେକୟୀ ଯୋଗୁଁ) ତୁମ୍ଭର ଭ୍ରାତାରେ (ବାଳିଯୋଗୁଁ) ବାଧା (ଏ ଦୁଃଖ) ଉପୁଜୁଛି । ଆମ୍ଭ ଦୁହିଁଙ୍କର ଶତ୍ରୁଙ୍କ (ରାବଣ ବାଳିଙ୍କ) ସାଧିବା ଇଚ୍ଛା ଅଛି । ୬।

୭ମ ପଦ—ବ୍ୟବହାରେ (ଦୁହିଁଙ୍କର ସମାନ ବ୍ୟବହାର ଯୋଗୁଁ) ମିତ୍ର ହେବା ଉଚିତ ହେଲା । ସୁଗ୍ରୀବ ବୋଲେ, ହେ ରଘୁସୁତ ! ତୁମ୍ଭେ ଶୁଣ । ୭ ।

୮ମ ପଦ—"କେବଳ ଏକାକୀ ପ୍ରଭେଦ" ତୁମ୍ଭେ ଧରଣୀରେ ଧରଣୀ (ପୃଥିବୀରେ) ବୁଲ (ବୁଲୁଅଛ) ଆମ୍ଭେ ବାଳି ଡରରେ ଗିରିରେ ଲୁଚୁଁ । ୮ ।

ବଳବନ୍ତ ହେଲେ ଯଥା କେଶରୀ । ବଧେ ଗଜାଦ ଶରଭକୁ ଡରି ।୯।
ବନ୍ଧୁ ପାଇବ କେଉଁ ଓ୍ୱପକାର । ବୋଲ ମିତ୍ର ହେବା ତୁମ୍ଭ ଆମ୍ଭର ।୧•
ବୋଇଲେ ରଘୁବୀର ଶୁଣି ଓ୍ୱସ୍ତେ କେ । ବନ୍ଧ ପକାଇବ ବାଳ ବାଣେକେ ॥
ବ୍ରହ୍ମଲୋକେ ଥିଲେ ସୀତା ଖୋଜାଇ । ବାଦ ରଚନେ ଆଣିବ ସେକାଳ ॥
ବାର ଏ କପି ମୋର ମନେ ଅଛି । ବାଳନନ୍ଦନ ଜନ୍ମ ଡେଉଁଥିବ ।୧୩
ବୋଲବୋଲ ସେ ହୋଇ ଏତେମାତ୍ର । ବହ୍ନି ସାକ୍ଷୀକରାଇ ହେଲେମିତ୍ର

୯ମ ପଦ—'ପୁଣି ସୁଗ୍ରୀବ ଆପଣାର ଶୌର୍ଯ୍ୟକୁ ଦୃଷ୍ଟାନ୍ତର ଦେଖାଇ କହୁଅଛି' କେଶରୀ (ସିଂହ) ବଳବନ୍ତ (ବଳବାନ) ହେଲେ 'ଯଥା' ଯଥା ଗଜାଦ (ହାତୀ ପ୍ରଭୃତି ମୃଗଙ୍କୁ) ବଧେ (ମାରେ); 'କିନ୍ତୁ' ଶରଭକୁ ଡର (ଅଷ୍ଟାପଦ ମୃଗକୁ ଦେଖିଲେ ଡରେ) । 'ତଥା' ମୁଁ ବଳବନ୍ତ, କେବଳ ବାଳିକି ଡରେ, ଆଉ କାହାକୁ ଡରେ ନାହିଁ । ୯ ।

୧୦ମ ପଦ —'ବନ୍ଧୁ' ବୋଲ ତୁମ୍ଭର ଆମ୍ଭର ମିତ୍ର ହେବା 'ବୋଲ' ମୁଁ ତୁମ୍ଭର କେଉଁ ଉପକାରକୁ ବନ୍ଧୁ ପାଇବ (କରିବ ସାଧନ) । ୧୦ ।

୧୧ଶ ପଦ 'ଏମନ୍ତ' ଶୁଣି ରଘୁବୀର ସ୍ପଷ୍ଟ ବୋଲେ (କହିଲେ) ବାଣରେ (ଏକ ବାଣରେ) ବଳି (ବାନରଙ୍କୁ) ବନ୍ଧ ପକାଇବ । 'ତୁମ୍ଭେ କାହିଁକି ଡରୁଛ' ? । ୧

୧୨ଶ ପଦ ସେ କହିଲେ(ସୁଗ୍ରୀବ କହିଲେ) ସୀତା ବ୍ରହ୍ମଲୋକେ ଥିଲେ ବାଦ ରଚନେ ବା (ଡ ଜଣ) ଖୋଜାଇ ଆଣିବା । ୧୨ ।

୧୩ଶ ପଦ – ବାର 'ଅଟେ' ଏ ହେଉଁ କପି ମୋର ସଙ୍ଗେ ଅଛି 'ଏ' ଜନ୍ମ (ଜନ୍ମ ସେ ମୋ ସଙ୍ଗେ) ବାଳଭାନୁ (ବାଳ ସୂର୍ଯ୍ୟଙ୍କୁ) ଡେଉଁ ଥିବ ।୧୩।

୧୪ଶ ପଦ ସେ (ଦୁହେଁ) ଏତେମାତ୍ର ବୋଲବୋଲ ହୋଇ (ରାମ ବାଳି ମାରିବେ, ସୁଗ୍ରୀବ ସୀତା ଖୋଜି ଦେବେ, ଏରୂପେପ୍ରତିଜ୍ଞାକରି) ବହ୍ନି (ଅଗ୍ନି) ସାକ୍ଷୀ କରାଇ ମିତ୍ର ହେଲେ ।୧୪।

୧—ଓ୍ୱପସ ବାକ୍ୟ ଶରଭ ଶାର୍ଦ୍ଦୂଲୋ ଅଷ୍ଟାପଦ ।
୧—ଉଷ୍ଟ ଠେ ଯୁକ୍ତ ଉଷ୍ଟୁକ ଇତ୍ୟମରଃ ।

ବୋଲନ୍ତି ଶତ୍ରୁକୁ ଦେଖାଅ ରାଘବ । ବୋଲୁଅଛୁ ସବିନୟେ ସୁଗ୍ରୀବ ।୧୫
ବଧିବାକୁ ଇଚ୍ଛା ଯେବେ ବାଳିକ । ବଳ କଷି ଦୁନ୍ଦୁଭି ଅସ୍ଥି ଠେକ ।୧୬
ବଚନ ରାମ ଶୁଣି ସେ ସନ୍ନିଧିର । ବୃଦ୍ଧାଙ୍ଗୁଳିକ ବାମଚରଣର ।୧୭।
ବିନ୍ୟସ୍ତ ସେ କଲେ ଅସ୍ଥି ଗିରିରେ । ବନରୁହେ କଣ୍ଟକର ପରିରେ ॥
ବେଗେ ତୋଳି ଦେଲେ ନ ସେ ଯେମନ୍ତ । ବିହାୟସେ ଫିଙ୍ଗି ଦେଲେ ତେମନ୍ତ
ବଡ଼େ ଶୁଭିଲା ଶବ୍ଦ ତହିଁର । ବ୍ୟୋମେ ଦୃଷ୍ଟି କଷ୍କିନ୍ଧ୍ୟାବାସିଙ୍କର ॥

---

୧୫ଶ ପଦ—ରଘୁବର ରାଘବ (ରାମ) ଶତ୍ରୁ ( ତୁମ୍ଭ ଶତ୍ରୁ ବାଳିକି ) ଦେଖାଅ ବୋଲନ୍ତି (ବୋଲନ୍ତେ) ସୁଗ୍ରୀବ ସବିନୟେ (ବିନୟ ଯୁକ୍ତ ହୋଇ ) ବୋଲୁଅଛୁ । ୧୫ ।

୧୬ଶ ପଦ—'ଆପଣ' ଯେବେ ବାଳିକି ବଧିବାକୁ ଇଚ୍ଛା ( ଇଚ୍ଛାକର )ଁ 'ତେବେ' ଦୁନ୍ଦୁଭି ଅସ୍ଥି (ଦୁନ୍ଦୁଭି ଦୈତ୍ୟ ହାଡ଼) ଠେକ ବଳ କଷ ) ମାର-ପାରିବ କି-ପ ପାରିବ ପରୀକ୍ଷା କର ) । ୧୬ ।

୧୭-୧୮ଶ ପଦ—ଶୁଣି ରାମ ସେ ସନ୍ନିଧିର ( ଅସ୍ଥି ନିକଟରେ) ବଚନ 'କଲେ' ବାମଚରଣର ( ବାମପାଦର ) ବୃଦ୍ଧାଙ୍ଗୁଳିକ ଶିଘ୍ର ( ଶୀଘ୍ର ) ବନରୁହେ (ପଦ୍ମରେ) କର (ଥୋରହସ୍ତ) 'ଦେଲା' ପରିରେ ( ପ୍ରାୟ ) ସେ ଅସ୍ଥିଗିରିରେ ( ପର୍ବତ ତୁଲ୍ୟ ଦୈତ୍ୟଙ୍କ ଅସ୍ଥି ଉପରେ) ବିନ୍ୟସ୍ତ (ବିନ୍ୟସ୍ତ )କଲେ । ୧୭ । ୧୮ ।

୧୯ଶ ପଦ—ସେ ( ଶିଘ୍ର ) ଯେମନ୍ତ 'ଧରିଲେ' ବେଗେ 'ତୋଳେ' ତୋଳି ଦେଲା (ପଦ୍ମକଣ୍ଟିକୁ) 'ଫିଙ୍ଗି ଦିଅନ୍ତି' ତେମନ୍ତ 'ରାମ' ସେ 'ଅସ୍ଥି ପର୍ବତକୁ' 'ବେଗେ ତୋଳି ଦେଲେ' ବିହାୟସେ ( ଆକାଶରେ ) ଫିଙ୍ଗି ଦେଲେ । ୧୯ ।

୨୦ଶ ପଦ—ତହିଁର ଶବ୍ଦ (ଶବ୍ଦହେବା ଯୁକ୍ତ) ବଡ଼େ ଶୁଭିଲା, 'ତେଣୁ, କଷ୍କିନ୍ଧ୍ୟାବାସିଙ୍କର ବ୍ୟୋମଦୃଷ୍ଟି ହେଲା ( କ ଶବ୍ଦ ବୋଲି କଷ୍କିନ୍ଧ୍ୟାର ଲୋକ ଆକାଶକୁ ଚାହିଁଲେ) । ୨୦ ।

ବିତର୍କିଲେ କି ମହାନାଗ ଉଡ଼ି । ବଜ୍ରଘାଏ ବହୁତଦୂର ପଡ଼ି ।୨୧।
ବିକଳିତା ଉପୁଜିଲା ସୁଗ୍ରୀବେ । ବଡ଼ ଗୁରୁ ଏ ହୋଇଥିଲା ପୂର୍ବେ ॥
ବପା ଆଦି ମାଂସ ଚର୍ମେ ସମ୍ପୂର୍ଣ୍ଣ । ବିନାଶ ତ ପ୍ରୂତିବଶେ ସେମାନେ
ବିବସ୍ୱାନ କରଣେ ଶୁଷ୍କଭାବ । ବଢ଼େ ବାଳି ତେବେ ଏବେ ରାଘବ ।୨୪
ବୋଲେ କଥା ଏକ ଅଛି ଆହୁରି । ବଜ୍ରୁଁ ଆଣ୍ଠ ସପ୍ତଶାଳମାଧ୍ୟସ୍ଥ ।୨୫

୨୧ଶ ପଦ—'ଏବଂ' ବିତର୍କିଲେ (ଅନ୍ୟୋଽନ୍ୟରେ ତର୍କ କଲେ), ମହା[୧]ନାଗ (ଐରାବତ) ବଜ୍ରଘାଏ (ବଜ୍ରର ଆଘାତ ପାଇ) ଉଡ଼ି ବହୁତ ଦୂରେ ପଡ଼ିଲା କି ? ଅଥବା—ମଇନାକ (ମୈନାକ ପର୍ବତ) ବଜ୍ର ଘାଏ ଉଡ଼ି ବହୁତ ଦୂରେ ପଡ଼ିଲା କି ? । ୨୧ ।

୨୨ଶ ପଦ—ସୁଗ୍ରୀବେ (ସୁଗ୍ରୀବଙ୍କ ମନରେ) ବିକଳିତା (ସଂଶୟ) ଉପୁଜିଲା । ପୂର୍ବେ (ଅସ୍ଥିଗଣ) ବଡ଼ ଗୁରୁ ହୋଇଥିଲା । ୨୨ ।

୨୩ଶ ପଦ—[୨]ବପା (ହୃଦସ୍ଥମେଦ) ଆଦି ମାଂସ ଚର୍ମ "ଦ୍ୱାରା" ସମ୍ପୂର୍ଣ୍ଣ 'ହୋଇଥିଲା' ଏବେତ ସେମାନ (ସେ ସବୁ) ପ୍ରତିଦିନରେ (ପଚିଯିବାରୁ) ବିନାଶ 'ହୋଇଗଲା' ତ; ଏଣୁ ଉଶ୍ୱାସ ହେଲା; ତାକୁ ବୁଢ଼ା ଆଙ୍ଗୁଳିରେ ଫିଙ୍ଗିଦେଲେ ଏରୂପ ସୁଗ୍ରୀବ ଭାବିଲେ ଏହି ସରଳାର୍ଥ ।୨୩

୨୪ଶ ପଦ—'ପୂର୍ବେ' ବିବସ୍ୱାନ (ସୂର୍ଯ୍ୟଙ୍କ) କରଣେ (କିରଣରେ) ଶୁଷ୍କଭାବ 'ବହିଲା' (ଶୁଖିଗଲା) । ତେବେ (ମେଦମାଂସ ପୂର୍ଣ୍ଣଥିବା-ବେଳେ) ବାଳି ବଢ଼େ (ବଢ଼ିଥିଲା) ଏବେ (ବର୍ତ୍ତମାନ) ରାଘବ (ରାମ) 'ଅଙ୍ଗୁଳିରେ ଫିଙ୍ଗିଦେଲେ' । ବାଳିଠାରୁ ଏହାଙ୍କର ବଳାଧିକ୍ୟ ଜଣା ନ ପଡ଼ିଲା ଏହି ଭାବ । ୨୪ ।

୨୫ଶ ପଦ—ବୋଲେ (ସୁଗ୍ରୀବ କହିଲେ), ଆହୁରି କଥା ଏକ ଅଛି (ପୁଣି ଗୋଟିଏ କଥା ଅଛି) । ବଜ୍ରୁଁ (ବଜ୍ରଠାରୁ) ଆଣ୍ଠ ସପ୍ତ [୩]ଶାଳ (ସପ୍ତଶାଳବୃକ୍ଷର) ମାଧ୍ୟସ୍ଥ 'ଅଟେ' । ୨୫ ।

୧—ନାଗ ପନ୍ନଗ ମାତଙ୍ଗ କ୍ରୂରଚେଷ୍ଟ ତୋୟଦେ ଇତି ମେଦିନୀ ।
୨—ହୃନ୍ମେଦସ୍ତୁ ବପା ବସା ଇତ୍ୟମରଃ ।
୩—ସାଲଃ ସର୍ଜତରୌ ସ୍ମୃତ ଇତି ଶାଶ୍ୱତଃ ।

ବାଳି ଯାନ୍ତେ ଖଣ୍ଡ ନଖ ବସୁଧା । ବଳ ଅଧେ ରଖିଛି ତହିଁ ବେଧା ।୨୬।
ବହେ ତୁଳପାଶରହେ ସମାନେ । ବଗଗରେ ଗୁରୁଦ୍ରବ୍ୟ ଯେସନେ ।୨୭
ବନ୍ଧ ଭେଦ ନ ପାରନ୍ତି ଇନ୍ଦ୍ରାଦି । ବାଣକରେ ପାରିବ ଯେବେ ଛେଦି ॥
ବିରାଧାରି ବୋଇଲେ କାହିଁ କାହିଁ । ବଳମୂଖ ଶ୍ରେଷ୍ଠ ନେଇ ଦେଖାଇ ।୨୯

(ନାଗବନ୍ଧ)

"ବିଶାଳତା ଧବ ଦୃଢ଼ ସେବନ । ବୃକ୍ଷବୃତ ଶତପଶ ରଞ୍ଜନ ।୫୦।

---

୨୬ଶ ପଦ—ବାଳୀ ଯାନ୍ତେ (ଗମନ କରନ୍ତେ) ବସୁଧା (ପୃଥ୍ୱୀ) ଖର ନଖ (ଖର ବୋଧ କରିବାରୁ) ¹ବେଧା (ବ୍ରହ୍ମା) ତହିଁ (ସେହି ସପ୍ତଶାଳ ବୃକ୍ଷରେ) 'ବାଳି ବଳରୁ' ଅଧେ ବଳ ରଖିଛି, 'କେହି ୨ କହନ୍ତି' ବାଳି ଜାତେ (ଜନ୍ମ ସମୟରେ) । ୨୬ ।

୨୭ଶ ପଦ—ତୁଳପାଶ (ଜଳଘଟ) ଯେସନେ ଗୁରୁଦ୍ରବ୍ୟ ବଗଗରେ (ବଗଗ ହୋଇ) ସମାନେ (ସମଭାବରେ) 'ରହେ' ତେସନ ସପ୍ତଶାଳ ବାଳିର ବଳକୁ ସମାନ ଭାବରେ ବହେ । ୨୭ ।

୨୮ଶ ପଦ—ତାଙ୍କୁ ଇନ୍ଦ୍ରାଦି (ଦେବତାମାନେ) ବନ୍ଧ (ବାଣମାରି) ଭେଦ ନ ପାରନ୍ତି ଯେବେ 'ତୁମ୍ଭେ ତାଙ୍କୁ' ବାଣକରେ (ଏକବାଣରେ) ଛେଦ ପାରିବ 'ତେବେ, ବାଳିକି ମାରି ପାରିବ ଏହିଭାବ' । ୨୮ ।

୨୯ଶ ପଦ—ବିରାଧାରି (ରାମ) ବୋଇଲେ, କାହିଁ କାହିଁ (କେଉଁଠାରେ ସପ୍ତଶାଳ ଅଛି) । ବଳମୁଖ ଶ୍ରେଷ୍ଠ (ସୁଗ୍ରୀବ) ନେଇ 'ତାଙ୍କୁ' ଦେଖାଇ ଦେଲେ । ୨୯ ।

୩୦ଶ ପଦ---ଏଠାରୁ ଷୋଳପଦ ନାଗବନ୍ଧ---ସେ ସପ୍ତଶାଳ ବିଶାଳତା (ଅର୍ଥାତ୍---ଦୀର୍ଘ ପ୍ରକୃତିର ବିସ୍ତୃତି) ଆଉ ଧବ (ବଳ ଠାରୁ) ଦୃଢ଼ (ଗାଢ଼), 'ଏ ଦୁଇ ଗୁଣରେ' ସେବନ (ସେବିତ) । ସେହିପରି ଶାଳବୃକ୍ଷର ଅତି ମୋଟ, ଟାଣ; ଉଚ୍ଚତା ସ୍ଥିତ ହେଲା । ବୃକ୍ଷବୃତ (ସେହି ବୃକ୍ଷର ଆବରଣ ---ସପ୍ତଚ୍ଛଦ) ²ଶତପଶ (ପଦ୍ମପ୍ରାୟ) ରଞ୍ଜନ 'ହୋଇଅଛି' । ୩୦ ।

¹---ସ୍ରଷ୍ଟା ପ୍ରଜାପତିର୍ବେଧା ଇତ୍ୟମରଃ ।

²---ଶତପତ୍ରଂ କୁଶେଶୟମିତ୍ୟମରଃ ।

ନଗେନ୍ଦ୍ର ରନ୍ଧ୍ର ସଶୋଭ୍ର ଧୃତା ସେନ୍ଦ୍ରୀ । ବନ୍ଧ୍ୟ ନାଗ ଗଡଚନ୍ଦ୍ର ଦୀପ୍ତିକା ।୧୩
ବପ୍ର ତାରତର ସାର ନବୀନ ବିଷ ସପ୍ରଭାବରେ ବିହଗହୀନ ।୩୨।

---

୩୧ଶ ପଦ — ସେନ୍ଦ୍ରୀ (ସପ୍ତଶାଳ) ନଗେନ୍ଦ୍ରରେ (ନଗେନ୍ଦ୍ରଗଡରେ) ରନ୍ଧ୍ର ସଶୋଭ୍ର (ଛିଦ୍ର ଶୋଭାକ୍ତ) ଧୃତା (ଧାରଣ କରିଅଛି) ନାଗଗଡରୁ (ଅତିଶୟ ଦୃଢ଼ଦେବାରୁ) ଦୀପ ନନ୍ଦି (ସର୍ପ ନନ୍ଦିନୀପ୍ରାପ୍ୟ) ଦିଶଇ । ୩୧ ।

୩୨ଶ ପଦ — ୧ବପ୍ର (କେଦାରମାନଙ୍କ ଦ୍ୱାରା) ତାରତର (ଅତି ଦେଦୀପ୍ୟମାନ) ସାର (ଶ୍ରେଷ୍ଠ) 'ଆଉ' ନବୀନ (ନୂତନ) 'ହୋଇଅଛି' ୨ବିଷ ସପ୍ରଭାବରେ (ଗରଳ ପ୍ରଭା ଯୋଗୁଁ) ବିହଗହୀନ (ପକ୍ଷିଜନ୍ତୁ ରହିତ) 'ହୋଇଅଛି' । ବୃକ୍ଷମୂଳରେ ନୂତନ ମନ୍ଦା ଥିବାରୁ ବୃକ୍ଷର ମଜ୍ଜା ଉଜ୍ଜ୍ୱଳ ଦିଶୁଅଛି । ନଗର ଗରଳ-ପ୍ରଭାରେ ପକ୍ଷିଜନ୍ତୁ ରହି ପାରୁ ନାହାନ୍ତି ଏପରି କେହି ୨ କହନ୍ତି । ୩ ।

---

୧—ପ୍ରାକାରରୋଧସୋର୍ବପ୍ରଃ ପିଚୁକେଦାରୟୋରପୀତି ଚ ନୂକୋଷଃ

୨—ବିଷଂ ମୃଣାଳେ ଗରଳେ ଇତି ।

ବନରୁହପଦ ପ୍ରଚଳ ବଳ । ବନସ୍ଥିରତ ସର୍ପ ସପ୍ତଶାଳ" ୩୩ ।
ବ୍ୟାଳ ସଲଖି ହୋଇ ରଘୁବୀର । ବାଣ ପ୍ରୟୋଗ କଲେ ସେ ସତ୍ୱର ॥
ବୃକ୍ଷ ସାତ ଭେଦ ପଙ୍କତେ । ବାହୁଡ଼ିଲା ସେ ମାର୍ଗଣ ତ୍ୱରିତେ ।୩୫
ବସ୍ତୁ ତୂଣି ଚନ୍ଦବନ୍ଧେ ସୁଗ୍ରୀବ । ବନ ସେ ଅଦ୍ଭୁତ ଦେଖି ଜବ ।୩୬।

(ଚନ୍ଦବନ୍ଧ)

"ବିଭୁ ଖରପର ମେଳୁ ସାଧବ। ବିଢଶାଳ ମେଘତନୁ ଭ-ରବ ।୩୭।
ବୀର-ଭନୁତ କ ସ୍ୱ ଭୂ ପ୍ରସବା । କାଶପ୍ରଭୁ ସ୍ୱତରେ କାଟି ଧ୍ୱବ ।୩୮।

---

୩୩ଶ ପଦ—ବନରୁହ ପଦ (ରାମଙ୍କ-ପଦ୍ମପାଦ) ୧ପ୍ରଚଳ (ଅଧୋ-ଭାଗର) ବଳ 'ଦ୍ୱାର' ସର୍ପ ସପ୍ତଶାଳ (ନାଗରୂପ ସପ୍ତଶାଳ ବୃକ୍ଷ) ହୋଇ ରତ (ବନସ୍ଥରେ ରତ) ହେଲା (ସଳଖି ହୋଇଗଲା ଏମନ୍ତ ଭାବ) ।ଏଠାରୁ ନାଗବନ୍ଧ ଗନ୍ଥ । ୩୩ ।

୩୪ଶ ପଦ—ବ୍ୟାଳ (ସର୍ପ) ସଲଖି ହେଉଁ (ହୁଅନ୍ତେ) ରଘୁବୀର (ରାମ) ସତ୍ୱର (ଶୀଘ୍ର) ବାଣ ପ୍ରୟୋଗ କଲେ । ୩୪ ।

୩୫ଶ ପଦ—ସାତ ବୃକ୍ଷ ଭେଦ ସେ ମାର୍ଗଣ (ବାଣ) ପଙ୍କତେ (ପଙ୍କତରେ) ଭେଦ ତ୍ୱରିତେ (ଶୀଘ୍ର) ବାହୁଡ଼ିଲା (ଆସି ତୂଣୀରେ ରହିଲା) । ୩୫ ।

୩୬ଶ ପଦ—ସୁଗ୍ରୀବ ସେ ଅଦ୍ଭୁତ 'କର୍ମ' ଦେଖି ବସ୍ତୁ 'ମନେ' କରି ଜବ (ବେଗରେ) ଚନ୍ଦବନ୍ଧେ (ଚନ୍ଦ ବନ୍ଧରେ) ସ୍ତୁତି 'କରି' କହୁଅଛୁ ।୩୬।

୩୭ ଶ ପଦ—ଏଠାରୁ ସ୍ତୁତିପଦ ଚନ୍ଦବନ୍ଧ । ହେ ବିଭୁ (ସର୍ବବ୍ୟାପକ) 'ତୁମ୍ଭେ' ଖରପର (ଖରଶତ୍ରୁ) 'ଅଟ' 'ପୁଣି' ସାଧବାମେଳ (ପତିବ୍ରତା ସୀତା ସଙ୍ଗରେ ତୁମ୍ଭର ମେଳ), ବିଢଶାଳ (ସପ୍ତଶାଳଭେଦୀ) ମେଘତନ (ଶ୍ୟାମଳବର୍ଣ୍ଣ) ଭ-ରବ (ସୂର୍ଯ୍ୟ ପ୍ରଭ) 'ଅଟ' । ୩୭ ।

୩୮ଶ ପଦ—'ତୁମ୍ଭେ' ବୀରଭୁ (ବୀରପ୍ରଭୁରେ) ନୁତ (ବନ୍ଦନୀୟ) ୧କ (ସୂର୍ଯ୍ୟଙ୍କର) ସ୍ୱ (କ୍ଷାତରେ) ଭୂ (ଉତ୍ପତ୍ତି) 'ଯାହାଙ୍କର

---

୧—ତଳଂ ସ୍ୱରୂପାଧରସ୍ୟୋଃ ଖଡ୍ଗମୁଷ୍ଟି ତତ୍ପଟସ୍ୟୋଃ ମେଢ଼ନ୍ନ ।
୧—ମାରୁତେ ବେଧସି ବ୍ରଧ୍ନେ ପୁଂସି କଃ କଂ ଶିରୋଽମ୍ବୁନୋଃ ଶତ୍ୟମରେ ।
୨—ସୁଶଙ୍କ ଆତ୍ମା ଆତ୍ମୀୟ ଜ୍ଞାତି ଧନବାଚକଃ ।



ଚକ୍ରାବଳକରେ ଖେଦ ଭେନ ପବ । ବିପଦଭେଦନ ତାର ପଦବ୍ୟାଁ୩୯/
ବ୍ୟବପର ତାମସ ଦଣ୍ଡ ହବ । ବହନ୍ତ ଦଶରୂପ ରଖ ଭୂବ" ।୨୦।

---

'ଏମନ୍ତ ଯେ ଦଶରଥ ତାହାଙ୍କଠାରୁ' ପ୍ରସବା (ଜନ୍ମ ଯାହାଙ୍କର) । ,'ଏରୂପ ଅଛ", ଅଥବା 'ଭୁମ୍ଭେ' ବାରଭାନୁ (ବାରସୂର୍ଯ୍ୟ) ତ; 'କାହିଁକି ନା ? ଯେଣୁ ତୁମ୍ଭେ' କ (ବ୍ରହ୍ମପଦାର୍ଥ), 'ଏଣୁ' ସ୍ୱ (ନିଜେ) ଭୂ ପ୍ରସବା (ପୃଥ୍ୱୀରେ ଜନ୍ମଗ୍ରହଣ କରିଅଛ) । ବାଣ (ଗରୁଡ଼ର) ପ୍ରଭୁ, 'ତୁମ୍ଭଙ୍କୁ' ସ୍ୱତରେ (ସ୍ୱତଃ ଈଶ୍ୱରବେ) କ (ବ୍ରହ୍ମା) ବଖାଣ (ବିଶେଷ ଭାବନା କରନ୍ତି) ଅଥବା 'ତୁମ୍ଭେ' ବାଣ ପ୍ରଭୁ (ପ୍ରଭୁଙ୍କର ପ୍ରଭୁ) ଅଛ, 'ଏଣୁ' ଜବ (ସ୍ତୁତିକର୍ତ୍ତାମାନେ) ସ୍ୱତରେ ସ୍ତବ (ସ୍ତବନା କରନ୍ତି) ।୩୮।

ବୋଲି ଓଳଗି ହୋଇଲା ବାହାର । ବେନି ସୋଦର ମନ୍ତ୍ରିଏ ସଙ୍ଗର
ବାଟେ ଯାଉଁ ଦେଖିଲେ ଦିବ୍ୟସରେ । ବାଦ୍ୟନାଦ ଶୁଭେ ଜଳଭିତରେ
ବିଚିତ୍ର ତ ବୋଇଲେ ଧରାଚନ୍ଦ୍ର । ବକ୍ତା ଶୁଣି ପ୍ଳବଗକୁଳଚନ୍ଦ୍ର ।୪୩।

୩୯ଶ ପଦ—ବିଗ୍ରହକ ( ବିଶେଷ ଗ୍ରହଣ-କର୍ତ୍ତା ) ଦେବ ଦେବ ( ସନ୍ତାପ ଭେଦକ ବାସ୍ତବରେ ) ସବ ( ଚଳ ) 'ପୁଣି' ବିପଦଦେବଦନ ( ବିପତ ଭଞ୍ଜନ ) ଓ ବିଭାଗ ପଦବୀ ( ଝଙ୍କାରମାର୍ଗ ) ଅଟ, କର୍ମ୍ମା ଭୂମ୍ନଚ ବିପଦଭେଦନ ପଦବୀ ( ଉପାଧି ) ତାର ( ଦେଦୀପ୍ୟମାନ ) ହୋଇଅଛ ।୩୯।

୪୦ଶ ପଦ—ବଦପର ( ବ୍ରହ୍ମା ) ତାପସ ( ତପସ୍ୱିମାନେ ) ଦର ( ଦାନ କରନ୍ତୁ ) । ଦ୍ୱିବ ( ଦ୍ୱିବର୍ଗ ) 'ଯାହାଙ୍କ ଠାରେ ଏରୂପ ଯେ ରୂପ୍' ଦଶରୂପ ( ଦଶଅବତାରେ ) ଦ୍ୱନ୍ଦ୍ୱ ( ବିଧାନକର ) ତ, 'ଏଣୁ ମୋତେ' ଭୂବ ( ପୃଥିବୀରେ ) ରଖ ( ରକ୍ଷାକର ) । ୪୦ ।

୪୧ଶ ପଦ—ଏଠାରୁ ତହନ୍ଦିକ ଗଲେ । ବୋଲି ( ଏମନ୍ତ କହି ) ଓଳଗି ହୋଇ ( ନମସ୍କାର କରି ) ବାହାର ହୋଇଲା, ବେନି ସହୋଦର ( ରାମ ଲକ୍ଷ୍ମଣ ) 'ଓ' ମନ୍ତ୍ରିଏ ( ମନ୍ତ୍ରିମାନେ ) ସଙ୍ଗର ( ସଙ୍ଗତରେ ) ଗଲେ ।

୪୨ଶ ପଦ—ଯାଉଁ ( ସେମାନେ ଯାଆନ୍ତେ ) ବାଟେ ( ବାଟରେ ) ଦିବ୍ୟ ( ସ୍ୱର୍ଗୀୟ ) ସରେ ( ସରୋବର ) ଦେଖିଲେ । ଜଳ ଭିତରେ ବାଦ୍ୟ ନାଦ ଶୁଭେ । ୪୨ ।

୪୩ଶ ପଦ—ରାମଚନ୍ଦ୍ର 'ପୋଖରୀ ଜଳ ଭିତରୁ ବାଦ୍ୟନାଦ ଜାତ ହେବା ଶୁଣି' ବିଚିତ୍ର ( ଏ ଆଶ୍ଚର୍ଯ୍ୟ ) ତ 'ଏମନ୍ତ' ବୋଲନ୍ତେ ପ୍ଳବଗକୁଳ-ଚନ୍ଦ୍ର ( କପିକୁଳଶ୍ରେଷ୍ଠ—ସୁଗ୍ରୀବ ) ଶୁଣି ବକ୍ତା ହେଲେ 'କହିଲେ' । ୪୩ ।

୧—ଦ୍ୱିଶଂ ବିନା ନୈବ ମୃତଂ ଭରନ୍ତୀହ ଖଗବତେ ।
୨—ତପସ୍ୱୀ ତାପସଃ ପାରିକାଂକ୍ଷୀ ବାଚଂଯମୋ ମୁନିଶ୍ଚର୍ଯ୍ୟମରଃ ।

ବନୌକାଏ ନାମ ତା ମନ୍ଦକର୍ଣ୍ଣି । କରନ୍ତେ ତପସ୍ୟା ବସି ବନେ ।୪୪।
ଚଳାକ୍ଷାରେ ଏ ଇନ୍ଦ୍ରପଦ ନେବ । ବାର ବାର ଶକ୍ର ଭୟ ସମ୍ଭବ ॥
ବାସବ ନାରୀବଧୂଙ୍କୁ ପେଷି ଦେଇ । ବାରଙ୍କାର ବୃଦ୍ଧି ସେ ତାଙ୍କୁ ଗୃହିଁ ॥
ବାରି ମଧ୍ୟେ ପୁର ସୁରଶିଳ୍ପୀ ଟେ । ବାରିଷ୍ଠ ଲକ୍ଷ୍ୟକରି କଳ୍ପି ସେ ॥
ବଶ କରି ସେ ନୃତ୍ୟ-ଗୀତେ ମନ । ବାଜେ ମର୍ଦ୍ଦଳ ତାଳ ତାଳୀମାନ ॥
ବୁଝ କ୍ଷତ୍ରିୟବର ବୋଲି ଯାଇ । ବନପର୍ତ୍ତ ଦ୍ୱାରରେ ସ୍ଥିତ ହୋଇ ।
ଦାରଡ଼ାକ ସର୍ଜିଲ ଅଢ଼ଟାଣ । ବର୍ଷା ତହିଁ ଗର୍ଜ୍ଜି କି ମେଘ ଶ୍ରୋଣ ॥

---

୪୪ଶ ପଦ-- ବନୌକାଏ ( ଏକ ଋଷି ) ତା ନାମ ମନ୍ଦକର୍ଣ୍ଣି ସେ ବନ ( ବିପିନରେ ) ବସି ତପସ୍ୟା ( ତପ ) କରନ୍ତେ 'କରୁଥିଲେ' ୪୪।

୪୫ଶ ପଦ—'ତାହା ଦେଖି' ଶକ୍ର ( ଇନ୍ଦ୍ରଙ୍କର ) ମନେ ଜାତ ( ଚଳିତ୍ତଙ୍କ ) 'ମୋହର' ଇନ୍ଦ୍ରପଦ ନେବ, 'ଏମନ୍ତ' ଭୟ ବାରବାର ( ପୁନଃପୁନଃ ) ସମ୍ଭବ ( ଜାତ ) ହେଲା । ୪୫ ।

୪୬ଶ ପଦ—'ଇନ୍ଦ୍ର ମନ୍ଦକର୍ଣ୍ଣି ଋଷିଙ୍କ ତପସ୍ୟା ଭଙ୍ଗ ନିମନ୍ତେ' ବାସବ ( ବାଡ଼କାଣ ) ନାରୀବଧୂଙ୍କୁ ( ବେଶ୍ୟାଙ୍କୁ ) ପେଷି ଦେଇ 'ମୁନି ତପ ଭଙ୍ଗ ବୋଲି କହିଲେ' । ସେ ( ମୁନି ) ତାଙ୍କୁ ( ବେଶ୍ୟାଙ୍କୁ ) ଗୃହିଁ ବାରଙ୍କାର ବୁଦ୍ଧି ( ବୁଦ୍ଧି ବାରଣ—ଅଧୈର୍ଯ୍ୟ ) ହେଲେ କିମ୍ବା ବାରଙ୍କାର ( ବାଳକର ) ବୃଦ୍ଧି ପ୍ରାପ୍ତ ହେଲେ । 'ଜଳ ଏବଂ ବୃଦ୍ଧଙ୍କର ଏକତା ଥିବାରୁ' । ୪୬ ।

୪୭ଶ ପଦ— ବାରି ମଧ୍ୟେ (ଜଳ ମଧ୍ୟରେ) ପୁର ( ପୁରକୁ ) ସୁରଶିଳ୍ପୀ ( ବିଶ୍ୱକର୍ମା ) ବାରିଷ୍ଠ ( ବ୍ରହ୍ମାଙ୍କପୁର ) ଲକ୍ଷ୍ୟ ( ତୁଲ୍ୟ ) କରି କଳ୍ପି ( ନିର୍ମାଣିଲା ) । ୪୭ ।

୪୮ଶ ପଦ—'ସେ ସୁବେଶାମାନେ' ବଶ କରି ( ଋଷିଙ୍କ ବଶ କରିବା ଅର୍ଥେ ) ନୃତ୍ୟ ଗୀତେ ମନ 'ଦେଇ' ମର୍ଦ୍ଦଳ ତାଳ ତାଳୀ (କରତାଳୀ ) ମାନ ( ସବୁ ) ବାଜେ 'ତାହାର ନାଦ ଶୁଭୁଅଛି' । ୪୮ ।

୪୯ଶ ପଦ—ହେ କ୍ଷତ୍ରିୟବର ! ବୁଝ ( ଜାଣ ); ବୋଲି (ଏମନ୍ତ କହି) ଯାଇ ବନପର୍ତ୍ତ ଦ୍ୱାରରେ ( ସିଂହ ଦ୍ୱାରରେ ) ସ୍ଥିତ ହୋଇ ରହିଲା'॥

୫୦ଶ ପଦ—'ସୁଗ୍ରୀବ' ଅଢ଼ଟାଣ ( ଅଢ଼ ଟାଣରେ ) ଦାରଡ଼ାକ ସର୍ଜିଲା

ବଣା ଭଦବକ ହେଲେ ପୁରଜନେ । ବାଳଥିଲ୍ଲ ଯେ ମଧ୍ୟାହ୍ନ ଶୟନେ ॥
ବାରୁଣୀକି ପାନହିଁ କରଥିଲା । ବାରୁଣୀରେ ଶବ୍ଦ ଶୁଣି ଧାଇଁଲା ।୫୨।
ବଜମୁଦେଥ ସୁଗ୍ରୀବ ଦମ୍ଭ-ଶୃଙ୍ଗ । ଭଞ୍ଜନ୍ତେ ବାହୁଡ଼ିଗଲା ବେଗ ।୫୩।
ବଲୋକଲେ ଏଡିକ ଗୃପଧାଗ୍ର । ବିଦ୍ୟୁ ଝଟକ ଲୀନ ହେଲପରି ।୫୪।
ବପଥ ପଦ କୃଷ୍ଣନଦୀ କୁଳଜ । ବଢ଼ିଜଳ ପଡ଼ି ଶୀଘ୍ର ସହଜ ।୫୫।

---

(ପ୍ରକାଶିଲା) 'ସେ ଡ଼ାକ' ବର୍ଷା ବନା (ବୃଷ୍ଟି ବ୍ୟତିରେକରେ) ଦ୍ରୋଣ ମେଘ ଗର୍ଜିଲା କି ? ଏରୂପ ଶୁଭିଲା । ୫୦ ।

୫୧ଶ ପଦ—'ସେ ଡ଼ାକ ଶୁଣି' ପୁରଜନେ (କିଷ୍କିନ୍ଧ୍ୟାର ଲୋକେ) ବଦେନବର୍ଣ୍ଣ (ବିଗତବର୍ଣ୍ଣ) ହେଲେ । ସେକାଳେ ବାଳି ଯେ (କିଷ୍କିନ୍ଧାପତି) ସେ ମଧ୍ୟାହ୍ନ ଶୟନେ (ଶୋଇବାକାଳେ ନଦୀତୀରେ) ଥିଲ (ନିଦ୍ରା ଭଙ୍ଗ ହୋଇ ଥିଲା ) । ୫୧

୫୨ଶ ପଦ—'ସେ ବାଳି' ବାରୁଣୀକି ( ମଦ୍ୟକୁ ) ପାନ କରିଥିଲା ଭୂ (ନିଶେ ) । ୧ବାରୁଣୀରେ ( ପଶ୍ଚିମ ଦିଗରେ ) ଶବ୍ଦ ( କୋଳାହଳ) ଶୁଣି ଧାଇଁଲା । 'ପୂର୍ବ ଦିଗରେ ଡ଼ାକିବାରୁ ପଶ୍ଚିମକୁ ଶବ୍ଦ ବ୍ୟାପିଲା' । ୫୨ ।

୫୩ ପଦ—'ସେ ବାଳି' ବଜ୍ରମୁଦେଥ ( ବଜ୍ର ତୁଲ୍ୟ ମୁଦେଥ ମାରି ) ସୁଗ୍ରୀବ ଦମ୍ଭ ଶୃଙ୍ଗ (ସୁଗ୍ରୀବର ଗର୍ବଶୃଙ୍ଗ ତୁଲ୍ୟ ଧୈର୍ଯ୍ୟ) ଭଞ୍ଜନ୍ତେ (ଭାଙ୍ଗନ୍ତେ) 'ସୁଗ୍ରୀବ' ବେଗ ହୋଇ ବାହୁଡ଼ି ଗଲା । ବାଳିର ବଜ୍ର ମୁଥରେ ସୁଗ୍ରୀବ ହତଧୈର୍ଯ୍ୟ ହୋଇ ପଳାଇଲା, ବାଳି ସ୍ୱପୁରକୁ ଗଲା ଏହି ଫଳିତାର୍ଥ । ୫୩ ।

୫୪ ପଦ—ଗୃପଧାଗ୍ର (ରାମ) ଏହିକି ବଲୋକଲେ ( ଦେଖିଲେ ), ବିଦ୍ୟୁ (ବିଜୁଳୀ) ଝଟକ ଲୀନ ହେଲାପରି ( ବିଜୁଳୀ ଝଟକ ମେଘରେ ଲୀନ ହେଲାପରି) ବାଳି ସୁଗ୍ରୀବ ବ ହୁଡ଼ି ଗଲେ । ୫୪ ।

୫୫-୫୬ଶ ପଦ ବପଦ ( ଅକାଳ ) କୃଷ୍ଣନଦୀ 'ହେଲା', ଭାନୁଜ (ସୁଗ୍ରୀବ) ବଢ଼ିଜଳ 'ହେଲା', 'ସେ' ପଦ ୧ସହଜ ( ସ୍ୱଭାବରେ ) ଶୀଘ୍ର

---

୧—ପ୍ରାତ୍ରପରାହ୍ନମଧ୍ୟାହ୍ନାସ୍ତିସନ୍ଧ୍ୟାମିତ୍ୟମରଃ ।
୨—ବାରୁଣୀ ଗଣ୍ଡଦୂର୍ବାସ୍ୟାଂ ପ୍ରତୀଚୀସୁରୟୋରପୀତି ମେଦିନୀ ।
୧—ସହଜସ୍ତୁ ନିସର୍ଗେ ନା ସହୋଦରେ ପୁନରନ୍ୟବଦିତି ମେଦିନୀ ।

ବିଶ୍ରାମକୁ ନ ପାଇ କେଉଁଠାରେ । ବିଲୀନ ସେ ଗିରି-ଗୁହା-ସାଗରେ
ବାହୁଡ଼ାବିକେ ଦାଶରଥି କହି । ବଳ କଟୁ ନାହିଁତ ମିତ୍ରଦେହୀ ।୫୭।
ବାତାତ୍ମଜ ବାଣୀ କଲା ପ୍ରକାଶ । ବ୍ରହ୍ମପ୍ରଳୟଜଳେ ମେରୁ ନାଶ ।୫୮।
ବୁଲି ଋଷ୍ୟମୂକେ ଖୋଜ ନ ପାଇ । ବିବରକେ ସେ ଠାବ କଲେ ଯାଇ
ବୃଷଦଂଶଭୟେ ଯଥା ଇନ୍ଦୁରୁ । ବାହାରଇ ନାହିଁ ନିଜ ବିବରୁ ।୬୦।

---

'ହୋଇ' କେଉଁଠାରେ ବିଶ୍ରାମକୁ ନ ପାଇ ସେ ଗିରିଗୁହା ( ଋଷ୍ୟମୂକ ପର୍ବତ ଗୁହାରୂପ ) ସାଗରେ (ସମୁଦ୍ରରେ) ବିଲୀନ'ହେଲା', ଏ ଦୁଇପଦ ରୂପକାଲଂକାର ହେଲା । ୫୫-୫୬ ।

୫୭ଶ ପଦ---'ସୁଗ୍ରୀବ ପରାଜୟ ପାଇ ପଳାଇବାର ଦେଖି' ଦାଶରଥି (ରାମ) ବାହୁଡ଼ା ବିକେ 'କଣ' କହି (ଏମନ୍ତ କହିଲେ), ମିତ୍ରଦେହୀ (ମିତ୍ରଙ୍କ ଦେହରେ) ବଳ କଟୁ ନାହିଁ । ବାଳିର ମୁଥ ସହି ନ ପାରି ପଳାଇଲେ, ଏମନ୍ତ ଦୁର୍ବଳ, ଏହି ଭାବ । ୫୭ ।

୫୮ଶ ପଦ --'ଏମନ୍ତ ଶୁଣି' ବାତାତ୍ମଜ (ହନୁମାନ୍) ବାଣୀ (ବଚନ) ପ୍ରକାଶ କଲା; ବ୍ରହ୍ମ ପ୍ରଳୟ ଜଳରେ ମେରୁ ( ମେରୁ ଗିରି ) ନାଶ 'ହୁଏ । 'ଯେପରି ବ୍ରହ୍ମ ପ୍ରଳୟ ଭିନ୍ନ ମେରୁ ଜଗତ୍କ୍ଷୟୀ, ତଦ୍ରୂପ---ବାଳିଭିନ୍ନ ସୁଗ୍ରୀବ ଜଗତ୍କ୍ଷୟୀ 'ଏହି ଭାବ' । ୫୮ ।

୫୯ଶ ପଦ---ଋଷ୍ୟମୂକେ ( ଋଷ୍ୟମୂକ ପର୍ବତରେ ) ବୁଲି ଖୋଜ 'ସୁଗ୍ରୀବଙ୍କୁ' ନ ପାଇ ଯାଇ ସେ (ରାମାଦି) ବିବରକେ ( ଏକ ଗୁହାମଧ୍ୟରେ ) ଠାବ 'କଲେ । ୫୯ ।

୬୦ଶ ପଦ—ଯଥା ୧ ଇନ୍ଦୁରୁ ( ମୂଷା ) ୨ ବୃଷଦଂଶ (ମାର୍ଜାର) ଭୟେ ନିଜ ବିବରୁ ( ଆପଣା ଗର୍ତ୍ତ ମଧ୍ୟରୁ ) ବାହାରଇ ନାହିଁ 'ତଦ୍ରୂପ ସୁଗ୍ରୀବ ବାଳି ଭୟରେ ଲୁଚିଅଛି ବାହାରୁ ନାହିଁ । ୬୦ ।

---

୧— ଇନ୍ଦୁରୁ ମୂଷିକୋଽପ୍ୟା ଖୁଣ୍ଡୁତ୍ୟମରଃ ।
୨— ଓତୁର୍ବିଡ଼ାଲୋ ମାର୍ଜାରେ ବୃଷଦଂଶକ ଆଖୁଭୁଗିତ୍ୟମରଃ

ବୋଧ ନଦେଲା ସେ ଏମନ୍ତ ବୋଲି । ମୁଁ ତୁ ଚମକେ ଅଗରେ ମଲି ॥
ବ୍ୟର୍ଥେ ନ ଅରଜ ପଶୁପାତକ । ଦେଲେ ଗଲି ନ ବୁଝି ଯେଣୁ ବାକ ॥
ବିଷ ଖାଇଛୁ ଜାଣୁ ଜାଣୁ କେହ୍ନ । ବର୍ତ୍ତିଥିଲେ ସମ୍ପତ୍ତି ଭୋଗ ହୋଇ ।୭୩।
ବିରେଷ୍ଟାଙ୍କୁ ଦେଖି ରଘୁନନ୍ଦନ । ଫଳ ଦେଲେ କରଣ ଆଲିଙ୍ଗନ ।୭୪।
ବ୍ୟାଘ୍ର କପିନେ ଯଥା ଛପିଥାଇ । ବାହ୍ୱାରଇ କ୍ଷୁଧାର୍ତ୍ତେ ରଡ଼ି ଦେଇ ।୭୫।
ବେନିଭ୍ରାତା ଏକମୂର୍ତ୍ତି ବହନ୍ତି । ବାରି ନୋହିଲେ ବୋଲି ରଘୁପତି ।୭୬।

୭୨ଶ ପଦ—ବୋଧ ( ରାମ ବୋଧ ଦେଇ ଥାଇ ପୁଣି ବାଳି ମାରିବାକୁ ଯିବା ବୋଲି ଉକ୍ତଙ୍କୁ ) ସେ ( ସୁଗ୍ରୀବ ) ନ ଦେଲା ( ରାମଙ୍କ ବୋଧ ଦେବା କଥା ନ ଶୁଣି ) ଏମନ୍ତ ବୋଲି ( କହିଲା ) 'ସେ ମୁଥଘାତରେ' ମୋ' ତୁ ତୁ ଚମକେ ( ଅଚେତ ); ଆଉ 'ଅଗରେ' ଗଲେ ମଲି ( ମରିବ ) ତୁମ୍ଭେ ନ ବଳାଅ । ୭୧ ।

୭୨ଶ ପଦ—ବାକ ( ବଚନ ) 'ଯେଣୁ' ନ ବୁଝି ( ବୁଝି ନ ପାରିଲି ) ଏଣୁ ଦେଲେ ( ଅଗରେ ) ଗଲି, 'ଏବେ' ବ୍ୟର୍ଥେ ପଶୁପାତକ ନ ଅରଜ 'ତୁମ୍ଭ ଯୋଗୁ ମୁଁ ମଲେ ଅକାରଣେ ତୁମ୍ଭେ ପଶୁହତ୍ୟାପାତକ ଅରଜିବ ଏହି ଭାବ' । ୭୨ ।

୭୩ଶ ପଦ—କେହ୍ନ ( କେଉଁ ) ଜାଣୁ ଜାଣୁ ବିଷ ଖାଇଛୁ କି ? ( ଖାଇ ନାହିଁ) । ବର୍ତ୍ତିଥିଲେ ( ଜୀବନରେ ଥିଲେ ) ସମ୍ପତ୍ତି ଭୋଗ ହୋଇ * । ୭୩ ।

୭୪ଶ ପଦ—ରଘୁନନ୍ଦନ ( ରାମ ) ବିରେଷ୍ଟାଙ୍କୁ ( ମିତ୍ର ବିଶିଷ୍ଟଙ୍କୁ ) ଦେଖି ଆଲିଙ୍ଗନ କରଣ ( କରି ) ଫଳ ଦେଲେ । ଆପଣାର ଶ୍ରୀଅଙ୍ଗରୁ ନେଇ ସୁଗ୍ରୀବଙ୍କୁ ଦେଲେ ଏହି ଭାବ । ୭୪ ।

୭୫ଶ ପଦ—'ବିଶିଷ୍ଟ ତେଜରୁ ସୁଗ୍ରୀବ' ଯଥା ବ୍ୟାଘ୍ର କପିନେ ( ବନରେ ) ଛପି (ଲୁଚି) ଥାଇ କ୍ଷୁଧାର୍ତ୍ତେ ରଡ଼ି ଦେଇ ବାହାରଇ ତଥା ସେ ରଡ଼ି ଦେଇ ଯୁଦ୍ଧାର୍ଥେ ବାହାରିଲା । ୭୫ ।

୭୬।୭୭ଶ ପଦ—ବେନି ଭ୍ରାତା (ବାଳି ସୁଗ୍ରୀବ) ଏକମୂର୍ତ୍ତି (ଏକଆକାର) ବହନ୍ତି, ବାରି ( ଚିହ୍ନି ) ନୋହିଲେ 'ଏମନ୍ତ' ବୋଲି ରଘୁପତି

*—ସର୍ବେଷାଂ ପୁନରାବୃତ୍ତି ନ ଶସ୍ତାରଂ ପୁନଃ ପୁନଃ ।

ବନମଲ୍ଲୀମାଳା କରି ରଚନ । ବିଲମ୍ବାଇ କଣ୍ଠରେ କଲେ ଚନ୍ଦ୍ର ।୬୭।
ବତାସର ପରସ୍ୱେ ଧ୍ୱନିମନ୍ତ । ବେଗେ ଯାଇଁ ନଗରପାଶେ ସ୍ଥିତ ।୬୮।
ବୃକ୍ଷାନ୍ତରେ ରହିଲେ ରଘୁତ୍ରାଣ । ବସାଇଣ କୋଦଣ୍ଡଗୁଣେ ବାଣ ।୬୯।
ବ୍ୟାଧ ଜଗି ଯେମନ୍ତ ଜଳଘାଟ । ବାତାସନ ଆଗମନେ ଲମ୍ପଟ ।୭୦।
ବିସ୍ମୟେ ଯେ କିଷ୍କିନ୍ଧ୍ୟାବାସୀ ଗୃହିଁ । ବୋଲେ ପୀନ ବାସ ହୋଇଲେ କିହିଁ ॥

( ରାମ ) ବଣମଲ୍ଲୀ ମାଳିକା ରଚନରେ ( ବଣମଲ୍ଲୀ ଫୁଲରେ ମାଳ ଗୁନ୍ଥି ) ଚନ୍ଦ୍ର ( ଚନ୍ଦ୍ରା ପଡ଼ିବା ନିମିତ୍ତ ) କଣ୍ଠରେ ( ସୁଗ୍ରୀବ ଗଳାରେ ) ବିଲମ୍ବାଇ କଲେ ( ଲମ୍ବାଇ ଦେଲେ ) । ୬୭।୬୭ ।

୬୮ଶ ପଦ—'ଉଦକନ୍ତେ ସୁଗ୍ରୀବ' ବତାସର ପରସ୍ୱେ ( ପବନ ପ୍ରାୟ ) ଧ୍ୱନିମନ୍ତ ( ଶବ୍ଦକରି ) ବେଗେ ( ବେଗରେ ) ଯାଇଁ ନଗର ପାଶେ ( ନଗରପାଖରେ ) ସ୍ଥିତ ହେଲେ । ବତାସ ଧ୍ୱନିମନ୍ତ ହୋଇଯାଇ ୧ ନଗର (ପର୍ବତର) ପାର୍ଶ୍ୱେ (ପାଖରେ) ରହିଯାଏ, ସୁଗ୍ରୀବ ତଦ୍ରୂପ ଯାଇ ପୁରପାଖରେ ରହିଲେ ଏହି ସରଳାର୍ଥ । ୬୮ ।

୬୯ଶ ପଦ—ରଘୁତ୍ରାଣ ( ରାମ ) କୋଦଣ୍ଡ ଗୁଣେ ( ଧନୁଗୁଣରେ ) ବାଣ ( ଶର ) ବସାଇ ବୃକ୍ଷାନ୍ତରେ ( ଗଛ ଆଢ଼ୁଆଳରେ ) ରହିଲେ । କାହିଁକି ନା ? ବାଳି ଶତ୍ରୁକୁ ଦେଖିଲା ମାତ୍ରେ ତାହାର ଅର୍ଦ୍ଧେ ବଳ ହରି ନିଏ, ରାମ ତ ଅନ୍ତର୍ଯ୍ୟାମୀ ତାହା ଜାଣି ଲୁଚି ରହିଲେ ※ । ୬୯ ।

୭୦ଶ ପଦ—ବ୍ୟାଧ ( ଲୁବ୍ଧକ ) ଯେମନ୍ତ ଜଳଘାଟରେ ଜଗି ବାତାସନ ( ମୃଗର ) ଆଗମନେ ( ଆଗମନରେ ) ଲମ୍ପଟ ( ଲୋଲୁପ ) ହୋଇଥାଏ, ତଦ୍ରୂପ ବାଳି ଆଗମନେ ରାମ ବୃକ୍ଷାନ୍ତରେ ଜଗି ଲୋଲୁପ ହେଲେ ଏହି ଫଳିତାର୍ଥ । ୭୦ ।

୭୧ଶ ପଦ—କିଷ୍କିନ୍ଧ୍ୟାବାସୀ ( କିଷ୍କିନ୍ଧ୍ୟାପୁରବାସୀମାନେ ) 'ସୁଗ୍ରୀବକୁ' ଗୃହିଁ ବିସ୍ମୟ 'ହୋଇଲେ' । କିହିଁ ( ତାହାଙ୍କ ମଧ୍ୟରେ ) କେ ( କେହି ) ବୋଲେ ଯେ ( ସୁଗ୍ରୀବ ) ପୀତବାସ ( ପୀତାମ୍ବର ବ୍ରହ୍ମା ଦେଲା ) ତେଜରେ

୧—ଶୈଳବୃକ୍ଷୌ ନଗାବଗାବଚ୍ୟମରଃ ।

※—ବାଲିନାମା କପିର୍ଦୃଷ୍ଟ୍ୱା ଶତ୍ରୋରର୍ଦ୍ଧବଲଂ ହରେଦ୍‌ଧ୍ରୁ ।

ବୋଲେ କେ ଖଗବନ୍ଧ ପକ୍ଷ ଥିବ । ବିଶେଷରେ ତେଜଚନ୍ଦ ସମ୍ଭବ ।୨୨।
ବୋଲେ ଅପୂର୍ବ ଶିବ ହେବ କେହ୍ନେ । ବିଭୂଷଣେ ଫୁଲ-ମାଳୀ ଯେବଇ ॥

---

ପ୍ରକାଶ ପାଉଛି ) । କେହ୍ନେ କହେ ତାହା ନୁହେଁ ଏ ପିଉଟା ସ ( ପିଉର ସ୍ଥାନ—ପିଉଧିକା) ହୋଇ 'ଏଣୁ ପାଗଳ ହେଇ ମାଡ଼ ଖାଇ ପୁଣି ଆସେ' ❋ ।।

୨୨ଶ ପଦ—କେ (କେହ୍ନ) ବୋଲେ (ପିଉବାସ ପକ୍ଷ ଅବଲମ୍ବନକରି) ୧ ଖଗ ( ଇନ୍ଦ୍ରସ୍ଥ ବ୍ୟାପୀ ହୋଇ ) ୨ ବନ୍ଧ ( ବାତ ) ପକ୍ଷ ( ପିଉର ସପକ୍ଷ ହୋଇ ) ଥିବ । 'ତେଣୁ' ୩ତେଜଚନ୍ଦ (ତେଜ ସମୂହ) ବିଶେଷରେ ସମ୍ଭବ ( ଜାତ ) 'ହୋଇଅଛୁ' । 'କେହ୍ନ ପୀତବାସ ପକ୍ଷ ଅବଲମ୍ବନ କରି କହେ' ୪ଖଗବନ୍ଧ (ଗରୁଡ଼) ପକ୍ଷ ( ସହାୟ ) 'ହୋଇ' ଥିବ 'ଏଣୁ' ବିଶେଷରେ 'ଏହାର' ତେଜ ଚନ୍ଦ (ତେଜସମୂହ) ସମ୍ଭବ (ଜାତ) ହୋଇଅଛୁ । ଅଥବା ୫ଖଗ ବନ୍ଧ ( ଧନୁର୍ଦ୍ଧର ) ପକ୍ଷ ( ସହାୟ ) ଥିବ । ୭

୨୩ଶ ପଦ—କେହ୍ନ ବୋଲେ ଅପୂର୍ବ (ଅକାର ପୂର୍ବ) ଶିବ (ଅଶିବ ଅମଙ୍ଗଳ) ହେବ । 'ତେଣୁ' ଫୁଲ ବିଭୂଷଣେ ( ଫୁଲମାଳ କଣ୍ଠରେ ଲମ୍ବାଇ ) 'କେଣୁ' ମାଳୀ ( ମାଳ୍ୟ ସମୂହକୁ ) ଯେବକ ( ସେବନ୍ତି ) । ବଳଯୋଗ୍ୟ ହେବ ଏତ୍ତୁଭାବ । 'କେହି ବୋଲେ ତାହା ନୁହେଁ ଅପୂର୍ବ ( ଚମତ୍କାର ) ଶିବ ( ମହାଦେବ ) ହେବ କାରଣ ? 'ଏହାଙ୍କୁ ଫୁଲମାଳୀ ( ପୁଷ୍ପମାଳା ) ବିଭୂଷଣେ ( ବିଶେଷ ଭୂଷଣ ରୂପେ ) ସେବଇ । ଶିବ ( ମହାଦେବଙ୍କୁ ) ମାଳ ( ମାଳାଧାରୀ ) ଫୁଲ ( ପୁଷ୍ପ ) ବିଭୂଷଣେ ( ଭୂଷଣ

---

❋—ତଦୁକ୍ତଂ ନୈଷଧୀୟଶ୍ଲୋକେ—

**ନ** ତାଡନେନ ବିନା କମ୍ପୋ **ନ** ପିତ୍ତେନ ବିନା ଭ୍ରମଃ ।

ନ କମ୍ପେନ ବିନା କୁର୍ଦ୍ଦନ ଦଣ୍ଡ୍ରେ ଦଣ୍ଡ୍ରଣା ବିନା । ଇତି ।

୧—ଙ୍କ ପିଉସ୍ଥ ସମାଖ୍ୟାତଂ ସମାକାଶ ଦେବାଜ୍ଞା ସିତ୍ରୋଦକାକ୍ଷରଃ ।

ଙ୍କଂ—ଇନ୍ଦ୍ରସ୍ଥଂ-ଗରୁଡ଼-ବ୍ୟାପ୍ତୋତଦ୍ଧ ଖଗଃ ମସ୍ତୁସୌ ବହ୍ନକ୍ଷେତ୍ର ।

୨—ବନ୍ଧଃ ସ୍ୟାଦ୍ ବୃଷଭସ୍କନ୍ଧେ ବାହ୍ନେ ଗନ୍ଧବହ୍ନେଽପିତେନ୍ଦ୍ର ମେଦିନୀ ।

୩—ତେଜୋ ଧାତ୍ରୌ ପ୍ରଭାବେ ଚ ସ୍ୟାତ୍ତୁ ପଦ୍ମକମରେତତୋଶତ୍ର କୋଷଃ ।

୪—ଖଗେନ-ଗୁରୁଡ଼େନ ବହତି-ଗଚ୍ଛତୀତି ଖଗବନ୍ଧଃ ବିଷ୍ଣୁଃ ।

୫—ଅଜନ୍ମ ଖଗ ଆଶୁଗା ଇତ୍ୟମରଃ ।

ବୋଲେ କେ କର୍ମ ଉଦୟୁହିଁ ଖ୍ୟାତ । ବିଧୀନରନ୍ଦଂସତୋଷଦାନେ ସ୍ତ୍ରିତ

ଅର୍ଥେ) ସେଂଟଇ (ସେବାରେ), 'ଏଣୁ' ଅନ୍ତେ ଣିବ (ଅନୁତ୍ତମ ମଙ୍ଗଳ) ହେବ । ୭୩ ।

ଦ୍ୱିତୀୟ ପକ୍ଷ- ରେ (କେହ) ବୋଲେ କର୍ମ ଉଦୟ (ଭାଗ୍ୟୋଦୟରେ) ଛନ୍ତି 'କଣଅଛି' ନ । ବିଧୀରେ (ଅଧୀରେ) ଦ୍ୱଂସ (କାତର) ତୋଷ (ସନ୍ତୋଷ) ଦାନେ (ଖଣ୍ଡନେ) 'ବନ୍ଧୁମାନେ' ସ୍ତ୍ରିତ (ହିତ) 'ହୋଇଅଛନ୍ତି' । ସୁଗ୍ରୀବଙ୍କ ଉକ୍ତି କରୁଅଛନ୍ତି ଏହା ପ୍ରାପ୍ତି ଲାଭ ଏହିଭାବ । ପକ୍ଷେ । କେ (କେହି) ବୋଲେ କରେ (ଆରେ) ବିଧି (ବ୍ରହ୍ମା କର୍ମ (ଯାଗାଦି କର୍ମ) ଉଦୟ (ଜନଦାକ) ଛନ୍ତି 'କରନ୍ତି' । ହଂସ (ମରାଳର) ତୋଷ ଦାନେ (ହର୍ଷ ପ୍ରଦାନ ବିଷୟରେ) ସ୍ତ୍ରିତ (ଉତ୍ତମ) ଅଟନ୍ତି; ସାହିତ୍ୟ ନାହିଁ? ବାଲ୍ମୀକିରାମାୟଣରୁ ଏ ସୁଗ୍ରୀବ ସେହିମତ କର୍ମ ଉଦୟ (ଭାଗ୍ୟର ଉଦୟଙ୍କୁ) ଛନ୍ତି 'କଣଅଛି' ତ (କଷ୍ଟେ) । ଦଂସ (ସୂର୍ଯ୍ୟଙ୍କ) ତୋଷ ଦାନେ (ହର୍ଷ ଦେବା ବିଷୟରେ) ଏହ ଅଟେ ତ 'ଏହା' ସ୍ତ୍ରିତ (ଯଥାର୍ଥ) । ପୂର୍ବଭାବ ଥିବାରୁ ଏହିଭାବ । କିମ୍ବା ହଂସ (ରାମ ହଂସଙ୍କ) ତୋଷ ଦାନେ (ସନ୍ତୋଷ ଦେବା ବିଷୟରେ) ସ୍ତ୍ରିତ (ଆଦେଶ) 'ପ୍ରତନ୍ତି ଥିବାରୁ' ବିଧିରେ (ଦୈବ ବଳରୁ) 'ଏହାର' କର୍ମଉଦୟ (ଭାଗ୍ୟ ସଞ୍ଚାର) ଖ୍ୟାତ ହେବ କି (କଷ୍ଟରୁ) । ଧର୍ମରେ ଥିବାରୁ ଏହିଭାବ ।

ଏମନ୍ତ କେ ବୋଲେ । ଏହି ଗୀତ ପଠନରେ କେହି 'ଉଦୟୁହିଁ ଖ୍ୟାତ' ଓ ତୋଷଦାନେ 'ସ୍ତ୍ରିତ' ପଢ଼ନ୍ତି; କେହି ତା 'ଅଛି ତ' ଓ 'ସ୍ତିତ' ପଢ଼ନ୍ତି ଏଣୁ ଭିନ୍ନ ପ୍ରକାର ଅର୍ଥ ହେଲା । ୭୪ । ୦ ।

---

୧—ଜାତେ ବଞ୍ଚି ବିଧୌ ଧର୍ମେ ଯଶସ୍ୱୀନ ଭୂତଙ୍ଗମ ।
ଶିରେ ପକ୍ଷିନିଷେଧେ ନ ହଂସଶତ୍ରୌ ନରୋପି ଚ ନତି ଧନମତ୍ତଶ୍ଚ ॥

୨—ତାରଂ ଗଳମଧ୍ୟେ ନ୍ୟାସେ ପାଳନ ଚେଷ୍ଟିତ ଶୁକ୍ଳିଷ୍ଣ ଇତି ମେଦିନୀ ।

୩—ସମ୍ବୋଧନସୂଚକ ଅବ୍ୟୟ ।

୪—ବିଧାତା ବିଧିସୃଷ୍ଟ ବ୍ରହ୍ମା ଶତ୍ୟମରଃ ।

୫—ପୁତ୍ରାପ୍ତ୍ୟୁଦ୍ଦୟାବଚ୍ଛି ମୋ ତନମଣେଃ ସୁଖା କୁଟଚ୍ଛେ ।
କ୍ଷୁତ୍‌ମୂକଟ୍ଟୁ ବାଣୀବଦ୍ ବ୍ୟଥୟୁତେ ଭୃଷାସ୍ୱନଳଃ । ଇତ

ବୋଲେ କେହ୍ନ ବନୌକାସାର ଏହ୍ନା । ବାଞ୍ଛା ଭସ୍ମ ଚଡାରେ କ କରଇ
ବିକର୍ତ୍ତିନନ୍ଦନ ଏହ୍ନ ନମନସ୍ତ । ବାଳ ଆସ ରେ ବୋଲି ଡାକ ଦଏ ।୭୬
ବୋଲନ୍ତି ତୁ ମହାଶ ଏ ଭୁବନ । ବିଷ ଭେଦ ଷକାର ଏବେ ଘେନ ॥
ବିଦାରଣ ଉଦ୍ଧବ ଚରମରେ   ଘାରଶାର୍ଦ୍ଦୂଲମୁଖ-ପତନରେ ।୭୮।

୭୫ଶ ପଦ—କେହ୍ନ ବୋଲେ ଏହ୍ନ ( ସୁଗ୍ରୀବ ) ୧ ବନୌକାସାର ( ବାନର ଶ୍ରେଷ୍ଠ ) ଚଡାରେ (ସ୍କନ୍ଧ ନାଗ୍ନିରେ) ଭସ୍ମ 'ଦେବାକୁ' ବାଞ୍ଛା (କାମନା) କରଇ କି ? (ଏମନ୍ତ ବିନକୁ ଥାଇଁ) । ପକ୍ଷେ ।—ବନୌକାସାର (ଋଷିଶ୍ରେଷ୍ଠ) ଭସ୍ମ ଚଡାରେ (ପାଂଶୁଦ୍ଧନଳକରେ) ବାଞ୍ଛା କରନ୍ତି *ତଦ୍ରୂପ ଏ କରୁଛି କି ? ଏମନ୍ତ କେହ୍ନ ବୋଲେ । ୭୫ ।

୭୬ଶ ପଦ—ଏହ୍ନ ସମସ୍ତେ ( କେକେ ଏମନ୍ତ ବିଘ୍ନ ଶଙ୍କା ସମୟରେ ) ବିକର୍ତ୍ତିନ ସୁତ (ସୁଗ୍ରୀବ) ରେ ବାଳି ଆସ ବୋଲି ଡାକଦିଏ । 'ରେ ଏହ୍ନ କୁତ୍ସିତ ସମ୍ମେ ଧନ କଣ ଶୀଘ୍ର ବୁଦ୍ଧିରେ ଡାକିଲା' । ୭୬ ।

୭୭ଶ ପଦ—ତୁ ଏ ଭୁବନ ( ଏ ପୃଥ୍ୱୀରେ) ମହାଶ (ବ୍ରହ୍ମା) ବୋଲନ୍ତି 'ଅଛୁ' ଏବେ ବିଷ ଭେଦ ଷକାର 'ନଷ୍ଟ' ଘେନ (ତ ଲବ୍ୟ ଶକାରକୁ ମୂର୍ଦ୍ଧନ୍ୟଷକାର କଣ ଘେନ) ତୁ ୧ମହାଷ (ମହିଷି) ହେଲୁ ଏ ଭାବ ॥

୭୮ଶ ପଦ—ଘାର ୧ ଶାର୍ଦ୍ଦୂଳ ମୁଖ ପତନରେ ( ମହାକାଳ ବ୍ୟାଘ୍ର ମୁଖରେ 'ମହିଷ' ପଡ଼ିଲେ) ଚରମରେ (ପିଠିରେ) ବିଦାରଣ ( ବିଶେଷରେ କ୍ଷତ ) 'ହେଲା ପରି' ୨ଘାରଶାର୍ଦ୍ଦୂଳ ( ଘାଷ୍ଟ୍ରିଶ୍ରେଷ୍ଠ ମୁଁ ) ମୋ ମୁଖରେ ତୁ ପଡ଼ିଲେ ତୋ ଚରମରେ (ଚର୍ମରେ) ବିଦାରଣ (ବିଦାରଣ) ଉଦ୍ଧବ । ବ୍ୟାଘ୍ର ଆଗରୁ ଧଣ ନ ପାରଇ ଏମନ୍ତ ଭାବ । ୭୮ ।

୧—ମର୍କଟୋ ବାନରଃ କୀଶୋ ବନୌକା ଇତ୍ୟମରଃ ।
*—ତଦଦଂ ବିସନ୍ଧ୍ୟାତେ କଥଂ ବଦବାମୋରୁ ଚତାଧ୍ବରେ ଦେ । ଇତି ରଘୁବଂଶେ ।

୧—ଲୁଲାପୋ ମହିଷୋ ବାହ ଦ୍ୱିଷଦିତ୍ୟମରଃ ।
୧—ଶାର୍ଦ୍ଦୂଳ ଦ୍ୱିପିନୌ ବ୍ୟାଘ୍ର ଇତ୍ୟମରଃ ।
୨—ସ୍ୟୁରୁତ୍ତରପଦେ ବ୍ୟାଘ୍ରୀ । ସିଂହଶାର୍ଦ୍ଦୂଳନାଗାଦ୍ୟାଃ ପୁଂସି ଶ୍ରେଷ୍ଠାର୍ଥବାଚକାଃ । ଇତ୍ୟମରଃ ।

ବର୍ଣ୍ଣ ଅଧିକ ମହୀଶ ପଦରେ । ବଢ଼ାଇବା ଯେ ମହୀଶଯୂନରେ ।୭୯।
ବର୍ଷାମୁଖେ ଶୁଣି ଯଥା ସ୍ତନିତ । ବନ୍ଧୁ ଗରବ ସରଭ ଭ୍ରମନ୍ତ ।୮୦।
ବଢ଼ାଇଲେ କେ ମୋ ଆଗେ ଗର୍ଜଇ । ବଦାରଣେ ନ ଜାଣି ମୂର୍ଖେ ଡେଇଁ ।
ବାଳିଶ ତ ତଥା କୋପେ ଗର୍ଜିତ । ବାଳୀ ଶତପ୍ରକାରେ ନିଷେଧିତ ।୮୨।

---

୭୯ଶ ପଦ—ମହୀଶ ପଦରେ (ରାଜପଦରେ) ବର୍ଣ୍ଣ ଅଧିକ 'ଯର' ମହୀଶଯୂନରେ (ଭୂମିଶଯ୍ୟାରେ) ବଢ଼ାଇବା (କରାଇବା) । ରାମ ଶବର ଗୁମ୍ଫାରେ ଫଟି ପିଠିରେ କଙ୍କଡ଼ ଭୂମିରେ ଶୋଇଲେ ପଢ଼ାଇବ ଏହିଭାବ 'ମହୀଶ' ଏହି ପଦରେ ଅଧିକ 'ଯୂନ' ଏହି ଦୁଇବର୍ଣ୍ଣ ଯୋଗ ହେଲା । ମହୀଶ ତିନି ଅକ୍ଷର ଥିଲା ମହୀଶଯୂନ ପାଞ୍ଚ ଅକ୍ଷର ହେଲା । ୭୯ ।

୮୦ଶ ପଦ—ବର୍ଷା ମୁଖେ (ବର୍ଷାରମ୍ଭରେ) ସ୍ତନିତ (ମେଘ ଗର୍ଜନ) ଶୁଣି ସରଭ (ଅଷ୍ଟାପଦ ମୃଗ) ଯଥା (ପ୍ରାୟ) 'ସୁଗ୍ରୀବ କଥା ଶୁଣି ବାଳି' ଗରବ (ଗର୍ବ) ବନ୍ଧୁ ଭ୍ରମନ୍ତ (ଅସାବଧାନ ବା ଉନ୍ମତ୍ତ) ହେଲା ॥ ।୮୦।

୮୧—୮୨ଶ ପଦ—ମୋ ଆଗରେ କେ (କିଏ) ବଢ଼ାଇଲେ (ବଢ଼ାଇକରି) ଗର୍ଜଇ (ଗର୍ଜୁଅଛି) । 'ଏମନ୍ତ ବଚନ' ସରଭ ବଦାରଣେ (ତାକୁ ବିଦାରିବା ଅର୍ଥେ ) ମୂର୍ଖ ନ ଜାଣି (ଆପଣାର ମରଣ ହେବ ଜାଣି ନପାରି) 'ପର୍ବତରୁ ତଳକୁ' ଡେଇଁ 'ତଳେ ମଲା' ତଥା ବାଳି (କିଷ୍କିନ୍ଧ୍ୟା ରାଜା) ବାଳିଶ ତ (ମୂର୍ଖ ତ) ଆପଣାର ମୃତ୍ୟୁ ନ ବିଚାରି ବାଳୀ (ବାଳିଭାର୍ଯ୍ୟା) ତାରାଦ୍ୱାରା ଶତପ୍ରକାରେ (ବହୁବାର) ନିଷେଧିତ (ନିବାରିତ) 'ହୋଇ ମଧ୍ୟ' କୋପ (କ୍ରୋଧରେ) ଗର୍ଜିତ 'ହେଲା' (ଭାଇ ସହିତ ଯୁଦ୍ଧରେ) ମରିବାକୁ ଧାଇଁଲା) । 'ଏଥର ଯୁଦ୍ଧରେ ତୁମ୍ଭର ଯଶ ନାହିଁ ବୋଲି ତାରା ଯେତେ ପ୍ରକାରେ କହିଲା ବାଳି ନ ମାନି ଯୁଦ୍ଧ କରିବାକୁ ଗଲା ଏହି ତାତ୍ପର୍ଯ୍ୟାର୍ଥ' । ※ ।୮୧।୮୨।

---

※—ସରଭ ଶରଭ ଲଂଘୟେୟୁର୍ଭବନ୍ତଂ ଇତି ମେଘଦୂତେ ॥

୧—ବାଳଶସ୍ତୁ ଶିଶୌ ମୂର୍ଖେ ଇତି ।

※—ପାପକର୍ମଣୋର୍ଦ୍ଧଂ ତ ସୁହୃଦ୍‌ବାକ୍ୟମବୁଦ୍ଧୟଃ ।
ନ ବଦନ୍ତି ନ ଶୃଣ୍ୱନ୍ତି ନ ପଶ୍ୟନ୍ତି ଗତାୟୁଷଃ ॥

ବାଳିଶ ତ ନୁହ ଘେନ ସୁଚତ୍ତ । ବାଳିବରାଟ ଯୁଚେ ସଦା ଜିତ ॥୮୩॥
ବାଦେ ସହାୟୂ ସେ କାର ପାଇଛୁ । ବାସରକେ ବେଲ୍ପଥର ଧାଇଁଛୁ
ବଡ଼ଥିବ ପରୀକ୍ଷା କରି ସେହୁ । ବଡ଼ଶବ୍ଦ ଶୁଭିଲା ଆଜ କାହିଁ ॥୮୪॥
ବ୍ୟୋମେ ଦୁନ୍ଦୁଭିଅସ୍ଥି ଉଡ଼ାଇଲା । ବନ୍ଧ ଅବା ସପ୍ତଶାଳ ଥୋଇଲା
ବଦନ ମୋ ଚନ୍ଦ୍ରର ତାଟଙ୍କ ବୃହସ୍ପତି ଶୁକ୍ର ପରି ଝଟକ ॥୮୬॥
ବଧଥାଉଁ ସେ ତାହ୍ନୁ ଜ୍ୟୋତ୍ସ୍ନ ଅସ୍ତ । ବାସ ପ୍ରସାର ମାଗୁଅଛୁ କାନ୍ତ ॥୮୮

୮୩ଶ ପଦ—ପୁଣି ତାରା କହିଲା' ଆପଣ ବାଳିଶ (ପିଲା) ତ ନୁହ 'ମୋ କହିବା କଥା' ସୁଚତ୍ତ ( ସୁମନରେ ବଗ୍ଧର ) ଘେନ । ବାଳି ବରାଟ (ବାଳି କଉଡ଼ି—ଶ୍ରେଷ୍ଠ ଗଣ୍ଡି କଉଡ଼ି) ଯୁଚେ (ଦ୍ୟୁତକ୍ରୀଡ଼ାରେ—ଖେଳରେ) ସଦା (ସବୁବେଳେ) ଜିତ (ଜୟ ହୁଅନ୍ତି) 'ଭଲ ଭାବରେ' । ତୁମ୍ଭେ ଯୁଦ୍ଧରେ ହାରିବ ଏମନ୍ତ ଏମନ୍ତ ଭାବ । ୮୩ ।

୮୪ଶ ପଦ—'ପୁଣି କହିଲା' ସେ (ସୁଗ୍ରୀବ) ବାଦେ (ତୁମ୍ଭ ସଙ୍ଗେ ବିବାଦ କରିବାପାଇଁ ) କାର ( କାହାର ) ସହାୟ ପାଇଛି; 'ନୋହିଲେ କାହିଁକି' ବାସରକେ (ଏକାଦିନକରେ) ବେଲ୍ପଥର (ଦୁଇଥର) ଧାଇଁଛି । ଏଥିରୁ ବୁଝିହାରୁ ନାହିଁ ଏହିଭାବ ।୮୪ ।

୮୫ଶ ପଦ—ସେ ( ସୁଗ୍ରୀବ ) କି (ଜାଣେ) ପରୀକ୍ଷା କରି ( ସହାୟ କାହାର ବଳ ପରଖି ) ବଡ଼ ଥିବ 'ମୁଁ ଏମନ୍ତ ଅନୁମାନ କରୁଅଛି' । 'ନୋହିଲେ' କାହିଁ (କେଉଁଠାରେ) ଆଜ ବଡ଼ ଶବ୍ଦ ଶୁଭିଲା । ୮୫ ।

୮୬ଶ ପଦ—ବ୍ୟୋମେ (ଆକାଶରେ) ଦୁନ୍ଦୁଭି ( ଦୈତ୍ୟର ) ଅସ୍ଥି (ହାଡ଼କୁ) ଉଡ଼ାଇଲା; ଅବା ସପ୍ତଶାଳ ବନ୍ଧ ଥୋଇଲା 'ଏହା ସତ୍ୟ ପରି ବୋଧହୁଏ ଏଡ଼େ ବଡ଼ ଶବ୍ଦ ଶୁଭିବାରୁ' । ୮୬ ।

୮୭ଶ ପଦ—ମୋ ବଦନ ଚନ୍ଦ୍ରପର; ତାଟଙ୍କ ( କର୍ଣ୍ଣଭୂଷଣ ଦୁଇ ) ବୃହସ୍ପତି (ତାରା) ଶୁକ୍ର (ତାରା) ପରି ଝଟକ (ଝଟକୁଛି) 'ଚନ୍ଦ୍ରର ଦୁଇ ପାଖରେ ଦୁଇ ତାରା ଝଟକିଲା ପ୍ରାୟ ମୋ ମୁଖ ଚନ୍ଦ୍ରର ଦୁଇପାଖରେ ତାଟଙ୍କ ଝଟକୁଛି ଏହି ତାତ୍ପର୍ଯ୍ୟାର୍ଥ । ୮୭ ।

୮୮ଶ ପଦ—ହେ କାନ୍ତ ! ବାସ (ବସନ) ପ୍ରସାର ମାଗୁଅଛୁ, ବଧ

ବଲ୍ଲଭୀର ବଚନ ନ ଘେନିଲ । ବାୟୁବେଗେ ଦୁର୍ଗଦ୍ୱାରେ ମିଳିଲ ।୮୯
ବର୍ହବର ଦ୍ୱୀପୀ ଭେଟାଭେଟି । ବରାହବ ରଚଣ ଯଥା ରଚି ।୯୦।
ବବାଧ କ ସଉଖ କୁଜ ଦୁଇ । ବଶ୍ୱମ୍ଭରା ଭାରବଶେ କମ୍ପଇ ।୯୧।
ବ୍ୟାଳ ଯୁଗ୍ମ କ ଖେଳ ଗଡ଼ାଗଡ଼ି । ବୃକ୍ଷ ପାଷାଣ ତନୁ ଲଗି ଛୁଡ଼ି।୯୨
ବାଳି ସୁଗ୍ରୀବ ଉପରେ ଢଶିଲ । ବାଜ ଶୁକକୁ କ ମାଡ଼ି ବସିଲ ।୯୩

---

( ମୋ ମୁଖଚନ୍ଦ୍ର ) ଥାଉଁ ସେ ତାଙ୍କ (ତାଙ୍କଙ୍କ) ଅସ୍ତ ହୋଇ 'ମୋହର ବିଧବା ଅବସ୍ଥା ହୋଇ ଏହି ଭାବ' । ୮୮ ।

୮୯ଶ ପଦ—ବଲ୍ଲଭୀର ( ପ୍ରିୟାର ) ବଚନ ନ ଘେନିଲା କାହିଁକି ? 'ଗତାୟୁ ହେବାରୁ' * । ବାୟୁ ବେଗେ (ବାୟୁପ୍ରାୟ ବେଗରେ ଯାଇ) ଦୁର୍ଗଦ୍ୱାରେ (ଗଡ଼ଦ୍ୱାରେ) ମିଳିଲା ।୮୯।

୯୦ଶ ପଦ ବର୍ହ ବର ( ବରାହଶ୍ରେଷ୍ଠ ) ଓ ଦ୍ୱୀପୀ ଭେଟାଭେଟି 'ହୋଇ' ବରାହବ (ମଦାଯୁକ୍ତ) ରଚଣ (କଣ) ଯଥା ରଚି (ଯେରୂପ ରଚନ୍ତି ଅନ୍ତ) ତଦ୍ରୂପ ବାଲୀ ସୁଗ୍ରୀବ ବାହୁଯୁଦ୍ଧ କଣ ରଚିଲେ ଏହି ଭାବ ।୯୦।

୯୧ଶ ପଦ—ସଉଖ (ଶଦ) କୁଜ (ମଙ୍ଗଳ) ବବାଧ 'ହେଲେ' କି ? 'ସେ ଦୁହଙ୍କ' ଭାରବଶେ ବଶ୍ୱମ୍ଭରା (ପୃଥିବୀ) କମ୍ପଇ । ୯୧ ।

୯୨ଶ ପଦ - ବ୍ୟାଳ ଯୁଗ୍ମ (ସର୍ପଦୁଇ) ଗଡ଼ାଗଡ଼ି 'ହୋଇ' ଖେଳ (ଖେଳୁଅଛନ୍ତି) କି ? ତନୁ ( ସେ ଦୁହିଙ୍କ ଦେହ ) ଲାଗି ବୃକ୍ଷ ପାଷାଣ ଛୁଡ଼ି 'ଯାଉଅଛି' 'ଏମନ୍ତ ଗାଢ଼ଣରେ ଏହି ଭାବ' । ୯୨ ।

୯୩ଶ ପଦ—ଏମନ୍ତ ଯୁଦ୍ଧ କରନ୍ତେ ବାଳୀ ସୁଗ୍ରୀବ ଉପରେ ଢଶିଲା । ବାଜ (ପକ୍ଷୀ) ଶୁକକୁ (ଶୁଆକୁ) ମାଡ଼ିବସିଲ କି ? 'ଯେପରି ବାଜପକ୍ଷୀ ଶୁକପକ୍ଷୀକି ଧରି ଚଞ୍ଚୁ ଉପ୍ରରେ ଅନ୍ତର ହୋଇ ମାଡ଼ିବସି ଥାଏ; ତଦ୍ରୂପ ବଳ୍ପୁ ତେଜ ଉପ୍ରରେ ସୁଗ୍ରୀବକୁ ତଳେ ପକାଇ ଅନ୍ତର ହୋଇ ବାଳୀ ମାଡ଼ିବସିଲ ଏହି ଭାବ । ୯୩ ।

---

*—ପରେତଗଲାହ ଗତାୟୁମୋନରଃ ।
ବଚୋନ ଶୃଣ୍ୱନ୍ତି ସୁହୃଦ୍ଭିଷିତମ୍ ରାମାୟଣେ ॥

ବାଣ ପ୍ରହାରେ ଦେଖି ଦୂଷଣାରି । ବୁକୁ ଫୁଟି ପୃଷ୍ଠେ ମୁନ ବାହାରି ॥
ବିବୁଧାଦ୍ରିରେ ଯେସନେକ ହୋଇ । ବାରଣେନ୍ଦ୍ର ଦଶନ ଭେଦ ରହି ॥
ବୋଲି ଅଙ୍ଗଦ ତ ସେହି ଢଳିଲା । ବିନା କାରଣେ ଅଙ୍ଗ ଦଣ୍ଡ ହେଲା ॥
ବିଘ୍ନରାଜ ମୂଷିକ କରି ଯମ । ବନ୍ଧନରେ ପାଶରେ ଯଥା କ୍ଷମ । ୯୭ ।
ବାହୁଟେକ ହସ୍ତରେ ପେଲି ଦେଇ । ବରୋଚନନ୍ଦନ ଉଭା ହୋଇ ॥
ବାହାରିଲେ ଲକ୍ଷ୍ମଣ ରାମବେନି । ବୃକ୍ଷଅନ୍ତରୁ ଯେ ସଙ୍ଗୀସେନାନୀ ।୯୯।

---

୯୪ଶ ପଦ—ଦୂଷଣାରି ( ରାମ ) 'ବାଳିକି ସୁଗ୍ରୀବ ଉପରେ' ଦେଖି ବାଣ ପ୍ରହାରେ ( ପ୍ରହରିଲେ ) । 'ବାଳିର' ବୁକୁ ଫୁଟି 'ବାଣ' ମୁନ ପୃଷ୍ଠେ (ପିଠିଆଡ଼େ) ବାହାରିଲା । ୯୪ ।

୯୫ଶ ପଦ—ବିବୁଧାଦ୍ରିରେ ( ମେରୁ ପର୍ବତରେ ) ବାରଣେନ୍ଦ୍ର ଦଶନ ( ଐରାବତ ଦନ୍ତ ) ଯେସନେକ ( ଯେରୂପ ) ଭେଦ ରହିଥାଏ 'ସେପରି ଦିଶିଲା ଏହିଭଳି' । ୯୫ ।

୯୬ଶ ପଦ—ସେହି ( ବାଳି ) ଅଙ୍ଗଦ ତ ବୋଲି (ହେ ଅଙ୍ଗଦକହି) ଢଳିଲା ( ସୁଗ୍ରୀବ ଉପରେ ଢଳି ପଡ଼ିଲା ) । ବିନା କାରଣେ (ବ୍ୟର୍ଥରେ) ଅଙ୍ଗ 'ମୋର' ଦଣ୍ଡ ( ଶାସିତ ) ହେଲା । 'ଏମନ୍ତ ପୁଅକୁ ଡାକି କହିଲା ଏହି ଭାବ' । ୯୬ ।

୯୭ଶ ପଦ—ବିଘ୍ନରାଜ ( ଗଣେଶ ) ଯମ (ଯମଦେବତାଙ୍କୁ) ମୂଷିକ (ମୂଷା) କରି ପାଶରେ ( ରଜ୍ଜୁରେ ) ବନ୍ଧନରେ ( ବାନ୍ଧିବାରେ ) ଯଥା (ଯେରୂପ) କ୍ଷମ (ସମର୍ଥ) ହେଲେ ମୁଁ 'ତେମନ୍ତ ହେଲି' । ୯୭ ।

୯୮ଶ ପଦ—ବରେଚଜ ନନ୍ଦନ ( ସୁଗ୍ରୀବ ) ବାହୁ ଟେକ ହସ୍ତରେ ପେଲିଦେଇ ଉଭା ହୋଇ 'ରହିଲା' । ୯୮ ।

୯୯ଶ ପଦ—ସୁଗ୍ରୀବ ଉଭା ହେବାର ଦେଖି, [1]ସେନାନୀ ( ହନୁମାନ ପ୍ରଭୃତି ସେନାପତିମାନେ ) ସଙ୍ଗୀ ( ସଙ୍ଗହୋଇ ) ରାମ ଲକ୍ଷ୍ମଣ ବେନି ବୃକ୍ଷଅନ୍ତରୁ (ଉହାଡ଼ୁ) ବାହାରିଲେ । ୯୯ ।

---

୧—ସେନାନୀର୍ବାହିନୀପତି ରିତ୍ୟମରଃ ।

ବ୍ୟାଘ୍ର ବନ୍ଧ ପକାଇ କଟିଦୂରେ । ବେଢ଼ି ଦେଖନ୍ତି ଯାଇ ଯଥା ନରେ ॥
ବାନରେଶ ପାଶେ ଥିଲେ ଦେଖିଲେ । ବପୁବନ୍ତ ଦର୍ପକ ପୋଷିଲେ ॥
ବପୁରେ ଦର୍ପକ ଏ ଅପୂର୍ବ । ନିଜବାନ ଶୁଭର ଯେ ଜଗତେ ॥ ୧୦୨ ॥
ବସୁଧର ଚୂଡ଼ାମଣି ମର୍କତ । ବିରାଜିବା ଜ୍ୟୋତି ଏବେ ବ୍ୟକତ ॥ ୧୦୩ ॥
ବୋଲୁଁ କେ ତୁମ୍ଭେ ହୋଇଲେ ଶ୍ରୀରାମ । ବଂଶେ ରଘୁନୃପଙ୍କର ଜନମ ।

---

୧୦୦ଶ ପଦ—ନରେ ( ମନୁଷ୍ୟମାନେ ) ଯଥା ( ଯେରୂପ ) ବ୍ୟାଘ୍ରକୁ ବନ୍ଧପକାଇ ଖାଲ କଟିଦୂରେ 'ରହି' ବେଢ଼ି ଦେଖନ୍ତି ତଦ୍ରୂପ 'ରାମାଦମାନେ ବାନର ବନ୍ଧପକାଇ କଟିଦୂରେ ରହି ବେଢ଼ି ଦେଖିଲେ' । ୧୦୦ ।

୧୦୧ଶ ପଦ—ବାନରେଶ (ବାଳି) ପାଶେ ( ନିକଟରେ ) ଥିଲେ 'ରାମଙ୍କୁ' ଦେଖିଲେ 'ଦେଖି' ( ବପୁବନ୍ତ ) ( ମୂର୍ତ୍ତିମନ୍ତ ) ୧ ଦର୍ପ (ଦର୍ପ) କ ଏ ୨ 'ଦର୍ପମନ୍ତ' ପୋଷିଲେ (ତୁଳନା କର) । ୧୦୧ ।

୧୦୨ଶ ପଦ—'ପୂର୍ଣ୍ଣ' ବପୁରେ ଅପୂର୍ବ ( ଅଗଣ୍ୟଗରେ ) ୧ ଦର୍ପକ (କନ୍ଦର୍ପ) ଏ ୩ ଏ ଜଗତରେ ବଳ ... ( ବଳିଷ୍ଠ ) ଶୁଭର, 'କନ୍ଦର୍ପଠାରୁ ବଳିଷ୍ଠ ଶୁଭର ଆଉ କେହି ନାହିଁ, ... ଏ କନ୍ଦର୍ପ' ଏହି ଭାବ ।

୧୦୩ଶ ପଦ—ଏବେ ( ବର୍ତ୍ତମାନ ) ବସୁଧର ( ଭୂଦେବୀର ) ମର୍କତ ଚୂଡ଼ାମଣି । ( ମରକତ ଶିରୋମଣି ) ଜ୍ୟୋତି ବିରାଜିବା ବ୍ୟକ୍ତ ହେଉଛି 'ବସୁଧର ଶିରେ ଥିବା ମରକତ ମଣିର ଜ୍ୟୋତି ବିରାଜିବାର ଏବେ ମୂର୍ତ୍ତିବନ୍ତ ହୋଇ ପ୍ରକାଶ ପାଇଲା ଏହିଭାବ' । ୧୦୩ ।

୧୦୪ଶ ପଦ—କେ ତୁମ୍ଭେ ? (ତୁମ୍ଭେ କିଏସେ ) "ଏମନ୍ତ ବାଳି" ବୋଲୁଁ (ପଚାରନ୍ତେ) ଶ୍ରୀରାମ ହୋଇଲେ ରଘୁନୃପଙ୍କର ବଂଶେ ଜନମ 'ଆମ୍ଭର' । ୧୦୪ ।

---

୧—ଦର୍ପଃ କନ୍ଦର୍ପ୍ୟା ମଦ୍ୟନ୍ଧଂକୃତୌ ଇତି ମେଦିନୀ ।

୨—କନ୍ଦର୍ପୋ ଦର୍ପକୋଽନଙ୍ଗ ଇତ୍ୟମରଃ ।

*—ତଥାପ୍ୟେକୋଽନଙ୍ଗ ସ୍ତ୍ରିଭୁବନପି ବ୍ୟାକୁଳୟତି ।

ବସୁମଣ୍ଡଳରେ ଭାର ହେଲେ ଦୁଷ୍ଟେ । ବସୁଁ ମତରେ ଏହୁକଥା ସ୍ପଷ୍ଟେ ॥
ବୃଦ୍ଧ ବନରେ ବିରାଧ କବନ୍ଧ । ତଳ ମଧ୍ୟରେ ଖର କଲୁଁ ବଧ ।୧୦୬।
ବାଟାପ୍ତୁଏ ହୋଇ ଅସୁଁ ମାରୀଚ । ବନ୍ଧୁଁ ତାହାଙ୍କୁ ଗୋଡ଼ାଇ ନାରାଚ ॥
ବସଜ ଯେ ପ୍ରାଣ ଯାନ୍ତେ ଲକ୍ଷ୍ମଣ । ବଚ ଜଳ ଭ୍ରାନ୍ତ ଗଲ ତକ୍ଷଣ ।୧୦୮।
ବାମା ମେନେଦେ ସଙ୍ଗେ ଆସିଥିଲ । ବୈଶ୍ରବଣ ଏକା ଦେଖି ହରିଲ ॥
ବନିତାକୁ ଖୋଜୁ ଋଷ୍ୟମୂକରେ । ବଡ଼ଦୀନ ଧନବନ୍ଧୁ କୁମର ।୧୧୦।
କାହ୍ନି କରୁଣା ମିତ୍ର ସେ ହୋଇଲୁଁ । ବୈରୀ ମିତ୍ରର ବୋଲିଣ ମାଇଲୁଁ ॥

---

୧୦୫-୧୦୬ ଶ ପଦ—ବସୁମଣ୍ଡଳରେ (ପୃଥିବୀରେ) ଦୁଷ୍ଟେ (ଦୁଷ୍ଟଲୋକେ) ଭାର ହେଲେ ଏହୋ ଆମ୍ଭ ମତରେ (ମନରେ) ସ୍ପଷ୍ଟ (ବଡ଼) ହୋଇ ବସୁଁ (ବସନ୍ତେ) ବନରେ ବୃଦ୍ଧ ବିରାଧ (ରାକ୍ଷସ) କବନ୍ଧ (ରାକ୍ଷସ) ତଳ (ଜନସ୍ଥାନ) ମଧ୍ୟରେ (ମଧ୍ୟଭାଗରେ) ଖର (ରାକ୍ଷସ) ବଧ କଲୁଁ। ଏମାନଙ୍କ ମାର ମହାଭାର ଲାଘବ କରିବାରୁ ଏହା ଭାବ । ୧୦୫ । ୦୬ ।

୧୦୭-୧୦୮ ଶ ପଦ—ମାରୀଚ (ରାକ୍ଷସ) ବାଟାସ୍ତୁ ଏ (ମୃଗରୋଚନାଏ) ହୋଇ ଆସୁଁ (ଆସନ୍ତେ) ତାହାଙ୍କୁ (ସେହି ମାୟାମୃଗକୁ) ଗୋଡ଼ାଇ ନାରାଚ (ଶର) ବନ୍ଧୁଁ (ବନ୍ଧନ୍ତେ) ସେ (ମୃଗ) ପ୍ରାଣ ବସଜ (ଜୀବନ ଛାଡ଼ିବା ସମୟରେ) ଯାହା ଲକ୍ଷ୍ମଣ ବଚକଲ (କହିଲ) 'ତାହା ଶୁଣି ତକ୍ଷଣ (ସେହିକ୍ଷଣି) ଭ୍ରାତା ଲକ୍ଷ୍ମଣ 'ମୋ ପାଖକୁ' ଗଲ । ୧୦୭ ୧୦୮ ।

୧୦୯ଶ ପଦ—ବାମା (ମୋ ସ୍ତ୍ରୀ) ମେନେଦେ (ସ୍ନେହରେ) ସଙ୍ଗେ (ମୋ ସଙ୍ଗରେ) ଆସିଥିଲ, ବୈଶ୍ରବଣ (ରାବଣ) ଏକା ଦେଖି 'ତାକୁ ହରିନେଲ । ୧୦୯ ।

୧୧୦ଶ ପଦ—ବନିତାକୁ ଖୋଜୁଁ (ପତ୍ନୀକୁ ଖୋଜୁଁ ଖୋଜୁଁ) ଋଷ୍ୟମୂକର (ଋଷ୍ୟମୂକ ପର୍ବତରେ) ବଡ଼ଦୀନ (ଅତିଦୁଃଖୀ) 'ହୋଇ' ଧନବନ୍ଧୁ କୁମର (ସୂର୍ଯ୍ୟସୁତ ସୁଗ୍ରୀବ) 'ଥିଲେ' । ୧୧୦ ।

୧୧୧ଶ ପଦ—କରୁଣା କହି 'ଆମ୍ଭେ ତାଙ୍କ ସଙ୍ଗେ' ମିତ୍ର ହୋଇଲୁଁ । ଏହାଦ୍ୱାରା ଧନବନ୍ଧୁ ସୂଚିତ ହେଲ । ମିତ୍ର ବୈରୀ (ଶତ୍ରୁ) ବୋଲି "ଭ୍ରାତାଙ୍କୁ" ମାଇଲୁ । ୧୧୧ ।

ବାଳି ବୋଇଲ ତୁ ଦାଶରଥି କି । ବୃଦ୍ଧବାନରେ ନାଶିଲ ଏଥିକି ।୧୧୨
ବପ୍ତା ଜିଣି ଯାହାର ଗ୍ରହ ଖଞ୍ଜି । ବିସ୍ତାରିଛି କୀରତ୍ତିକ ସହଜ ।୧୧୩
ବିମର୍ଦ୍ଦନ-କ୍ଷତ୍ରିୟ ଭୃଗୁବର । ବାଦେ କ୍ଷମ ନୋହିଲ ତ ତାହାର ।୧୧୪
ବଂଶବାହ୍ୟ ତୋର ଧାରିବଇଶି । ବାଦ ତା ସଙ୍ଗରେ ଆଗ ନ କର ॥
ବୃଷଦଂଶ ରୂପରେ ଗୁପ୍ତେ ରହି । ବାଣେ ବନ୍ଧିଲୁ ଦେହେ ରହେ ସେହି

---

୧୧୨ଶ ପଦ—ଏହା ଶୁଣି ବାଳି ବୋଇଲ ତୁ ଦାଶରଥି କି ? (ଦଶରଥର ପୁତ୍ର କି ?) ଏଥିକି (ଏଣୁ) ବୃଦ୍ଧ ବାନରେ (ବୁଢ଼ା ମାଙ୍କଡ଼ କୋଟାଏ) ନାଶିଲୁ । ମୋତେ ମାରି କି ଫଳ ପାଇବ ? ଏହିଭାବ ※ ।୧୧୨

୧୧୩-୧୧୪ଶ ପଦ—ଯାହାର ବପ୍ତା (ବାପ) ବିମର୍ଦ୍ଦନ-କ୍ଷତ୍ରିୟ (କ୍ଷତ୍ରିୟ କୁଳ ଧ୍ୱଂସନକାରୀ) ଭୃଗୁବର (ପରଶୁରାମଙ୍କ) ବାଦେ (ବିବାଦରେ) କ୍ଷମ (ସମର୍ଥ) ନୋହିଲ ଗ୍ରହଖଞ୍ଜି (ଶ୍ରେଷ୍ଠ ଗ୍ରହ ଶନିକି) ଜିଣି କୀରତ୍ତିକ (ଯଶ) ସହଜ (ସହଜରେ) ବିସ୍ତାରିଛି । 'ତୁ' ତ ତାହାର 'ପୁଅ' ଆଉ ଅଧିକ କଣ କରନ୍ତୁ ? ଏହାଦ୍ୱାରା ଦଶରଥଙ୍କର ପରାକ୍ରମ ଦ୍ୱାନ୍ ସୂଚିତ ହେଲା । ୧୧୩-୧୧୪ ।

୧୧୫ଶ ପଦ—ବଂଶବାହ୍ୟ (ରାବଣ) ତୋର ଧାରିବଇଶି ଆଗ ତା ସଙ୍ଗରେ ବାଦ (ବିବାଦ) ନ କର 'କଦର୍ଥିକି ମାଇଲୁ' । ୧୧୫ ।

୧୧୬ଶ ପଦ—ପୁଣି ସମ୍ମୁଖ ଯୁଦ୍ଧ ନ କରି, ବୃଷଦଂଶ (ବିରାଡ଼ି) ରୂପରେ (ପରି) ଗୁପ୍ତେ (ଲୁଚି) ରହି ବାଣେ (କାଣ୍ଡେ) ବନ୍ଧିଲୁ ସେହି (କାଣ୍ଡଗୋଟାକ) 'ଫୁଟି ବାହାରି ନ ଯାଇ' ଦେହେ (ଦେହରେ) ରହେ (ରହିଲା) । କେହି କେହି 'ବୃଷଦଂଶ ସ୍ୱରୂପେ' ପଢନ୍ତି ତାହାର ଅର୍ଥଯଥା—

---

୧—※ ମଲ୍ଲାପଂଲାପ୍ସୁ କରଣେ ହରଣେ ପଜାପ୍ସୁ ।
ସିଦ୍ଧଂ ନୁହନ୍ତ ଭୁଜବିକ୍ରମ ସୂଚନାପ୍ସୁ ।
କା ନୀତି ନୀତି ଶସ୍ତୁତା ରଘୁବଂଶ ବୀର
ଶାଖାମୃଗେ ଜରତି କିଂ ତବ ବାଣ ମୋକ୍ଷ ॥ ଇତି ମହାନାଟକେ ॥

ବଡ଼ାଇକି ରକ୍ଷଣେ ଆପଣାର । ବୋଲି ଦେଲେ ରାମଚନ୍ଦ୍ର ଏ ଗିର ॥
ବଳ କୋଟିସିଂହର କି ବାନରେ । ବନ୍ଧେ ବସେ ରାଜନ ପଦଦ୍ୱାରେ ॥
ବନ୍ଧେ ସିନ୍ଧୁରେ କି ନିତ ତର୍ପଣ । ବାମା ଅନୁଜଭ୍ରାତର ହରଣ ।୧୧୯
ବୃଜିନକୁ ଛେଦି ତା କଙ୍କପତ୍ରେ । ବଧି ଜଣକୁ ଋଣ ଦେଲି ମିତ୍ରେ ॥
ବୃଦ୍ଧି କଳନ୍ତର ହୋଇ ପ୍ରବର୍ତ୍ତି । ବଧିବେ ସେ ରାବଣ ପୁତ୍ର ନାତି ॥
ବୋଲିଛନ୍ତି ସୀତାଆଣିଦେବାର । ବାଳି ବୋଇଲା କ୍ଲେଶରେ ହେବାର॥

ବୃଷ (ଶ୍ରେଷ୍ଠ) [୧]ଦସ୍ୟୁ (ଶ୍ବେର) ସ୍ବରୂପେ (ସ୍ୱଭବରେ) ଗୁପ୍ତେ (ଲୁଚି) ରହି······ଏହା ଦ୍ୱାରା ରାମଙ୍କର ନିର୍ବୀର୍ଯ୍ୟତ୍ୱ ସୂଚିତ ହେଲା । ୧୧୬ ।

୧୧୭ଶ ପଦ - ଏହ ଶୁଣି ରାମଚନ୍ଦ୍ର ଆପଣାର ବଡ଼ାଇ ( ବଡ଼ପଣ ) ରକ୍ଷଣେ ( ରକ୍ଷିବା ଅଭିପ୍ରାୟରେ ) ଏ ଗିର ( ଏ କଥା ବୋଲି, ଦେଲେ ( କହିଲେ ) । ୧୧୭ ।

୧୧୮ଶ ପଦ—କୋଟିସିଂହର ବଳ ବାନରେ (ବାନର) ବନ୍ଧେକି ? ଏବଂ ରାଜପଦଦ୍ୱାରେ ବସେ କି ? ଏହାଦ୍ୱାରା ବାଳିର ବୀରତ୍ୱ ସୂଚିତ ହେଲା ।୧୧୮।

୧୧୯ଶ ପଦ—'ଆଉ ମଝ' ନିତ (ପ୍ରତିଦିନ) ସିନ୍ଧୁରେ ( ସମୁଦ୍ରରେ ) ତର୍ପଣ ବନ୍ଧେ (କରେ) କି ? ଅନୁଜଭ୍ରାତ ( ସାନଭାଇ ) ବାମା ( ସ୍ତ୍ରୀଙ୍କୁ ) ହରଣ 'କରେ' କି ? ନ କରେ ଏହିଭାବ । ଏହାଦ୍ୱାରା ରାଜନୀତିଜ୍ଞ ସୂଚିତ ହେଲା । ୧୧୯ ।

୧୨୦ଶ ପଦ—'ତୁ ଯେ କୋଇଲୁ ତୋ ବପ୍ତା ଭୃଗୁବର ଟବାଦରେ କ୍ଷମ ନୋହିଲ' ତା ( ସେହ ପରଶୁରାମର ) ବୃଜିନକୁ ( ପାପକୁ ) କଙ୍କପତ୍ରେ ( କଙ୍କପତ୍ର ବାଣରେ ) ଛେଦି ଜଣକୁ ( ପାତକୀ ଯେ ତୁ ତୋତେ ) ବଧି (ନାଶକରି) ମିତ୍ରେ ( ମିତ୍ର-ସୁଗ୍ରୀବଙ୍କୁ ) ଋଣ ଦେଲୁ । ୧୨୦ ।

୧୨୧ଶ ପଦ— 'ସେ ଋଣ କଳନ୍ତର ( ଶୁଧ ) ବୃଦ୍ଧି ହୋଇ ପ୍ରବର୍ତ୍ତି (ପ୍ରବର୍ତ୍ତିଲେ), ସେ (ମିତ୍ର) ରାବଣ 'ଏବଂ' ତାହାର ପୁତ୍ର ନାତି ବଧିବେ ॥

୧୨୨ଶ ପଦ—ପୁଣି ସେ (ମିତ୍ର) ସୀତାଙ୍କୁ ଆଣି ଦେବାର ବୋଲିଛନ୍ତି, 'ଏହା ଶୁଣି' ବାଳୀ 'ସେ କଥା' କ୍ଲେଶରେ ( କଷ୍ଟରେ ) ହେବାର ବୋଲି । ୧୨୨ ।

---

[୧]—ଦସ୍ୟୁ ଶ୍ବୌରେ ଶତ୍ରୌ ପୁଂସି ଇତି ମେଦିନୀ ।
ରାଜଦସ୍ୟୁ ଶତ୍ରାବଭ୍ୟ ବ୍ୟାଘ୍ରାଦଭ୍ୟଶ୍ଚ କର୍ହିଚିଦ୍ଧତି ଭାଗବତେ ॥

ଝଟକ୍ଳେଶରେକେମୋବନାକରତା । ବ୍ରହ୍ମାଣ୍ଡେସେଏକାମୋରେବନତା ॥
ଝଗ୍ରକର ସେଜସ୍ୱୀ ଯଥା ହେଲେ । ବଧୂତ୍ଥୁଦ କେବଳ ଗ୍ରାସେ ଭଲେ
ଝଶଲ୍ୟକୁ କରିବା ଗ୍ରାମ ଋଷି । ବଇକୁଣ୍ଠକୁ ମୋତେ ବାଟ ଦିଶି ॥
ବଇକୁଣ୍ଠ ତୁ ହେଲୁ ନାଶହେତୁ । ବର୍ଷ୍ମବନ୍ତେ ଅବଧି ହୋଏ ମୃତ୍ୟୁ ॥
ବୋଲନ୍ତୁ କପୀଶ ଆସି ସଅଙ୍ଗଦେ । ବାର୍ତ୍ତାପାଇ ଯାନେ ଜହୋଙ୍କଷାଦେ

୧୨୩ଶ ପଦ—ବ୍ରହ୍ମାଣ୍ଡେ (ବ୍ରହ୍ମାଣ୍ଡରେ) ମୋ ବନା (ମୋ ବ୍ୟତିରେକରେ) ଝଟକ୍ଳେଶରେ (ଅକ୍ଳେଶରେ) କରଣ (କର୍ତ୍ତା) କେ ? କେହ୍ନାହିଁ । ମୁଁ ସୀତା ଆଣି ଦେଇ ପାରିବ ଏହ୍ମଭାବ’ । ସେ (ରାବଣ) ‘ବ୍ରହ୍ମାଣ୍ଡରେ’ ଏକା (ଅଦ୍ୱିତୀୟ ବୀର), ମୋରେ ବନତା ( କେବଳ ମୋତେ ନମସ୍କାର କରେ ) ଅନ୍ୟକୁ କରେ ନାହିଁ ଏମନ୍ତ ଭାବ । ୧୨୩ ।

୧୨୪ଶ ପଦ—ଝଗ୍ରକର (ସୂର୍ଯ୍ୟ) ତେଜସ୍ୱୀ ହେଲେ; ତାହାଙ୍କୁ ବଧୂ ନୁଦ ( ରାହୁ ) ଯଥା କେବଳ ଭଲେ (ଉତ୍ତମରୂପେ) ଗ୍ରାସେ (ଗ୍ରାସକରେ) ‘ତଥା ମୁଁ ରାବଣକୁ ମାରିବାକୁ ସମର୍ଥ ଏହ୍ନଭାବ’ । ୧୨୪ ।

୧୨୫ଶ ପଦ—‘ବାଳିଠାରୁ ଏମନ୍ତ ଶୁଣି’ ରାମ ଋଷି (କହିଲେ) ୧ବିଶଲ୍ୟକୁ କରିବା (ଶୂନ୍ତ ସ୍ଥିତିରୁ ବାଣ କାଢ଼ି ଔଷଧ ଦ୍ୱାରା ପୀଡ଼ା ହରିବା) ଏମନ୍ତ ଶୁଣି ବାଳି ବୋଇଲା’ ମୋତେ ବୈକୁଣ୍ଠକୁ ( ବୈକୁଣ୍ଠପୁରେ ଯିବାକୁ ) ବାଟ ଦିଶି (ଦିଶିଲାଣି) । ‘ଆଉ କାହିଁକି ବିଶଲ୍ୟ କରିବ ଏହ୍ନଭାବ’ । ୧୨୫

୧୨୬ଶ ପଦ—ବଇକୁଣ୍ଠ ତୁ (ତୁ ସ୍ୱୟଂ ଭଗବାନ୍) ‘ମୋହର’ ନାଶ ହେତୁ (ବିନାଶର କାରଣ) ହେଲୁ । ‘ଏଥିରୁ ମୋହର ଭାଗ୍ୟ ଆଉ କ ଅଛୁ ? ‘ଏହ୍ନଭାବ’ ବର୍ଷ୍ମବନ୍ତେ (ଦେହଧାରୀ ହେଲେ) ଅବଧି (ନିଶ୍ଚୟ) ମୃତ୍ୟୁ ହୁଏ ※ ।୧୨୬ ।

୧୨୭ଶ ପଦ---କପୀଶ (ବାଳି) ‘ଏମନ୍ତ’ ବୋଲନ୍ତୁ ( ବୋଲନ୍ତେ )

୧—କ୍ଷେତ୍ର ଶଙ୍କୁଶରେ ଶଲ୍ୟଂ ନା ଶ୍ରୀବନ୍ନଦନଦ୍ଭମେ । ଇତି ରଭ୍ୟସଃ ।
※—ଜାତସ୍ୟ ହି ଧ୍ରୁବୋମୃତ୍ୟୁର୍ଧ୍ରୁବଂ ଜନ୍ମ ମୃତସ୍ୟ ଚ ଇତି ଗୀତାୟାଂ ।
ମରଣଂ ପ୍ରକୃତିଃ ଶରୀରଣାଂ ବିକୃତି ର୍ଜୀବନ ମୁଚ୍ୟତେ ମୁଚ୍ୟତେ
ବୁଧୈରିତି ରଘୁବଂଶେ

ବିଚିତ୍ରୈକ ପୂର୍ବରେ ହୋଇଥିଲା । ବନ୍ଧ୍ୟ ବିରୋଧୀ ସମୁଦ୍ର ପାଇଲା ॥
ବିଚିତ୍ରେକ ଏବେ ତୋହ ଶରୀରେ । ବିଭେଦିତ ହୋଇଲା ତ୍ରିକ୍ଷଣରେ
ବିଷ୍ଣୁ ମଧୁକଇଟଭ ପାତାଳେ । ବିନାଶରୁ ଏ କୀର୍ତ୍ତି ବଳାଇଲେ ।୧୩୦
ବର ବର୍ହ ମୂରତି ଧରିବା । ବଡ଼ ନୁହେ ହିରଣାକ୍ଷ ମାରିବା ।୧୩୧
ବଳି ହିରଣ୍ୟଦାରୁଣୁ ଏ ଯଶ । ବଳୀ ପାତାଳେ ରଖିବା ରହସ୍ୟ ।୧୩୨
ବଳୀଭୂତ ଭବିଷ୍ୟ ବର୍ତ୍ତମାନେ । ବଳିମୁଖେଶ ସମକେ ଭୁବନେ ।୧୩୩

---

ବାନ୍ତ୍ରୀପାଇ ସ ଅଙ୍ଗଦେ (ବାଲିପୁତ୍ର ଅଙ୍ଗଦ ସହିତରେ) ପାଦେ (ପାଦମାନେ) ଆସି ବିଷାଦେ ( ବିଷାଦରେ ) କହେ ( କହୁଅଛନ୍ତି ) । ୧୨୭ ।

୧୨୮ଶ ପଦ—ପୂର୍ବରେ (ପୂର୍ବକାଳରେ) ବିଚିତ୍ରୈକ (ଏକ ଆଶ୍ଚର୍ଯ୍ୟକଥା) ହୋଇଥିଲା, ବନ୍ଧ୍ୟବିରୋଧୀ (ଅଗସ୍ତି) ସମୁଦ୍ର ପିଇଥିଲା * ।୧୨୮।

୧୨୯ଶ ପଦ—ଏବେ ( ବର୍ତ୍ତମାନ ) ବିଚିତ୍ରେକ ( ଆଶ୍ଚର୍ଯ୍ୟ କଥାଏ ) ହେଲା । ତୋହ ଶରୀରେ ( ତୋ ଦେହରେ ) ତ୍ରିକ୍ଷଣରେ ବିଭେଦିତ ହୋଇଲା । 'ଯେଣୁ ତୁ ବଜ୍ରାଙ୍ଗ ଏମନ୍ତ ଭାବ' । ୧୨୯ ।

୧୩୦ଶ ପଦ—ବିଷ୍ଣୁ ପାତାଳେ ( ପାତାଳପୁରେ ) ମଧୁ କଇଟଭ ( ମଧୁକୈଟଭ ଦୈତ୍ୟ ) ବିନାଶରୁ ( ବିନାଶ କରିବାରୁ ) 'ଯେଉଁ ଯଶ ଅର୍ଜିଥିଲେ ତହିଁରୁ' ଏ ( ସମ ) ତୋତେ ମାତ୍ର କୀର୍ତ୍ତି ବଳାଇଲେ 'ତାଙ୍କଠାରୁ ଏହାଙ୍କ କୀର୍ତ୍ତି ଅଧିକ ହେଲା ଏହି ଭାବ' । ୧୩୦ ।

୧୩୧ଶ ପଦ—ବିଷ୍ଣୁ ବର (ଶ୍ରେଷ୍ଠ) ବର୍ହ ମୂରତ ( ମୂର୍ତ୍ତି ) ଧରିବା ଓ ହିରଣ୍ୟାକ୍ଷ (ଦୈତ୍ୟ) ମାରିବା ବଡ଼ ନୁହେ 'ତୋତେ ମାରିବା ବଡ଼' ।୧୩୧।

୧୩୨ଶ ପଦ—'ନୃସିଂହ' ହିରଣ୍ୟ ଦାରୁଣ ( ହିରଣ୍ୟ କଶିପୁ ଦୈତ୍ୟକୁ ବିଦାରଣ କରିବା ଯଶରୁ )·ଏ ତଶ (ତୋତେ ମାରିବା ଯଶ) ବଳି 'ଗଲା' । ବଳୀ ( ବଳିରାଜାକୁ ) 'ବାମନ' ପାତାଳେ ( ପାତାଳ ପୁରେ ) ରଖିବା ରହସ୍ୟ (କୌତୁକ କଥା) । ୧୩୨ ।

୧୩୩ଶ ପଦ—ଭୂତ ଭବିଷ୍ୟ ବର୍ତ୍ତମାନେ ( ଏ ତିନି କାଳରେ ) ବଳି ମୁଖେଶ (ବାନରପତି ବାଲି ) ବଳୀ ( ବଳବାନ୍ ) ଭୁବନେ ( ଏ ଭୁବନ ମଧ୍ୟରେ) ସମ ( ଏହା ସମାନ ) କେ ଅଛି ( ଏହାଙ୍କୁ ବଳି ବଳିଷ୍ଠ କେହି

---

* —କୁମ୍ଭୋଦ୍ଭବେନ ମୁନିନାମ୍ବୁଧିରେବ ପୀତଃ ॥

ବଳି ଦଶବଦଗକୁ ଦଶ ଶିର । ବଳିଅଛୁ ମନ ଏବେ ଦେବାର ।୧୩୭୪
ବସ୍ତୁ ଏହି ବୋଲିଣ କପୀଶ୍ୱର । ବଳମ୍ବାଇ ସୁଗ୍ରୀବ ସୁଗ୍ରୀବର ।୧୩୭୫
ବାନ୍ତୋଷ୍ଠବ ଦେଲ ରତ୍ନମାଳାକୁ । ବାହୁ ଧରି ସମର୍ପି ଅଙ୍ଗଦକୁ ।୧୩୭୬
ବାହୁଳେୟ କି ଶର ନେଇ କ୍ରୌଞ୍ଚ । ବାହୁଜେଶଉପାନ୍ତ ଶର ରଚି ॥
ବିଶେଷତ ତପ ପ୍ରଭ ହୋଇଲା । ବିନାଗତ ଜୀବନରେ ରହିଲା ।୧୩୭୮

ନାହିଁ) 'ହିରଣ୍ୟକଶିପୁ ହିରଣ୍ୟାକ୍ଷ, ମଧୁକୈଟଭ, ଓ ବଳିଠାରୁ ମୋ ବଳବାନ୍' ଏହି ଭାବ । ୧୩୭୩ ।

୧୩୭୪ଶ ପଦ—ଏବେ ( ବର୍ତ୍ତମାନ ) ଦଶବଦଗକୁ ଦଶଶିର ( ଦଶମୁଣ୍ଡ ) ୧ବଳି (୨ଉପହାର କରି) ଦେବା ମନ ବଳିଅଛୁ । ଏ ପଦ କ୍ଷେପ । 'ବର୍ତ୍ତମାନ ଅବତାରରେ ରାବଣର ଦଶମୁଣ୍ଡ କାଟି ଦଶବଦନ୍ ଦେବତାଙ୍କୁ ବଳିଦେବାକୁ ମନ କରି ଅଛନ୍ତି ଏହି ତାତ୍ପର୍ଯ୍ୟାର୍ଥ' । ୧୩୭୪ ।

୧୩୭୫-୧୩୭୬ଶ ପଦ—କପୀଶ୍ୱର ( ବାଳି ) 'ବୋଇଲ' ଏ ( ରାମଚନ୍ଦ୍ର ) ବସ୍ତୁହି ( ନିଶ୍ଚୟ ) ବୋଲିଣ ( ଏମନ୍ତ କହି ) ବାନ୍ତୋଷ୍ଠବ ( ଚନ୍ଦ୍ର ) ଦେଲ ( ଦେଇଥିବା ) ରତ୍ନମାଳାକୁ ସୁଗ୍ରୀବର ( ସାନ ଭାଇର ) ସୁଗ୍ରୀବ ( ଉତ୍ତମ କଣ୍ଠରେ ) ବଳମ୍ବାଇଲ ଏବଂ ଅଙ୍ଗଦକୁ ( ପୁତ୍ରକୁ ) ବାହୁ ଧରି ସମର୍ପି ( ସୁଗ୍ରୀବଙ୍କୁ ସମର୍ପି ଦେଲ ) । ୧୩୭୫ । ୧୩୭୬ ।

୧୩୭୭ଶ ପଦ—୧ବାହୁଜେଶ ( କ୍ଷତ୍ରିୟବର ) 'ରାମ' ଶର ଉପାନ୍ତ ରଚି ( ଅପାୟ କାଳ ଜାଣି ବଳିର ଦେହରୁ ଶର ଉପାଡ଼ନ୍ତେ ) ବାହୁଳେୟ ( କାର୍ତ୍ତିକେୟ ) ୨କ୍ରୌଞ୍ଚ ( କ୍ରୌଞ୍ଚ ପର୍ବତରୁ ) କି 'ଅସ୍ତ୍ର' 'ଉପାଡ଼ି' ନେଇ ଯିବାର 'ଉପମାକୁ ପାଇଲ' । ୧୩୭୭ ।

୧୩୭୮ଶ ପଦ—ସେ ବାଳିର ୧ତପପ୍ରଭ ( ତପସ୍ୟାର ପ୍ରଭା ) ୨ତପପ୍ରଭା ( ଗ୍ରୀଷ୍ମପ୍ରଭା ) ହେଲ । ସେ ବିଶେଷତ ହେଲା ( ବିଶେଷରେ ଶେଷ

୧—ନଭସ୍ୱେପାହାରୟୋଃ ପୁଂସି ବଳିଃ ପ୍ରାଣ୍ୟଙ୍ଗଜେ ସ୍ତ୍ରିୟାଂ ।
୨—ଉପହାରଃ—ପୂଜୋପହାରଃ ।
୧—ବାହୁଜଃ କ୍ଷତ୍ରିୟୋ ବିରାଟ୍ ଇତ୍ୟମରଃ ।
୨—କୁମାରଃ କ୍ରୌଞ୍ଚଦାରଣଃ ।
୧—ତପୋ ଲୋକାନ୍ତରେଽପିଚ । କୃଚ୍ଛ୍ରାଦ୍ୟଶାଦୌ ଧର୍ମେ ଚେତ୍ତ ମେଦିନୀ ।
୨—ଉଷ୍ଣଊଷ୍ମାଗମସ୍ତପ ଇତ୍ୟମରଃ ।

ବିଚଞ୍ଚଳ ନେତ୍ରମୀନ ସ୍ତବଧ । ବିକଶିଲା ନାହିଁ ହାସ କୁମୁଦ ।୧୩୯।
ବାସବେପ୍ସୁ ଯେମନ୍ତ ଶୁଷ୍କହ୍ରଦ । ବାର୍ତ୍ତାବହଠୁଁ ବାଳା ଶୁଣି ବିଷାଦ ।୧୪୦।
ବାଳ ଫିଟି ଲୋଟେ ପୃଷ୍ଠେ ଧାବନ୍ତେ । ବାରିଦ କି ଖେଳେ ହେମପର୍ବତେ
ବକ ଖସିଲାପରି ପୁଷ୍ପ ପଡ଼େ । ବାଷ୍ପଜଳ ନୟନଯୁଗୁଁ ଗଡ଼େ ।୧୪୨।
ବକ୍ଷସ୍ଥଳୁଁ ଦ୍ରବ ବହେ କଳଙ୍କ । ବକ୍ତ୍ରପାଶେ ରଞ୍ଜିତ ତାଟଙ୍କ ।୧୪୩।

---

ହେଲ ଯାହା ଏଣୁ) ତାହାର ଜୀବନ (ପାଣି) ସେ ଜୀବନରେ (ଜଳ) ହେଲା, ତହିଁରେ ବିନିର୍ଗତ ରହିଲା (ଗ୍ରୀଷ୍ମରେ ଜଳ ଶୁଖିଗଲା ପରି ତା ଦେହରୁ ଜୀବନ ଛାଡ଼ିଗଲା) । ୧୩୮ ।

୧୩୯ଶ ପଦ—'ଜୀବନ ବିନିର୍ଗତ ହେବାରୁ' ବିଚଞ୍ଚଳ (ବିଶେଷରେ ଚଞ୍ଚଳ ହେଉଥିବା) ନେତ୍ର 'ରୂପ' ମୀନ ସ୍ତବଧ (ସ୍ତବଧୀଭୂତ) 'ହେଲା' ହାସ 'ରୂପ' କୁମୁଦ (କଇଁଫୁଲ) ବିକଶିଲା ନାହିଁ । (ନ ଫୁଟିଲା) ।

୧୪୦ଶ ପଦ—୧ବାସବେପ୍ସୁ (ବାଳି) ଶୁଷ୍କହ୍ରଦ (ଶୁଖି ଯାଇଥିବା ଜଳାଶୟ) ଯେମନ୍ତ 'ଦିଶେ 'ସେପରି ଦିଶିଲା' । ବାର୍ତ୍ତାବହଠୁଁ (ଦୂତଠାରୁ) 'ଏ ବାର୍ତ୍ତା' ଶୁଣି ତାର (ବାଳିଭାର୍ଯ୍ୟା) ବିଷାଦ 'ପ୍ରାପ୍ତହେଲା' ।୧୪୦।

୧୪୧ଶ ପଦ—'ସେ ତାର ଅଗ୍ରେ ହୋଇ' ଧାବନ୍ତେ (ଧାଆଁନ୍ତେ) ବାଳ (କେଶ) ଫିଟି ପୃଷ୍ଠେ (ପିଠିରେ) ଲୋଟେ (ଲୋଟଇ) । 'ଏଣୁ କବି ଉତ୍ପ୍ରେକ୍ଷା କଲେ' ହେମ ପର୍ବତେ (ସୁମେରୁଗିରିରେ) ବାରିଦ (ମେଘ) ଖେଳେ (ଖେଳୁଛି) କି ? ।୧୪୧।

୧୪୨ଶ ପଦ—'ପୁଣି ତା କେଶରୁ' ବକ (ବକପକ୍ଷୀ) ମେଘସମୟରେ ଆକାଶରୁ ଖସିଲାପରି ପୁଷ୍ପ 'ଖସି' ପଡ଼େ । ନୟନଯୁଗୁଁ (ନେତ୍ରଦୁଇରୁ) ବାଷ୍ପଜଳ (ଲୋତକ) ଗଡ଼େ) (ଝରେ) । ଘନସଙ୍ଗେ ବକଥାନ୍ତି ଓ ଜଳବିନ୍ଦୁ ପଡ଼େ ଏହିଭାବ । ୧୪୨ ।

୧୪୩-୧୪୪ଶ ପଦ—'ଲୋତକ ବକ୍ଷସ୍ଥଳରେ ପଡ଼ିବାରୁ' ବକ୍ଷସ୍ଥଳୁଁ (ବକ୍ଷସ୍ଥଳରୁ) ୧କଳଙ୍କ (ମଳ) ଦ୍ରବ (ଧୋଇହୋଇ) ବହେ ତାଟଙ୍କ (ହୀରତାଟଙ୍କଦ୍ୱୟ) ବକ୍ତ୍ରପାଶେ (ମୁଖପାଖରେ—ଗଣ୍ଡସ୍ଥଳରେ) ରଞ୍ଜିତ

---

୩—ଜୀବନଂ ସଲିଲେ ଜୀବେ ଇତି
୧—ଐନ୍ଦ୍ରସ୍ତୁ ବାଳୀ ବାଳିଶ୍ଚ ଇତି ।

ଵିକାରେ କି ବାତର ଶୋଭା ଜଳେ । ବେଣୀ ନିର୍ମଳତର ତାର ଚଳେ
ବକ୍ଷୋଜରୁ ଖସେ ହାର ମୁକୁତା । ବସୁନ୍ଧରାନୀରବିନ୍ଦୁ ଶୋଭିତା ୧୪୫
ବୈବସ୍ୱତପୁରେ ଗଲ ଏ ସ୍ୱର । ବିଧବା କର ମୋତେ ପ୍ରାଣେଶ୍ୱର ॥
ବେଳ ଅସ୍ତ ହୋଇଲା ପ୍ରଭାତରେ । ବୋଲି ପଡ଼ିଲା ସେ ବାଳା ଉପରେ
ବଳାହକୁଁ ଛୁଡ଼ିପଡ଼ି ବିଜୁଳୀ । ବଳାହକ ଉପରେ କିବା ଖେଳି ॥

(ଆନ୍ଦୋଳିତ) ହେଉଅଛି ଯାହା ତହିଁକି କବି ଉତ୍ପ୍ରେକ୍ଷା କଲା କି ତାହା-ନୁହେଁ' ବାତର (ପବନର) ବିକାରେ (ବିକାରଦ୍ୱାରା) ଶୋଭା 'ରୂପ' ଜଳେ ନିର୍ମଳତର (ଅତି ନିର୍ମଳ) ବେଣୀ ତାର (ଦୁଇଧାରକା) ଚଳେ (ଚଳୁଅଛି) କି ? । ୧୪୩-୧୪୪ ।

୧୪୫ଶ ପଦ—ବକ୍ଷୋଜରୁ (ପୟୋଧରରୁ) ହାର (ହାରରେ ଥିବା) ମୁକୁତା (ମୁକ୍ତାସବୁ) 'ଯାହା' ଖସେ 'ତହିଁକି କବି-ଉତ୍ପ୍ରେକ୍ଷା କରେ କି ତାହା ନୁହେଁ ବସୁନ୍ଧରା (ପୃଥ୍ୱୀ) ନୀରବିନ୍ଦୁ ଶୋଭିତା (ଜଳବିନ୍ଦୁରେ ଶୋଭା ପାଉଅଛି) । ଅଥବା—'ବସୁନ୍ଧରା କଳଶରୁ ଖସୁଥିବା ନୀରବିନ୍ଦୁ (ଜଳବିନ୍ଦୁ) ପ୍ରାୟ ଶୋଭା ପାଉଅଛି କଳଶ ତୁଲ୍ୟ ପୟୋଧର ଜଳବିନ୍ଦୁ ତୁଲ୍ୟ ମୁକ୍ତା । ୧୪୫ ।

୧୪୬ଶ ପଦ—ହେ ପ୍ରାଣେଶ୍ୱର (ହେ ପ୍ରାଣନାଥ) ମୋତେ ବିଧବା କରି । ବୈବସ୍ୱତ (ଯମ) ପୁରେ ଗଲ, ଏ ସ୍ୱର 'ଉଚ୍ଚାରୁଛି' (ଏମନ୍ତ କହି କାନ୍ଦିଲା) ।

୧୪୭ଶ ପଦ—ପ୍ରଭାତରେ (ପ୍ରଭାତକାଳରେ) ମୋର ବେଳ ଅସ୍ତ ହୋଇଲା 'ସନ୍ଧ୍ୟାରେ ସିନା ବେଳ ଅସ୍ତ ହୁଏ, ମୋ ବେଳ ସକାଳେ ଅସ୍ତ ହେଲା ଏହି ଭାବ' । ବୋଲି (ଏମନ୍ତ କହି) ଅବନୀ ଉପରେ ପଡ଼ିଲା ଅଥବା ସେ (ତାଙ୍କ) ବାଳା ଉପରେ (ସ୍ୱାମୀ ଉପରେ) ପଡ଼ିଲା । ୧୪୭ ।

୧୪୮ଶ ପଦ—'ବାଳା ଉପରେ ତାଙ୍କ ପଡ଼ିବାରୁ କବି ଉତ୍ପ୍ରେକ୍ଷା କଲା' ୧ବଳାହକୁଁ (ମେଘରୁ) ବିଜୁଳୀ ଖସିପଡ଼ି ବଳାହକ (ପର୍ବତ) ଉପରେ ଖେଳି (ଖେଳୁଅଛି) କି ବା ? ପକ୍ଷେ—'ତାହାର ପୟୋଧର ଗିରି ହେଲା, ଗାତ୍ର ବିଜୁଳୀ ହେଲା, ସେ ତହିଁରେ ଖେଳୁଅଛି କି ବା ? ✻ । ୧୪୮ ।

---

୧—ବଳାହକୋ ଗିରୌ ମେଘେ ଦୈତ୍ୟନାଗ ପ୍ରଭେଦୟୋଶ୍ଚାପି ମେଦିନୀ ।
✻—ବସୁଧାଲିଙ୍ଗନଧୂସରସ୍ତନୀଂ ବିଲଲାପ... କୁମାରସମ୍ଭବେ ।

ବିଲୋକନ କରଣ ରଘୁବୀର । ବିସ୍ମରିଲେ ବାନର ଅସୁନ୍ଦର ।୧୪୯।
ବୋଲନ୍ତି ଯେ ଜନମାନେ ସଭାରେ । ବିଲକ୍ଷିତ କେଉଁ ରମ୍ଭା ଏହାରେ
ବୋଲିଲି ଏଥିକ ନାମ ତାରା । ବିଦ୍ଧ ବିନ୍ଧୁଁ ହୋଇଲି ନେତ୍ରତାରା ॥
ବାଳିବାଳୀ ଶ୍ରୀରାମେ ଅନାଇଲ । ବାଣୀ-ବାଣ ବ୍ୟାକୁଳେ ଯୋଗ କଲ
ବିଚ୍ଛେଦ ଯେ କଲ ମୋ ବଲ୍ଲଭର । ବାଲାଭୋଗ ସମ୍ପୂର୍ଣ୍ଣ ନୋହୁ ତାର ॥
ବ୍ୟଥା ଉପୁଜାଇଲ ରଘୁନାଥକେ । ବାଳି-ବନ୍ଧିବା କାଣ୍ଡରୁ ଅଧିକେ ।୧୫୪।

---

୧୪୯-୧୫୦ଶ ପଦ—ରଘୁବୀର (ରାମ), 'ତାରାକୁ' ବିଲୋକନ କରଣ (ଦେଖି) ବିସ୍ମିତ ହେଲେ, ସଭାରେ ଜନମାନେ (କେହି କେ) ବାନର ଅସୁନ୍ଦର ବୋଲି ଯେ (ଯାହା) ବୋଲନ୍ତି ଏହାରେ (ଏ ତାରାଠାରେ) • କେଉଁ ରମ୍ଭା ବିଲକ୍ଷିତ (ଉପମିତ) • ହେବ । 'ସୁନ୍ଦର ପଣରେ ରମ୍ଭା ଏହା ତୁଲ୍ୟ ନୁହେ ଏହିଭାବ' । ୧୪୯ । ୧୫୦ ।

୧୫୧ଶ ପଦ—ଏଥିକ (ଏଥିପାଇଁ) ନାମ (ନାମରେ) 'ଏ' ତାରା ବୋଲାଇଲା; ବିଦ୍ଧ (ବିଧାତା) ବିନ୍ଧୁଁ (ଏହାକୁ ଗଢ଼ୁଁ) ତାହାର ୧ ନେତ୍ର ତାରା (ଡୋଳା ପିତୁଳା) ହୋଇଲା । 'ଏଣୁ ଏହାର ନାମ ତାରା ହେଲା ଏହିଭାବ' । ୧୫୧ ।

୧୫୨ଶ ପଦ—'ରାମ ତାରାକୁ ଏରୂପ ପ୍ରଶଂସା କରିବା ବେଳେ' ବାଳିବାଳୀ (ତାରା) ଶ୍ରୀରାମେ (ରାମଚନ୍ଦ୍ରଙ୍କୁ) ଅନାଇଲା (ଚାହିଁଲା) ଏବଂ ବାଣୀ ବାଣ (ବଚନ ଶରକୁ) ବ୍ୟାକୁଳେ (ବ୍ୟାକୁଳ ହୋଇ) ଯୋଗ (ସଂଯୋଗ) କଲା । ୧୫୨ ।

୧୫୩ଶ ପଦ—ଯେ (ଯେଉଁଲୋକ) ମୋ ବଲ୍ଲଭର (ପତିର) ବିଚ୍ଛେଦ (ବିୟୋଗ) କଲା ତାର (ତାହାର) ବାଲା (ସ୍ତ୍ରୀ) ଭୋଗ (ସମ୍ଭୋଗ) ସମ୍ପୂର୍ଣ୍ଣ (ପୂର୍ଣ୍ଣରୂପେ) ନୋହୁ । 'ଏମନ୍ତ ଶାପ ଦେଲା ଏହିଭାବ' । ୧୫୩ ।

୧୫୪ଶ ପଦ—ତାର 'ବାଣୀ ବାଣ' ରଘୁନାଥକେ (ରାମଙ୍କଠାରେ) ବାଳି ବନ୍ଧିବା (ବାଳିଠାରେ ବିନ୍ଧିଥିବା) କାଣ୍ଡରୁ (ବାଣରୁ) ଅଧିକେ (ଅଧିକରେ) ୨ବ୍ୟଥା (ଦୁଃଖ) ଉପୁଜାଇ (ଜାତ କରାଇଲା) । ୧୫୪ ।

---

• ୧—ତାରକାକ୍ଷଃ କନୀନକା ଇତ୍ୟମରଃ ।
୨—ପୀଡ଼ା ବାଧା ବ୍ୟଥା ଦୁଃଖମିତ୍ୟମରଃ ।

ବିଧବା ତୁ କପାଇଁ ହେବୁ କେତେ । ବସ ସୁଗ୍ରୀବକୋଳେ ଅଙ୍ଗଦ ଏତେ ॥
ବସୁଁ ପ୍ରହ୍ଲାଦ ଇନ୍ଦ୍ରପଦ ଲଭି । ବୃଷା ଥାଉଁ ଶଚୀ ତାର ବଲ୍ଲଭୀ ।୧୫୬।
ବଧୂ ଅଧିକ କି ଶାଶ୍ୱତାବରୁ । ବୋଧି ତାଙ୍କୁ ଶ୍ରୀ ଏହି ନ୍ୟାୟରୁ ।୧୫୭
ବାନରେନ୍ଦ୍ର ମିତ୍ରକୁ କରି ମୋଦେ । ବାନ୍ଧି ଯୁ ଜ ପଦ ଅଙ୍ଗଦେ ।୧୫୮।
ବିଦ୍ୟପଟ୍ଟମହିଷୀ ତାରା ହୋଇ । ବନ୍ଦ୍ୟା ସାଧ୍ୱୀପଦରେ ବଡ଼ ହୋଇ ।୧୫୯।

---

୧୫୫ଶ ପଦ—'ରାମ କହିଲେ' କେତେ ( ସଂସାର ମଧ୍ୟରେ ) ତୁ କପାଇଁ ବିଧବା ହେବୁ, ଅଙ୍ଗଦେ ( ଅଙ୍ଗଦେକ ସାଙ୍ଗରେ ) ସୁଗ୍ରୀବ କୋଳରେ ବସ । ୧୫୫ ।

୧୫୬ଶ ପଦ—'ତୁ ବା ବୋଲିବୁ ମୁଁ ପତିବ୍ରତା, ଅକରଣୀୟ କଥା କରୁନଯ କରିବି ? ଏଥିକୁ ଦୃଷ୍ଟାନ୍ତର ଦେଇ କହୁଅଛନ୍ତି ବୃଷା ( ଇନ୍ଦ୍ର ) ଥାଉଁ ( ଥାଆନ୍ତେ ) ତାର ( ସେହି ଇନ୍ଦ୍ରର ) ବଲ୍ଲଭୀ ( ସ୍ତ୍ରୀ ) ଶଚୀ ( ଶଚୀଦେବୀ ) ପ୍ରହ୍ଲାଦ ( ପ୍ରହ୍ଲାଦ ଦୈତ୍ୟ ) ଇନ୍ଦ୍ରପଦ ( ଇନ୍ଦ୍ରପଦ ଲଭି ସ୍ୱର୍ଗରେ ) ବସୁଁ ( ବସନ୍ତେ ) ତାର ( ସେହି ପ୍ରହ୍ଲାଦର ) ବଲ୍ଲଭୀ ( ସ୍ତ୍ରୀ ) ହେଲା । ୧୫୬ ।

୧୫୭ଶ ପଦ—ଶାଶ୍ୱତାବରୁ ( ଶାଶ୍ୱତାତ୍ ) ବଧୂ ( ବଧୂ ) ଅଧିକ କି ? ( ଅଧିକ ନୁହେ ) । 'ତୋ ଶାଶ୍ୱତ ପ୍ରହ୍ଲାଦର ଭାର୍ଯ୍ୟା ହେଲା, ତୁ ସୁଗ୍ରୀ-ଭାର୍ଯ୍ୟା ହୁଅ, ଏଥିରେ କି ଦୋଷ, ଏ ପରମ୍ପରାଗତ ବ୍ୟବସ୍ଥା' ଏହି ବାଣୀ ନ୍ୟାୟରୁ ( ଏ କଥା କହି ) ତାଙ୍କୁ ( ସେହି ତାରାଙ୍କୁ ) ବୋଧି ପ୍ରବୋଧିଲେ ।

୧୫୮ଶ ପଦ—'ତାରାକୁ ପ୍ରବୋଧିଲା ପରେ' ମୋଦେ ( ଆନନ୍ଦରେ ) ମିତ୍ରକୁ ( ସୁଗ୍ରୀବଙ୍କୁ ) ବାନରେନ୍ଦ୍ର ( କପିରାଜ ) କରି ଅଙ୍ଗଦେ ( ବାଳିପୁତ୍ର ଅଙ୍ଗଦଠାରେ ) ଯୁବରାଜ 'ପଦକୁ' ବାନ୍ଧି ( ବାନ୍ଧିଲେ ) । ୧୫୮ ।

୧୫୯ଶ ପଦ—ତାରା ପଟ୍ଟମହିଷୀ (ପାଟରାଣୀ) ହୋଇ ବିଦ୍ୟ (ପ୍ରଧାନ) ହେଲା । 'ରାମଙ୍କଠାରୁ ତାରା' ବର ପାଇ ସାଧ୍ୱୀପଦରେ ( ପତିବ୍ରତାରେ ) ବନ୍ଦ୍ୟା ( ବନ୍ଦନୀୟା ) ହେଲା * । ୧୫୯ ।

---

*—ତଦୁକ୍ତଂ—ଅହଲ୍ୟା ଦ୍ରୌପଦୀ ତାରା କୁନ୍ତୀ ମନ୍ଦୋଦରୀ ତଥା ।
ପଞ୍ଚକନ୍ୟାଃ ସ୍ମରେନ୍ନିତ୍ୟଂ ମହାପାତକ ନାଶନଂ । ଇତି ।

ବନନକୁ ମିହିର ଗୃହିଁ ଘ୍ରସେ । ବଡ଼ ଦୁଃଖୀ ହୋଇଛନ୍ତି ବନବାସେ ।୧୭୦।
ବିଚ୍ଛେଦିତ ହୋଇ ପ୍ରିୟୁବନ୍ତରେ । ବିଚ୍ଛେଦିତ ନାଡ଼ରେ ସ୍ମର-ଶରେ ॥
ବର୍ଷ ବରଷାଯାକ ରହି ପୁରେ । ବାଧା ହେବା ଲଙ୍କେଶେ ତଦୁତ୍ତରେ ॥
ବର୍ଷା ବଞ୍ଚୁ ଆମ୍ଭେ ମାଲ୍ୟବନ୍ତରେ । ବୋଲି ବିଜେ ଲକ୍ଷ୍ମଣ ସଙ୍ଗତରେ
ବୃତ ସେନାଙ୍ଗରେ ହୋଇ ସୁଗ୍ରୀବ । ବାହୁଡ଼ାଇ ଦେଲେ ପଥୁଁ ରାଘବ ॥
ବଳ ସାଜି ଆସ ନ ବଳୁଁ କଣ୍ଠ । ବୋଲି ସୌମିତ୍ରେୟୁ ବାଣୀ ପ୍ରକଟ ॥
ବିଭାବସୁବଂଶିକ ତ୍ୱରା ହୋଇ । ବସା ମାଲ୍ୟବନ୍ତରେ କଲେ ଯାଇଁ ।୧୭୬

---

୧୭୦ଶ ପଦ—'ରାଜା ହେଲେ ପରେ ସୁଗ୍ରୀବ' ମିହିର ( ରାମଙ୍କର ) ବନନକୁ ଗୃହିଁ ଘ୍ରସେ ( କହେ ), ବନବାସେ ( ବନରେ ବାସକଲେ ) ବଡ଼ ଦୁଃଖୀ ହୋଇଛନ୍ତି । ୧୭୦ ।

୧୭୧ଶ ପଦ—'ସୁଣି' ପ୍ରିୟୁବନ୍ତରେ ( ପ୍ରିୟାଦ୍ୱାରା ) ବିଚ୍ଛେଦିତ ( ବିରହିତ ) ହୋଇଅଛନ୍ତି, 'ପୁଣି' ନାଡ଼ରେ ( ନିତ୍ୟ ) ସ୍ମରଶରେ ( କାମବାଣରେ ) ବିଚ୍ଛେଦିତ । (ବିଖଣ୍ଡିତ ) 'ହୋଇଅଛି' । ୧୭୧ ।

୧୭୨ଶ ପଦ—'ଏଣୁ ଜଣାଯାଉଛି' ପୁରେ ( ଏ କିଷ୍କିନ୍ଧା ପୁରରେ) ରହି ବରଷା ଯାକ ( ଚତୁର୍ମାସ୍ୟା ବର୍ଷାମାସ ) ବର୍ଷ ତଦୁତ୍ତରେ ଲଙ୍କେଶେ ( ରାବଣ ସଙ୍ଗେ ) ବାଧା (ବିବାଦୀ) ହେବା । ୧୭୨ ।

୧୭୩ଶ ପଦ—ଆମ୍ଭେ ମାଲ୍ୟବନ୍ତରେ ( ମାଲ୍ୟବାନ୍ ପର୍ବତରେ ) ବର୍ଷା (ବର୍ଷାକାଳ ) ବଞ୍ଚୁ ( କଟାଉଛୁଁ ) । ବୋଲି (ଏମନ୍ତ କହି) 'ରାମ' ଲକ୍ଷ୍ମଣ ସଙ୍ଗତରେ ବିଜେ 'କଲେ' । ୧୭୩ ।

୧୭୪ଶ ପଦ—ସେନାଙ୍ଗରେ (ସେନାପଙ୍କ୍ତିରେ) ବୃତ ( ବେଷ୍ଟିତ ) ହୋଇ 'ଥିବା' ସୁଗ୍ରୀବ ( ସୁଗ୍ରୀବଙ୍କୁ ) ରାଘବ (ରାମ) ପଥୁଁ ( ପଥମଧ୍ୟରୁ ) ବାହୁଡ଼ାଇ ଦେଲେ । ୧୭୪ ।

୧୭୫ଶ ପଦ—କଣ୍ଠ ନ ବଳୁଁ ( ବଳି ନ ଯାଉ ) ବଳ ( ସୈନ୍ୟ ) ସାଜି ଆସ ବୋଲି (କହି) ସୌମିତ୍ରେୟୁ ( ଲକ୍ଷ୍ମଣ ) ବାଣୀ ପ୍ରକଟ 'କଲେ' ( କହିଲେ ) । ୧୭୫ ।

୧୭୬ଶ ପଦ—ବିଭାବସୁ ବଂଶିକ ( ସୂର୍ଯ୍ୟବଂଶୀ-ରାମ ) ତ୍ୱରା (ଶୀଘ୍ର) ହୋଇ ମାଲ୍ୟବନ୍ତରେ (ମାଲ୍ୟବାନ୍ ପର୍ବତରେ) ଯାଇଁ ବସାକଲେ । ୧୭୬ ।

ବିଶ୍ୱଧାରୀରୁ ହତ ହେଲେ କୀର୍ତ୍ତି । ବିଖ୍ୟାତବେ ଅସୁର ନାଶ କୀର୍ତ୍ତି ॥
ବସୁମନ୍ତଧରରେ ଶ୍ରେଷ୍ଠ ସାର । ବୋଲାଇଲା ରଚିଁ ରାମ ବିହାର ।୧୬୮
ବିଗତ ଦୁଃଖ ସୁଗ୍ରୀବ ସୁରଙ୍ଗେ । ବିଳସିତ ଯେ ତାରା ରୁମା-ସଙ୍ଗେ ।୧୬୯
ବିମଳିନ ଛଦ ଭ୍ରମର ପୁଞ୍ଜ । ବିରାଜିତ ଭ୍ରମଣରେ ସହଜ । ୧୭୦ ।
ବୁଧେ ବୁଝ ଗୀତ ହୋଇଣ ତୋଷ । ବିଂଶଅଷ୍ଟ ଅଧିକ ଛାନ୍ଦ ଶେଷ ।୧୭୧
ବାସ୍ତରି ଅଧିକ ଶତ ସୁପଦ । ବିହ୍ନୁ ସକଳ ହୃଦୟ ପ୍ରମୋଦ ।୧୭୨।
ବନ୍ଦେ ବୀରବର ଭଞ୍ଜ ଆନନ୍ଦେ । ବୈଦେହୀଶ ଚରଣାରବିନ୍ଦେ ।୧୭୩

---

୧୬୭ଶ ପଦ—ବିଶ୍ୱଧାରୀରୁ (ପୃଥ୍ୱୀରୁ) [1]କୀର୍ତ୍ତି (ପଙ୍କ) ହତ (ନାଶ) ହେଲେ ଅସୁରନାଶ କୀର୍ତ୍ତି ବିଖ୍ୟାତବେ (ଅସୁର ନାଶକର ଯଶ ବିସ୍ତାରବେ) ॥

୧୬୮ଶ ପଦ—'ମାଲ୍ୟବାନ୍ ପର୍ବତରେ' ରାମ ବିହାର ରଚିଁ (କରନ୍ତେ) ବସୁମନ୍ତ ଧରରେ (ପର୍ବତଙ୍କ ମଧ୍ୟରେ) ଶ୍ରେଷ୍ଠ 'ପର୍ବତଙ୍କର' ସାର ବୋଲାଇଲା । ୧୬୮ ।

୧୬୯ଶ ପଦ— ବିଗତ (ଦୁଃଖ ଦୂରହେବାରୁ) ସୁଗ୍ରୀବ [1] ସୁରଙ୍ଗେ (ସୁହର୍ଷରେ) ତାରା ରୁମା ସଙ୍ଗେ ବିଳସିତ (ବିହରିଲେ) । ୧୬୯ ।

୧୭୦ଶ ପଦ—ବିମଳିନ (ନିର୍ମଳ) ଛଦ (ଶ୍ୱେତଛଦ) ଭ୍ରମରପୁଞ୍ଜ (ଭ୍ରମର ସମୂହ) ଭ୍ରମଣରେ (ଭ୍ରମଣଦ୍ୱାରା) ସହଜ (ସ୍ୱଭାବରେ) ବିରାଜିତ ହେଲେ । ୧୭୦ ।

୧୭୧ଶ ପଦ-ବୁଧେ(ହେ ପଣ୍ଡିତମାନେ) ଗୀତ (ଏହି ଗୀତକୁ) ତୋଷ ହୋଇଣ ବୁଝ; ଅଷ୍ଟଅଧିକ ବିଂଶଛାନ୍ଦ (ଅଠାଇଶ ଛାନ୍ଦ) ଏଠାରେ ଶେଷ 'ହେଲା' । ୧୭୧ ।

୧୭୨ଶ ପଦ—ବାସ୍ତରି ଅଧିକ ଶତ ସୁପଦ (ଉତ୍ତମ ପଦ) ସକଳ 'ଜନ' ହୃଦୟ ପ୍ରମୋଦ ବିହ୍ନୁ (କରୁ) । ୧୭୨ ।

୧୭୩ଶ ପଦ—ବୈଦେହୀଶ (ଶ୍ରୀରାମଙ୍କ) ଚରଣାରବିନ୍ଦେ (ପାଦପଦ୍ମ ଦୁଇକୁ) ବୀରବର 'ନାମା' ଭଞ୍ଜ 'ଭକ୍ତ' ଆନନ୍ଦେ ବନ୍ଦେ । ୧୭୩ ।

—*—

---

୧—କୀର୍ତ୍ତିଃ ପ୍ରସାଦଯଶସୋର୍ବିସ୍ତାରେ କର୍ଦ୍ଦମେଽପିଚ ଇତିବିଶ୍ୱଃ ।

୧—ଭଙ୍ଗୋ ରଙ୍ଗୋ ରସେ ହର୍ଷେ ଶୃଙ୍ଗାରେ ସୁନ୍ଦରେ ଋଦ୍ଧି ।
ବେଶେ ନୃତ୍ୟାନ୍ତରେ ପୁଂସି ରଙ୍ଗଶବ୍ଦଃ ପ୍ରକୀର୍ତ୍ତିତଃ । ଇତି କୋଷଃ ।

# ଊନତ୍ରିଂଶ ଛାନ୍ଦ ।

ରାଗ କଲ୍ୟାଣଆହାରୀ ।

ବିବିରୋଧାଭାସ ପ୍ରକଟାଇ କବିରେ ବରଷାସମଯ୍ ସଞ୍ଚର ।
ବ୍ୟାପି ଶୋଭା ବଣେ ଭୟଙ୍କର ବଣେ ଗାଂଗସ ଘନାଘନ ହର
ବସନ୍ତି ଯେ । ବଡ଼ ଆନନ୍ଦରେ ଜୀବନ ।
ଧ୍ୱରେ କାଳିକା ମହିଷସନ୍ତାପ ନାଶି ପ୍ରମୋଦ କରେ ଦାନ ।୧।

ଊନତ୍ରିଂଶ ଛାନ୍ଦ ।

୧ମ ପଦ—ବରଷାସମୟ (ବର୍ଷାକାଳ) ସଂଚର (ପ୍ରଚଣ—ଉଣ୍ଡୁ) କବିରେ (କାବ୍ୟକର୍ତ୍ତାଙ୍କ ମନରେ) ୧ବିରୋଧାଭାସକୁ (ବିରୋଧାଭାସ ଅଳଙ୍କାରକୁ ) ପ୍ରକଟାଇ ( ପ୍ରକାଶ କରାଇଲା) । ଘନାଘନ ( ମତ୍ତ ଧାରୁକ କୁଞ୍ଜର ) ବ୍ୟାପି 'ବଣ' ଶୋଭା ବଣେ ( ବଣିଲା ), ଭୟଙ୍କର ବଣେ ( ବଣିଲା ) । ହର ( ସିଂହ ) ତାକୁ ଗରାସେ ( ଗ୍ରାସକଲେ ); ସେ ( କୁଞ୍ଜର ) ବଡ଼ ଆନନ୍ଦରେ ଜୀବନ ବସର୍ଜଇ ( ପ୍ରାଣ ଛାଡ଼େ ), ବିଧିରେ ( ଦୈବବଳେ ) କାଳିକା ( ଦୁର୍ଗା ) ମହିଷ ( ମହିଷାସୁରର ) ସନ୍ତାପ ନାଶି ପ୍ରମୋଦ ( ହର୍ଷ ) ଦାନକରେ ( ଦେଲେ ) । ଏହା କହିଲେ ବିରୋଧ ହେଲା । ବିରୋଧ ପରିହାର ଯଥା—ଘନାଘନ ( ମେଘ ) ଶୋଭାବଣେ ( ଶୋଭିତ ହୋଇଥିବା ବଣମାନଙ୍କରେ ) ବ୍ୟାପି ଭୟଙ୍କର ବଣେ ( ବଣିଲା ) । ହର ( ଚନ୍ଦ୍ର ସୂର୍ଯ୍ୟଙ୍କୁ ) ଗରାସେ ( ଆଚ୍ଛନ୍ନ କଲା ) ✻ । ସେ ( ବର୍ଷାକୁ ମେଘ ) ବଡ଼ ଆନନ୍ଦରେ ଜୀବନ (ଜଳ) ବସର୍ଜଇ (ମୁଞ୍ଚଇ) । ବିଧିରେ ( ଦୈବବଶେ ) ୨କାଳିକା ( ମେଘଜାଳ ) ୩ମହିଷ 'ପଶୁର' ସନ୍ତାପ ( ଉତ୍ତାପ )

୧—ଆଭାସତ୍ୱେ ବିରୋଧସ୍ୟ ବିରୋଧାଭାସ ଇଷ୍ୟତେ । ଇତ୍ୟଳଂକାରେ ।
✻---ସଲିଳେ ନିଧିତଂ ରଜଃ ଷିତୌ ।
ରବିଚନ୍ଦ୍ରାବପି ନୋପଲକ୍ଷିତୌ ! ଇତି ଘଟକର୍ପରେ ।
୨--ମେଘଜାଲେଽପି କାଳିକା ।
୩---ଲୁଲାପୋ ମହିଷୋ ବାହଦ୍ୱିଷତ୍ କାସର ସୈରଭା ଇତ୍ୟମରଃ ।

ବିଜନିତ କଲା ଧ୍ୱାନ ଅବିରତେ ଚମକ ରହିଲା ଶରଭେ ।
ବିହ୍ୱିତ ଦ୍ୱିଜବ୍ରଜର ଜଷଣିକୁ କରକେ ପୁଣ ସେ ଆରମ୍ଭ ।

---

ନାଶି ପମୋଦ (ଆନନ୍ଦ) ଦାନକଲା ( ଦେଲା ) । 'ସଜଳ ମେଘ ପ୍ରଭଞ୍ଜନରେ ବ୍ୟାପି ଅନ୍ଧାର କରି ରବି ସୂର୍ଯ୍ୟଙ୍କୁ ଘୋଡ଼ାଇ ଜଳବର୍ଷି ମର୍ତ୍ତ୍ୟରି ଦେହର ଉତ୍ତାପ ନାଶିଲା ଏହି ଭାବ' । ୧ ।

୨ୟ ପଦ—ଶ୍ୱାନ ( କୁକୁର ) ଅବି ( ମେଣ୍ଢାଠାରେ ) ରତେ ( ରତ ହୋଇ ) ବି ( ପକ୍ଷୀ ) ଜନିତ ( ଜାତ ) କଲା । ଅଥବା ଶ୍ୱାନ ( କୁକୁର ) ରତେ ( ରତରେ ) ଅବି ( ମେଷ ) ବିଜନିତ ( ଜାତ ) କଲା । ୧ଶରଭେ ( ଓଟକୁ ) ଚମକ ରହିଲା ( ଚକିତାଇ ଦେଲା ) । କୁକୁର ମେଷଠାରେ ସନ୍ତାନୋତ୍ପତ୍ତି କଲା ଏବଂ ଓଟକୁ ଚମତ୍କାର ଦେଲା ଏହି ଭାବ; ବିରୋଧ ପରିହାର ଯଥା—'ସେ ମେଘ' ଅବିରତେ-( ନିରନ୍ତର ) ଧ୍ୱାନ ( ଧ୍ୱନି ) ବିଜନିତ କଲା ( ଗର୍ଜିଲା ), କେଣୁ' ଶରଭେ ( ଅଷ୍ଟାପଦ ମୃଗଠାରେ ) ଚମକ ରହିଲା ( ଜାତକଲା ) । ସେ ( କୁକୁର ) ପୁଣି ୩କରକେ ( କମଣ୍ଡଳୁ ପଦ୍ମାର ଭଣି ) ଦ୍ୱିଜବ୍ରଜର (୍ବିପ୍ରବୃନ୍ଦର ) ବିହ୍ୱିତ ( ଅଦ୍ଭୁତ ) ଜଷଣିକୁ ( କଷ୍ଟକୁ ) ଆରମ୍ଭେ ( ଆରମ୍ଭିଲା ) । ପରିହାର ଯଥା—ସେ ( ମେଘ ) ବିହ୍ୱିତ ( ଅଦ୍ଭୁତ ହୋଇ ) କରକେ ( କୁଆପଥର ଘାତରେ ) ଦ୍ୱିଜବ୍ରଜର ( ପକ୍ଷିସମୂହର ) ଜଷଣିକୁ ( କଷ୍ଟକୁ ) ଆରମ୍ଭେ ( ଆରମ୍ଭକଲା ) । ବୃଷଶ୍ରବାର ( ଶିବଙ୍କର ) ବାଣାସନ ( ଧନୁ ) ହୋଇ ଯେ ଜାତ ( ମେରୁ ) ବେଢ଼ିତ ସ୍ୱରୂପ (ମତ୍ସ୍ୟ ସ୍ୱରୂପକୁ) ବିହ୍ୱିତ (ବିଧାନକରି) ତୃଶିତ (ଶୀଘ୍ର) ୪ନାକରେ ( ସ୍ୱର୍ଗପୁରରେ ) ରଙ୍ଗେ ( ଅନୁରାଗରେ ) ବିହ୍ୱରିତ ( ବିହାର କଲା) । ଉପ୍ରରିହାର ଯଥା—୫ବୃଷଶ୍ରବାର ( ଇନ୍ଦ୍ରଙ୍କର ) ବାଣାସନ ( ଧନୁ ) ଜାତ

---

୧—ଶରଭସ୍ତୁ ପଶୋଭୂନ୍ନ ଭରଭେ ବାନରଭିଦ୍ୱାଥ ମେଦନୀ ।
୨ —ଅଷ୍ଟାପଦସ୍ତୁ ଶରଭ ଇତି ।
୩—ଦ୍ୱସ୍ଥୋବର୍ଷୋପଳେ ନ ସ୍ତ୍ରୀ କରକେ ଚ କମଣ୍ଡଳୌ ।
୪—ଆକାଶେ ତ୍ରିଦିବେ ନାକ ଇତ୍ୟମରଃ ।
୫—ବୃଷଶ୍ରବା ସୁନାସୀର ଇତ୍ୟମରଃ ।

ବୃଷ୍ଟିଶ୍ରାବାର । ବାଣାସନ ଯେ ହୋଇ ଜାତ ।
ବିଦ୍ଧିତ ରୋହିତସ୍ୱରୂପ ତ୍ୱରିତ ନାକରେ ରଙ୍ଗେ ବିହରିତ । ୬ ।
ବିଷ୍ଣୁପଦ ଲୀନ ହେବାରେ ଚଞ୍ଚଳା ଜ୍ୟୋତି ପ୍ରକାଶି କଲା ଲୀଳା ।
ବିଷକଣ୍ଠ ମୁଖେ ବିଲସେ କୁଳଶେ ଗିରିଜା ସଂଘାତି ହୋଇଲା ।

---

ହୋଇ ତ୍ୱରିତ (ବେଗରେ) ୭ ରୋହିତ ସ୍ୱରୂପ (ରଜୁ ସ୍ୱରୂପକୁ) ବିଦ୍ଧିତ (ବିଧାନ କରି) ନାକରେ (ଆକାଶରେ) ରଙ୍ଗେ (ସୁନ୍ଦରଭାବରେ) ବିହରିତ (ବିହରିଲା) । ମେଘ ଗର୍ଜିବାରୁ ମୃଗମାନେ ଚମକି ପଡ଼ିଲେ, କୁଆପଥର ପଡ଼ିବାରୁ ପକ୍ଷିମାନେ କଷ୍ଟ ପାଇଲେ ଏବଂ ଆକାଶରେ ଇନ୍ଦ୍ରଧନୁ ପଡ଼ିଲା ଏହି ଭାବ । ୨

ଅସ୍ୟ ପଦ— ୧ ବିଷ୍ଣୁପଦ (ବିଷ୍ଣୁ ସ୍ଥାନ ବା ବିଷ୍ଣୁ ଏହି ଯେଉଁ ପଦ) ଲୀନ ହେବାରେ (ନାଶ ହେବାରେ) ୨ ଚଞ୍ଚଳା (ଲକ୍ଷ୍ମୀ) 'ଆପଣାର' ଜ୍ୟୋତି ପ୍ରକାଶି ଲୀଳା କଲା (କଲେ) । କୁଳଶେ (କୁଳିଶ-ମୀନଦ୍ୱାରା) ଗିରିଜା (ପାର୍ବତୀ) ସଂଘାତି ହୋଇଲା (ଘାତ ହେଲେ) । ବିଲୋକନେ (ତାହା ଦେଖି) ବିଷକଣ୍ଠ (ମହାଦେବ) ମୁଖେ (ମୁଖରେ) ବିଲସେ (ବିଳସିଲେ) । 'ବିଷ୍ଣୁପଦ ଲୀନ ହେବାର' ବିଲୋକନେ (ଦେଖନ୍ତେ) ଯୋଗୀଏ (ଯୋଗିଜନେ) ଝରସ ନୋହିଲେ । ବିକାଶ ପୁଷ୍ପେ (ବିକୋବନ୍ତ ହେବାରେ) ସୁଜାତି (ଉତ୍ତମ ଜାତି) ସୁମନାଏ (ସ୍ତ୍ରୀମାନେ) ମଧୁପ (ମଦ୍ୟପଙ୍କ) ମନକୁ ମୋହିଲେ । ଏ ସବୁ ବିରୋଧ ହେଲା । ତତ୍ପରିହାର ଯଥା— ବିଷ୍ଣୁପଦ (ଆକାଶ) 'ମେଘରେ' ଲୀନ ହେବାରେ ଚଞ୍ଚଳା (ବିଜୁଳୀ) ଜ୍ୟୋତି ପ୍ରକାଶ ଲୀଳା କଲା (ଖେଳିଲା) ।

---

୭—ରୋହିତଂ କୁଙ୍କୁମେ ରକ୍ତେ ଋଜୁଶକ୍ରଶରାସନେ ।
ପୁଂସି ସ୍ୟାନ୍ ମୀନମୃଗୟୋର୍ଭେଦେ ରୋହିତକଦ୍ରୁମେ । ଇତି ବିଶ୍ୱଃ ।

୧—ବିୟଦ୍ବି ପଦଂ ବା ତୁ ଇତ୍ୟମରଃ ।

୨—ଚଞ୍ଚଳା ତୁ ତଡ଼ିଲ୍ଲକ୍ଷ୍ମ୍ୟୋରିତି ମେଦିନୀ ।

୩—ଲୀଳାଂ ବିଦୁଃ କେଳିବିଳାସଖେଦାଃ ।

୪—କୁଳଶୋ ନ ସ୍ତ୍ରୀ ଦମ୍ଭୋଳୌ ନାଙ୍ଗ୍ୟାନ୍ତରେ ଇତି ମେଦିନୀ ।

ବିଲେକନେ ଯେ । ବିରସ ଯୋଗୀଏ ନୋହିଲେ ।
ବିକାଶ ପୁଷ୍ପେ ସୁଜାତି ସୁମନାଏ ମଧୁପ ମନକୁ ମୋହିଲେ । ୩ ।
ବିଦ୍ଧପୁତ୍ରକୁ ଭକ୍ଷିବା ଇଚ୍ଛା କଲେ ବିଚ୍ଛେଦ ହୋଇଲା ଜନେ ।
ବିଗୃହ ପଥିକ ପଦ ବିସରଲେ ଅତି ଉତ୍ସନ୍ନ ଜାତ ମନେ ।

---

୪ କୁଳଶେ (ବନରେ) ଗିରଜା (ଗିରଜାତ କ୍ଷୁଦ୍ର ପର୍ବତ) ସଂଘାତି (ଘାତ) ହୋଇଲା । 'ଏଣୁ' ବିଷବଣୁ (ହଂସମାନେ), ମାନସରୋବରକୁ ଯିବାପାଇଁ' ✻ ପୁରେ (ଉତ୍ତମ ଆକାଶରେ) ବିଲସେ (ବିହାର କଲେ) । ବିଲେକନେ (ଘନକାଳ ଦେଖି) ଯୋଗୀଏ (ସଂଯୋଗୀ ପୁରୁଷେ) ବିରସ ନୋହିଲେ ✻ 'ଘନକାଳ ତାହାଙ୍କର ପ୍ରିୟ' ବିକାଶ ପୁଷ୍ପେ (ପ୍ରଫୁଲ୍ଲ କୁସୁମରେ) ସୁଜାତି (ଉତ୍ତମ ଜାତି ଲତା) ✲ ସୁମନା (ମାଳତୀ ଲତା) ମଧୁପ (ଭ୍ରମର) ମନକୁ ମୋହିଲେ । ୩ ।

୪ର୍ଥ ପଦ—ବିବୋଧ—ବିଚ୍ଛେଦ ହୋଇଥିଲା (ବିଶେଷରେ ଛେଦ ହୋଇଥିବା) ଜନେ ବ୍ରହ୍ମପୁତ୍ରକୁ (ବଶିଷ୍ଠ ବା ନାରଦଙ୍କୁ) ଭକ୍ଷିବା (ଖାଇବାକୁ) ଇଚ୍ଛା କଲେ । ୧ବିଗୃହ (ଦେବତାମାନେ) ପଥିକ ପଦ (ପଥିକମାନଙ୍କ ସ୍ଥାନକୁ) ବିସରଲେ (ବିଶେଷରେ ଯିବା ବୋଲି) ଅତି ଉତ୍ସନ୍ନ (ଉଦ୍‌ବେଗକୁ) ଜାତ କଲେ । ଯହିଁରେ (ଯେଉଁ କାଳରେ) ଅଗତି (ଗତିହୀନ ଜନ) ବଦ୍ଧ (ଗୃହବଦ୍ଧ) ସଦା (ସର୍ବଦା) ଗତି (ଗମନ) ବିହେ (କରେ) । ବିଟପ (ବିଟପୁରୁଷେ) ବିନାଶେ (ବିନାଶ ହୁଅନ୍ତେ) ଗଣିକା ପନ୍ତ (ବେଶ୍ୟା ସମୂହ) ଦିବା ରାତି (ଅହୋରାତ୍ର) ସୁମନରେ (ସୁଚିତ୍ତରେ) ହସେ (ହସିଲା) । ତତ୍ପରହାର—ବିଚ୍ଛେଦ ହୋଇଥିଲେ (ବିରହ ହୋଇଥିବା) ଜନେ ୨ବ୍ରହ୍ମପୁତ୍ର (ବିଷ) ଭକ୍ଷିବା ଖାଇବାକୁ ଇଚ୍ଛା କଲେ ।

---

✻ହଂସପଂକ୍ତି ରପି ନାଥ ସଂପ୍ରତିଚାପ୍ରସ୍ଥି ବିଯୁକ୍ତିମାନସଂ ପ୍ରତି ଇତି ଘଟକର୍ପରେ
୩—ତଦୁକ୍ତଂ ରତ୍ନ ବର୍ଣ୍ଣନେ—

ସମାଗତେ ରାଜବଦୁନ୍ନତଦ୍ୟୁତିର୍ଘନାଗମଃ କାମିଜନପ୍ରିୟଃ ପ୍ରିୟେ ।ଇତି।
✲—ସୁମନା ମାଳତୀ ଜାତ୍ୟମରଃ ।

୧—ଗଗନେ ବିବୁ ଦାହ୍ୱଜ ଇତ୍ୟେକାକ୍ଷରଃ ।
୨—ବ୍ରହ୍ମସୁତଃ ପ୍ରଦୀପନଃ ଗରଦୋ ବତ୍ସନାଭଶ୍ଚ ବିଷଭେଦା ଅମୀ ନବ ଇତ୍ୟମରଃ ।

ବିନ୍ଧେ ଅଗତ । ବହୁ ଯହିଁରେ ସଦାଗତ ।
ବିଟପ ବିନାଶେ ସୁମନରେ ହସେ ଗଣିକାପନ୍ତି ଦବାଗ୍ରତ । ୪ ।
ବିମଳ କକୁଭ କଦମ୍ବ କକୁଭ କଦମ୍ବ ମଳିନ ରଭସେ ।
ଉଦିତ ଉଡୁପ ପୁଷ୍କରେ ଉଡୁପ ପୁଷ୍କରେ ଆଉ ଯେ ନ ଦିଶେ ।

---

ପଥିକ ( ପଥିକମାନେ ) ପଥ ( ବାଟ ) ବିସରିଲେ ( ସରି ଯିବାର ) ବିଗ୍ରହ (ବିଗ୍ରହ କରି ) ମନେ ( ମନ ମଧ୍ୟରେ ) ଅନ୍ତ (ଅତ୍ୟନ୍ତ ) ଉସନ୍ନ ( ଉଦ୍‌ବେଗ ) ଜାତ କଲେ । ୩ ସଦାଗତ (ଝଞ୍ଜାବାତ ) ଯହିଁରେ ( ଯେଉଁ କାଳରେ ) ବହୁ ଅଗତ ( ଗମନାଭାବକୁ ) ବିନ୍ଧେ ( କରେ ) ୪ବିଟପ ( ପଲ୍ଲବମାନେ ) ବିନାଶେ ( ବିନାଶ ହେବାରେ ) ୫ଗଣିକା ପନ୍ତି ( ଯୂଥିକା ଶ୍ରେଣୀ ) ଦବାଗ୍ରତ ( ସଦ୍ୟୋଗ୍ରତ ) ସୁମନରେ ( ପୁଷ୍ପମାନଙ୍କରେ ) ହସିଲ । 'ଘନକାଳ ଦେଖି ବିରହୀ ବିଷ ଖାଇବାକୁ ଇଚ୍ଛିଲେ, ପଥିକେ ବାଟ ସରିଯିବା ପାଇଁ ଚଞ୍ଚଳ ହେଲେ, ଝଞ୍ଜାବାତ ଗତି ରୋଧ କଲା, ପତ୍ର ଝଡ଼ି ଯିବାରୁ ଯୂଥିକାଫୁଲ ଫୁଟିଲା ଏହି ଭାବ' । ୪ ।

୫ମ ପଦ—ବିରୋଧ— ୧କକୁଭ କଦମ୍ବ ( ଦିଗସବୁ ) ବିମଳ ( ନିର୍ମଳ ) 'ହେଲେ' କକୁଭ କଦମ୍ବ ( ବୃକ୍ଷସବୁ ) ରଭସେ ( ବେଗରେ ) ମଳିନ ହେଲେ । ୨ଉଡୁପ ( ଚନ୍ଦ୍ର ) ୩ପୁଷ୍କରେ ( ଆକାଶରେ ) ଉଦିତ ହେଲେ ଆଉ ଉଡୁପ ( ଚନ୍ଦ୍ର ) ପୁଷ୍କରେ ନ ଦିଶେ ( ନ ଦିଶିଲେ ) । ବରହୀ ( ମୟୂରମାନେ ) ଶିଖା ( ପୁଚ୍ଛ ) ଟେକି ବନେ ( ବନରେ ) ନୃତ୍ୟକଲେ । ତହିଁ ( ସେକାଳେ ) ବନେ ( ବନରେ ) ଦହିହି ଶିଖା ( ମୟୂର ପୁଚ୍ଛ ) ସମସ୍ତ ପ୍ରକାରେ ( ସର୍ବପ୍ରକାରେ ) ହତ ହେଲେ ( ନାଶହେଲେ )

---

୩—ଝଞ୍ଝାନିଲଃ ପ୍ରାବୃଷଞ୍ଜୋ ବସନ୍ତୋ ମଳୟାନିଲ ଇତି ନିକାଣ୍ଡଶେଷଃ ।
୪—ବିଟପଃ ପଲ୍ଲବେ ଶିଙ୍ଗେ ବିସ୍ତାରେ ସ୍ତମ୍ବଶାଖୟୋଃ ଇତି ବିଶ୍ୱଃ ।
୫—ଗଣିକା ଯୂଥିକା ବେଶ୍ୟା ଚଳାରି କରଣୀଷୁ ଚେତି ମେଦିନୀ ।
୧—ଦିଶସ୍ତୁ କକୁଭଃ କାଷ୍ଠା ଇତ୍ୟମରଃ । କକୁଭୋ ବୃଗଭେଦେଽପି ବୀଣାଙ୍ଗେଽଙ୍କ୍ରୁନ ପାଦପେ ଇତି ବିଶ୍ୱଃ ।
୨—ଉଡୁପଃ ପଶ୍ଚନ୍ଦ୍ର ଭେଲୟୋଶତ୍ୟଜୟଃ ।
୩—ପୁଷ୍କରଂ କରିହସ୍ତାଗ୍ରେ ବାଦ୍ୟଭାଣ୍ଡମୁଖେ ଜଲେ ।
ବ୍ୟୋମ୍ନି ଖଡ୍‌ଗଫଲେ ପଦ୍ମେ ତୀର୍ଥୌଷଧିବିଶେଷୟୋରିତ୍ୟମରଃ ।

ବନେ କଲେ ଯେ ବରହୀ ଶିଖା ଟେକ ନୃତ୍ୟ ।
ବନେ ହେଲେ ଯେ ବରହୀ ଶିଖାତହିଁ ସମସ୍ତ ପରକାରେ ହତ ।୬।
ବାହାରୁଁ କାଦଳୀ ଭକ୍ଷିଲେ କାଦଳୀ ହୋଇ ଅତିଶଯ୍ଯ ଲାଲସ ।
ବିପୁଳ କାମଦର ଦର ନୋହିଲା କାମେ ଯଦଦୂର ହରଷ ।

---

ଯଶବ୍ଦାର—କକୁଭ ( ଅର୍ଜୁନ ବୃକ୍ଷ ) କଦମ୍ବ ( କଦମ୍ବ ବୃକ୍ଷ ) ବିମଳ ( ନିର୍ମଳ ) 'ହେଲେ' । କକୁଭ କଦମ୍ବ ( ବଗସବୁ ) ବଭସେ ( ସତ୍ୱରେ ) ମଳିନ 'ହେଲେ' ଉଡୁପ ( ଭେଳାମାନେ ) ପୁଷ୍କରେ ( ଜଳରେ ) ବହତ ( ପ୍ରକାଶ ହେଲେ ) ଉଡୁପ ( ଚନ୍ଦ୍ର ) ପୁଷ୍କରେ ( ଆକାଶରେ ) ଆଉ ନ ବଶେ ( ନ ଦଶିଲେ ) । ବନେ ( ବନମଧ୍ୟରେ ) ୪ବରହୀ ( ମୟୂରମାନେ ) ଶିଖା ( ପୁଚ୍ଛ ) ଟେକ ନୃତ୍ୟ କଲେ * ବନେ ( ଜଳରେ ) ବରହିଶିଖା ( ବନାଗ୍ନି ଶିଖା ) ତହିଁ ( ସେହି ବର୍ଷାକାଳରେ ) ସମସ୍ତ ପ୍ରକାରେ ହତ ହେଲେ । ୬ ।

୭ମ ପଦ—ବିଶେଷ—କଦଳୀ 'ମାନେ' ବାହାରୁଁ ( ବାହାରନ୍ତେ ) କଦଳୀ 'ମାନେ' ଅତିଶଯ୍ଯ ଲାଳସ ହୋଇ ଭକ୍ଷିଲେ । ବିପୁଳ ( ବଡ଼ ) କାମଦର ( କାମଭୟ ) ଦୂର ନୋହିଲା 'ପୁଣି' କାମଦର ଦୂର ହୋଇ ହରଷ ( ହର୍ଷଜାତ ହେଲା ) । ବରକୋଳରେ ବସି ଗନ୍ଧବତୀ ଶୋଭନ ହେଲା । ବରକୋଳରେ ଗନ୍ଧବତୀର ଅଶେଷ ସହଜେ ଜନନ ହୋଇଲା ( ଜାତ ହେଲ ) । ପଶବ୍ଦାର—୧କଦଳୀ ( ଭୂକଦଳୀ ବୃକ୍ଷ ) ବାହାରୁଁ ( ବାହାରନ୍ତେ—ଜାତହୁଅନ୍ତେ ) କଦଳୀ ( ମୃଗମାନେ ) ଅତିଶଯ୍ଯ ଲାଳସ ହୋଇ ( ଅତି ତୃଷ୍ଣାତୁର ) ଭକ୍ଷିଲେ । ବିପୁଳ ( ବୃହତ୍ ) କାମଦର ( କାମଭୟ ) ଦୂର ନୋହିଲା । ୨କାମେ ( ଯଥେଷ୍ଟରେ ) ୩ଦରଦୂର

---

୪—ମୟୂରେ ବର୍ହିଣୋ ବର୍ହୀ,
ବର୍ହି ଶୁଷ୍ମା କୃଷ୍ଣବର୍ତ୍ମା ଇତ୍ୟମରଃ ।

*—ଉପେତି ଘନମଣ୍ଡଳୀ ନଟତି ନୀଳକଣ୍ଠାବଳୀତି ପ୍ରୟୋଗଃ ।

୧—କଦଳୀ କନ୍ଦଳୀଚୀନଶ୍ଚ ମୃତ୍ସୁପ୍ରିୟକାବପୀତ୍ୟମରଃ ।

୨—କାମଂ ପ୍ରକାମଂ ପର୍ଯ୍ୟାପ୍ତଂ ନିକାମେଷ୍ଟଂ ଯଥେପ୍ସିତଂ ଇତ୍ୟମରଃ ।

୩—ଭେକେ ମଣ୍ଡୂକବର୍ଷାଭୂ ଶାଲୁରପ୍ଲବଦର୍ଦୁରା ଇତ୍ୟମରଃ ।

୬ ବର-କୋଳରେ । ବସି ଗନ୍ଧବତୀ ଶୋଭନ ।
ବର-କୋଳରେ ଗନ୍ଧବତୀ ଅଶୋଭା ସହଜେ ହୋଇଲା ଜନନ ।୭।
ବିଯୋଗୀ ସରସେ ସଂଯୋଗୀ ସରସେ ହୋଇ ଯେ ରହିଲେ ସରସୀ
ବିଗତ ହେଲେ ଦିନଚନ୍ଦ୍ର ଆଗତ ହୋଇଲେ ଘନଚନ୍ଦ୍ର ଆସି ।

(ଦର୍ଦ୍ଦୁର—ଭେକମାନେ) ସ୍ଥିରପ୍ରାୟ 'ହେଲେ' । ବର (ଶ୍ରେଷ୍ଠ) ୪ କୋଳରେ (ଉତ୍ସଙ୍ଗ—ଭେଳାରେ) ବସି ✤ ଗନ୍ଧବତୀ (ବ୍ୟାସ ଜନନୀ) ୬ଶୋଭନ (ଶୋଭା ପାଇଥିଲେ) ଏ କାଳରେ ବର (ଶ୍ରେଷ୍ଠ ନାୟକ) କୋଳରେ ବସି ଗନ୍ଧବତୀ (ସୁବାସିନୀ ସ୍ତ୍ରୀ) ଶୋଭନ (ଶୋଭାପାଇଲେ) ସହଜରେ ବରକୋଳେ (ଯକ୍ଷବରାହଙ୍କଠାରେ) ଗନ୍ଧବତୀ (ମସ୍ୱା) ଅଶୋଭା ଜନନ (ଜାତ) ହୋଇଥିଲା ✻ କାହିଁକନା, 'ଦର୍ଦ୍ଦୁର' ଅଗ୍ରରେ ପୃଥିବୀ ଧର ଥିବାରୁ ଭୟରେ କମ୍ପିତ ହୋଇ' 'ଏ ଘନ କାଳରେ'-ବର କୋଳେ (ମହାବରାହସ୍ୱାମୀଙ୍କ ଦ୍ୱାରା) ଗନ୍ଧବତୀ (ପୃଥିବୀର) ଅଶୋଭା ସହଜରେ ଜନନ (ଜାତ) ହୋଇଲା । ୭ ।

୭ମ ପଦ—ବିଗ୍ରହ—୧ସରସୀ (କାସାରମାନେ) ୨ସାରସେ (ସାରସ-ମାନଙ୍କରେ) ବିଯୋଗୀ ହେଲେ, ପୁଣି ସାରସେ (ସାରସମାନଙ୍କରେ) ସଂଯୋଗୀ ହୋଇ ରହିଲେ । ଦିନଚନ୍ଦ୍ର ବିଗତହେଲେ, ପୁଣି ଘନଚନ୍ଦ୍ର ଆସି ଆଗତ ହୋଇଲେ । ତାଲନାଶନ ତାଳପ୍ରାଚୁର୍ଯ୍ୟ ହେଲେ । ପକ୍ଷାନ୍ତର ।— ସରସୀ (ସରସର୍କ) ସାରସେ (ହଂସମାନଙ୍କରେ) ବିଯୋଗୀ (ବିଚ୍ଛେଦୀ) ହେଲେ ଏବଂ ସାରସେ (ପଦ୍ମମାନଙ୍କରେ) ସଂଯୋଗୀ ହୋଇ ରହିଲେ । ଦିନଚନ୍ଦ୍ର (ଦିବସ ସମୂହ) ବିଯୋଗୀ (ନାଶ) ହେଲେ, ଏଣୁ ଆଗତ

୪—କ୍ରୋଡ଼ୋ ବରାହୋତ୍ସଙ୍ଗଭେଲକେ ଇତି ମେଦିନୀ ।
✤—ଅଥ ଗନ୍ଧବତୀ ପୃଥ୍ୱୀ ପୁଙ୍ଗନ୍ଧବ୍ୟାସମାତୃଷୁ ।
୬—ସୁଷମଂ ସାଧୁ ଶୋଭନମିତ୍ୟମରଃ
✻ ଦଂଷ୍ଟ୍ରାଙ୍କୁରାନ୍ତ କୁଟିଲ୍ୟାଙ୍କିତ ଧୃତବସୁଧା ଇତି ପ୍ରୟୋଗଃ ।
୧—କାସାରଃ ସରସୀ ସର ଇତ୍ୟମରଃ
୨--ସାରସୋ ବ୍ୟାଘ୍ରୋତେ ହଂସେ ଚନ୍ଦ୍ରେ, କ୍ଲୀବଂ ସରୋରୁହେ ଇତି ମୁଦ୍ରାଦକରଃ ।

ବାଳନାଶନ । ବାଳୀପ୍ରୀତିମନ୍ତ୍ର ଶ୍ରବଣ ।
ବନଦନନଦ କର ପଗ୍ଭରିଲେ ଶୁଣି ସୁଲକ୍ଷଣ ଲକ୍ଷ୍ମଣ । ୭ ।
ବୋଲେ ଘଟ ଘଟ କେଉଁ ଘାଟକାର ଏହି କି ଘଟ ଘଟ ନେବ ।
ବଦୂର ଧନ ଯାହାର ତାକୁ ଘୋଟ ଲଗାଇ କି କଲ ଦଇବ ।
ବୁଲେ ତା ଚ୍ଚର । ବୃତ୍ତ ଏଣୁ କାଳକଣ୍ଟକେ ।
ବେଭ୍ରରେ ମୁ ବୋଲି ଚିହ୍ନି ନ ପାରନ୍ତି ପୁଚ୍ଛନ୍ତି କୋବା କୋବାଡାକେ

(ପ୍ରଥମରୁ ତ ) ଚକ୍ର ( ଚକ୍ରବାକପକ୍ଷୀମାନେ ) ଆସି ଦ୍ବୀନ (ଦୁଃଖୀ) ହୋଇଲେ । ବାଳୀ ( ଜଳପ୍ରିୟାଠାରେ ) ପ୍ରୀତିମନ୍ତ୍ର (ପ୍ରୀତିଯୁକ୍ତ) ବାଳ-ନାଶନ ( ବାଳକାନନର ନାଶକ ସ୍ୱର ) ବନଦ ନନଦ (ମେଘଧ୍ୱନି) ଶ୍ରବଣ 'କର' ପଗ୍ଭରିଲେ (କହିଲେ), ସେ ସ୍ୱ ସଲକ୍ଷଣ ଲକ୍ଷ୍ମଣ (ଲକ୍ଷଣାଦନ୍ତ ଲକ୍ଷ୍ମଣ) ଶୁଣ । ଜଳପୂର୍ତ୍ତି ଯୋଗୁଁ ସରୋବରରୁ ହଂସମାନେ ଗ୍ଭଲିଗଲେ ଏବଂ ପଦ୍ମରେ ସରୋବର ପୂର୍ତ୍ତି ହେଲା, ସମସ୍ତ ଆବୃତ ହେବାରୁ ଚକ୍ରବାକ ବିଚ୍ଛେଦ ଭୟରେ ଦୁଃଖିତ ହେଲା ଓ ମେଘଧ୍ୱନି ଶୁଣି ରାମ କହିଲେ 'ଏ କର' ? ଶୁଣ ଏହି ଭାବ । ୭ ।

୮ମ ପଦ—କେଉଁ ଘଟକାର ( ଘଟୁଆଳ ) ଘଟ ଘଟ 'ଯାହା' ବୋଲେ ( ଘଡ଼ ଘଡ଼ ଶବ୍ଦ କରୁଅଛି ) ଏହି କି 'ମୋ' ଘଟ ( ପ୍ରାଣ ) ୧ ଘଟ (ଘଟକୁ ନେବ) ଦୂରର ( ଦୂର ହୋଇଅଛି ) ଏନ ( ପ୍ରିୟା ). ଯାହାର ତାକୁ ଘୋଟ 'ବୋଲି' ଲଗାଇ 'ଦେଇଅଛି' କି ? ଦଇବ (ବିଧାତା) କି କଲ ! ଏଣୁ ତା ( ସେ ଘଟୁଆଳର ) ଚର ୨କାଳକଣ୍ଟକେ ( ଡାହୁକମାନେ ) ବୃତ (ବ୍ୟାପ୍ତ) 'ହୋଇ' ବୁଲେ ( ବୁଲୁ ଅଛନ୍ତି ) ବେଭ୍ରରେ 'ମୁଁ' ବୋଲି ଚିହ୍ନି ନ ପାରି ଡାକେ (ଡାକରେ) କୋବା କୋବା ( କେଉଁ ଲୋକ କେଉଁ ଲୋକ ସେ ଏମନ୍ତ ) ପୁଚ୍ଛନ୍ତି । ଘନକାଳରେ ଡାହୁକେ ରବନ୍ତି ଓ ଘଡ଼ଘଡ଼ି ମାରେ ସେ ଧ୍ୱନି ଚରକଣ୍ଟକ ଏହି ଭାବ ।୮।

୩—ଚକ୍ରଃ କୋକେ ପୁମାନ୍ କ୍ଲୀବଂ ବ୍ରଜେ ସୈନ୍ୟ ରଥାଙ୍ଗୟୋରର ମେଦିନୀ ।
୧—ଘଟଶବ୍ଦୋ ଦେହବାଚୀ ଅବସ୍ଥରେ ଜାବସ୍ଥିକା ଲକ୍ଷଣା ।
୨—ଦାତ୍ୟୂହସ୍ତୁ କାଳକଣ୍ଟକ ଇତ୍ୟମରଃ ।

ଏ ଘଟକାଧରର ଘଟ ଘେନିଲେ ଅଛନ୍ତି ମନ୍ଦେ କଷ୍ଟୁଁ ତରଣେ ।
ବାର୍ତ୍ତା ପାଇ ପ୍ରାଣେଶ୍ୱରୀ ଅନୁସରି ସୁଗତି ଅଛି ତା ଚରଣେ ।
ବନ୍ଧୁ ସେ ପୁଣି । ବାରି ଦାନ ନେନ୍ଦ କରନ୍ତେ ।
ବାକ୍ୟ ହା ନାଥ ଯୁକ୍ତେ ହେବ ସୁଗତି ଧାତା ବନ୍ଦିବା ଏ କାରଣେ ॥
ବାହାରି ପର୍ଣ୍ଣିବାସୁଁ ଗୃହିଁ କହୋଇଲେ ବଭ୍ରମେ ସଂଭ୍ରମୁଁ ରାବଣ ।
ବୈଦେହୀ ହରଣେ ଜଟାୟୁ ମରଣେ ଗରୁଡ଼ ଡରେ ପକ୍ଷଗଣ ।
କେତକୀ କେନ୍ଦ୍ର ସେ ବକାଶିକେ ଶିଖା କେ ଡାକେ ।
ବର୍ଷିଣ ମରୁତ୍‍ରଥେ ଶର ବୃଷ୍ଟି କରେ ଯୁଦ୍ଧ ହୋଇ କାର୍ମୁକେ ।୨।

୯ମ ପଦ—'ଏ ଘଟକାର' ବଳାକାରେ ଘଟ (ପ୍ରାଣ ରୂପ ଘଟକୁ) ଘେନିଲେ (ନେଲେ) ମନ୍ଦେ (ଅସାରରେ) ଜଳ ଅଛୁ ତ; କିରୂପେ ? କଷ୍ଟୁଁ ତରଣେ ( ଏ ଘଟ ଗଲେ କଷ୍ଟ ଆଉ ନୋହିବ ) ପ୍ରାଣେଶ୍ୱରୀ (ପ୍ରିୟା) 'ଘଟନେବାର' ବାର୍ତ୍ତା ପାଇ ( ପାଇଲେ ) ତା ଚରଣେ (ସେ (ପ୍ରିୟାର ଚରଣରେ ) ସୁଗତି ( ମୋହର ଉତ୍ତମ ଗତି ) ଅନୁସରି ଅଛି, ପୁଣି ସେ (ପ୍ରିୟା) ବନ୍ଧୁ (ମୋହର ବନ୍ଧୁ ଅଟେ) ହା ନାଥ 'ଏମନ୍ତ' ବାକ୍ୟ ଯୁକ୍ତେ ( ଯୁକ୍ତକରି ) ନେତ୍ରୁଁ ( ତାହାର ନେତ୍ରରୁ ) ବାରି ଦାନ କରନ୍ତେ (କରନ୍ତେ) ସୁଗତି (ମୋହର ଉତ୍ତମ ଗତି ହେବ, ଏ [1] କାରଣେ ଧାତା (ବିଧାତାକୁ) ବନ୍ଦିବା (ସ୍ତୁତି କରିବା) ।୯।

୧୦ମ ପଦ—'ରାମଚନ୍ଦ୍ର' ପର୍ଣ୍ଣିବାସୁଁ (ପର୍ଣ୍ଣକୁଟୀରରୁ) ବାହାରି ( ବାହାରକୁ ଆସି ) ଗୃହିଁ ( ମେଘକୁ ଗୃହିଁ ) ବଭ୍ରମେ ( ଭ୍ରମ ମଧ୍ୟେ ) ସଂଭ୍ରମୁଁ ( ଏବ ସମ୍ଭ୍ରମ ହେବାରୁ ) ରାବଣ 'ଏମନ୍ତ କହୋଇଲେ' । ବୈଦେହୀ ହରଣେ ( ସୀତା ହରଣ ସମୟରେ ) ଜଟାୟୁ ମରଣେ (ଜଟାୟୁ ପକ୍ଷୀକି ମାରିବାରୁ) ଗରୁଡ଼ ଡରେ ପକ୍ଷିଗଣ ବେଢ଼ିଅଛନ୍ତି, କେ (ମସ୍ତକରେ) ଶିଖା ବକାଶିକେ (କେହି) 'ଯୁଦ୍ଧ କରିବାକୁ' ଡାକେ (ଡାକୁଛନ୍ତି) । 'ସେ ରାବଣ' ମରୁତ୍ ରଥେ ( ପବନରୂପ ରଥରେ ) ବର୍ଷିଣ (ବର୍ଷିକରି) [1] ଶର ( ଧାରାରୂପ ଜଳ ) କାର୍ମୁକେ ( ଇନ୍ଦ୍ରଧନୁରୂପ ଧନୁରେ ) ଯୁଦ୍ଧ

---

୧—ହେତୁ ନାକାରଣଂ ବୀଜମିତ୍ୟମରଃ ।
୧—ଶରୁଦ୍ଧେ ଜଳକେ କାଣ୍ଡେ ଶରଂ ଚ ସଲିଲେ କଚଢତି ଭୁମୁଦଃ ।

ବାଳାକୁ ମୋର ଚରମେ ଲୁଗୁଇଛି ନ ଦିଶେ ତେଣୁ ଶଶିମୁଖ ।
ବିଦ୍ୟୁତ୍‌କାନ୍ତି ଦିଶି ନ ଦିଶି ଯାଉଛି ଅଙ୍ଗପ୍ରଚଳେ ତାର ଦେଖ ।
ବାଣୀ କୋକିଳ । ବହୁଛି ଗଦ୍‌ଗଦ ଶୋକରୁ ।
ବଢ଼ାଇ ସମର ଛଡ଼ାଇଁ ଘେନିମା ସାର ନାହିଁ, ଏହା କରୁଁ ।
ବରଷା ହେଲଣି ଘନ ନଭେ ଖେଳେ ଭାଷିଲେ ଶତ୍ରୁଘ୍ନ-ଜ୍ୟେଷ୍ଠ ।
ବିନତ ହେଲେ ଉନ୍ନତ ଗୁଡ଼ ଦୂତ ହୁଅ ବୋଲିଣ ହୋଇ ହୃଷ୍ଟ ।
ବାରବାହ ହେ । ବିନାଶିଛ ଦବ ବିକଳ ।
ବନଗମର ମୂର୍ଦ୍ଧ୍ନି ରାମ ବିନାଶ କାମାନଳ ତାପ ଚପଳ । ୧୨ ।

---

ହୋଇ ବୃଷ୍ଟି କରେ । ପୂର୍ବଦ୍ୱାର ପବନରେ ମେଘ ଗର୍ଜିବା, ଇନ୍ଦ୍ରଧନୁ ପଡ଼ିବା, ମୟୂର ନାଚିବା, ଡାହୁକ ରାବିବା, ଜଳ ବର୍ଷିବା ସୂଚିତ ହେଉ ।୧୦

୧୧ଶ ପଦ—ମୋର ୧ବାଳାକୁ ( ପ୍ରିୟାକୁ ) ଚରମେ (ପୃଷ୍ଠଦେଶରେ) ଲୁଗୁଇଛି; ତେଣୁ ଶଶୀମୁଖ ( ଚନ୍ଦ୍ରମୁଖ ) ନ ଦିଶେ; * ତାର (ସେହି ରାବଣର) ଅଙ୍ଗପ୍ରଚଳେ ( ଶର ବର୍ଷଣରେ ଅଙ୍ଗ ଚାଳନ ହେବାରୁ ) ବିଦ୍ୟୁତ୍‌କାନ୍ତି ( ବିଜୁଳିପରି କାନ୍ତି ) ଦିଶି ନ ଦିଶି (କେତେବେଳେ ଦିଶି ଯାଉଛି, କେତେବେଳେ ନ ଦିଶୁଛି) ବାଣୀ କୋକିଳ ଶୋକରୁ (କାନ୍ଦିବାରୁ) ଗଦ୍‌ଗଦ 'ସ୍ୱରକୁ' ବହୁଛି, ଏଣୁ ସମର ବଢ଼ାଇ 'ପ୍ରିୟାକୁ' ଛଡ଼ାଇ ଘେନିମା (ଆଣିମା); ଏହା କରୁଁ ( ଏ କାର୍ଯ୍ୟରୁ) 'ଆଉ କିଛି' ସାର ନାହିଁ ॥

୧୨ଶ ପଦ—'ଏମନ୍ତ ବିଭ୍ରମରେ ରାମ କହନ୍ତେ' ଶତ୍ରୁଘ୍ନ ଜ୍ୟେଷ୍ଠ (ଲକ୍ଷ୍ମଣ) ଭାଷିଲେ ( କହିଲେ ), ବରଷା ( ବର୍ଷାକାଳ ) ହେଲଣି, 'ଏଣୁ' ଘନ (ମେଘ) ନଭେ ( ଆକାଶରେ ) ଖେଳେ ( ଖେଳୁଅଛି )। 'ଏହା ଶୁଣି ରାମ' ଉନ୍ନତି (ଟେକ) ଗୁଡ଼ ହୃଷ୍ଟ ହୋଇ ହେ ବାରବାହ ! 'ତୁମ୍ଭେ ମୋହର' ଦୂତ ହୁଅ ବୋଲିଣ ବିନତି ( ବିନମ୍ରୀ ) ହେଲେ ! ବନଗମର (ବନସ୍ଥ ମୃଗର) ଦବ ବିକଳ ( ଦାବାନଳ ବିକଳକୁ ) ବିନାଶିଛ, ମୂର୍ଦ୍ଧ୍ନି ତ ରାମ, 'ମୋହର' କାମାନଳ-ତାପ ( କାମାଗ୍ନି ସନ୍ତାପଜନିତ ବିକଳକୁ ) ଚପଳ (ଚଞ୍ଚଳ) ବିନାଶ 'କର' । ୧୨ ।

---

୧—ଷୋଡ଼ଶୀ ବା ଉଦ୍ଭେଦ୍‌ବାଳା ।

*—ଯଦୁକ୍ତଂ ରାମାୟଣେ—ନୀଳମେଘାଶ୍ରିତା ବିଦ୍ୟୁତ୍ ଚରନ୍ତ ପ୍ରତିଭାତି ମେ ।
ସ୍ଫୁରନ୍ତି ରାବଣସ୍ୟାଙ୍କେ ହ୍ରସ୍ୱମାଣେବ ମୈଥିଲୀ ।

ବରହରେ କ୍ଷୀଣ ଖୁରୁମଣି ଧନ ନ ନାଅ ପ୍ରଖର ପବନ ।
ବଜ୍ରପତନ ସ୍ତନିତ ନ କରିବ ଶୁଣିବିଟି ଯିବ ଜୀବନ ।।
ବାରବାହ ହେ । ବନ୍ଧୁ ନବାନୁଭବା ସତ ।
ବୋଲିବ ଯେମନ୍ତେ ଶିବ ଶିବ ନିତ୍ୟ ସେରୂପେ ମନାଇବ ଚିତ୍ତ ।।
ବୁଝାଅ ତୁ ପର ପରାଣ କାନ୍ତର ତୋ-ହତେ ସେ ତ ନ ଜୀଇବ ।
ବରରସିକା ସ୍ବହାଧୀନା ଏ ଶଙ୍କା ବହିଛି ଜୀବନେ ରହିବ ।
ବାରବାହ ହେ । ବଚନେ ରଚବ ଏତିକ ।
ବଲ୍ଲଭରେ ଅନେକ ବସ୍ତୁ ତୁ ଏକ ଏ ପୁଣି କେଉଁ କଉତୁକ ।।

---

୧୩ଶ ପଦ—'ପୁଣି କହିଲେ' ଧନ (ସେ ପ୍ରିୟା) ବରହରେ କ୍ଷୀଣ (ଦୁର୍ବଳ) 'ହୋଇଥିବ', 'ସେ ପୁଣି; ଖୁରୁମଣି ( ଅଳ୍ପ ଭୟାଳୁ ); 'ଏଣୁ' ପ୍ରଖର ପବନ ( ପ୍ରଖର ପବନକୁ ) 'ସଙ୍ଗରେ' ନ ନାଅ ( ସେ ଉଡ଼ିଯିବ—) ଆଉ ବଜ୍ରପତନ ( ବଜ୍ରପାତ )'ଓ ସ୍ତନିତ ( ମେଘ ଗର୍ଜନ ) ନ କରିବ 'ଶୁଣିଲେ ସେ ପ୍ରାଣ ଛାଡ଼ିବ' । 'ଏଣୁ' ଧୀରେ ଧୀରେ ସନ୍ନିଧାନ (ନିକଟରେ) ପ୍ରବେଶ ହେବ । ହେ ବାରବାହ ! ବନ୍ଧୁ ( ମୋ ପ୍ରିୟା ) ନବାନୁଭବା (ବରହ ଦୁଃଖକୁ ନୂଆ ଅନୁଭବ କରୁଅଛୁ) ସତ ( ଏ କଥା ସତ୍ୟ); ଯେମନ୍ତେ 'ସେ' ଶିବ ଶିବ ନିତ୍ୟ ( ସର୍ବଦା ) ବୋଲିବ ସେରୂପେ ଚିତ୍ତ ( ତା ମନକୁ ) ମନାଇବ । ଶିବ ନାମ ଧରିଲେ କାମବାଧା ଦୂର ହେବ ଏହିଭଳି ' ୧୩ ।

୧୪ଶ ପଦ—'ହେ ବାରବାହ ମୋ ପ୍ରିୟାକୁ' 'ଏମନ୍ତ' ବୁଝାଅ (ବୁଝାଇ ଦିଅ), ତୁ ପର କାନ୍ତର ପରାଣ ( ପ୍ରାଣ ), 'ଏଣୁ' ତୋ ହତେ ( ତୋର ମୃତ୍ୟୁ ହେଲେ ) ସେ ତ (କାନ୍ତ ତ) ନ ଜୀଇବ । 'ମୋ ପ୍ରିୟା' ବର ରସିକା (ବଡ଼ ରସିକା) 'ପୁଣି' ସ୍ବହାଧୀନା, ଏ ଶଙ୍କା (ମୋ ମୃତ୍ୟୁରେ କାନ୍ତର ମୃତ୍ୟୁ ହେବା ଭୟ) ବହି ଜୀବନେ ରହିବ ( ପ୍ରାଣ ନ ଛାଡ଼ିବ ) । ବଚନରେ ଏତିକ ରଚନା କରିବ (ଆଉ ଏତିକ କହିବ); ତୁ ତ ଏକ (ଜଣେ) ବଲ୍ଲଭରେ ( ବରହରେ ) କାନ୍ତକୁ ଅନେକ ବସ୍ତୁ, ଏ ପୁଣି କେଉଁ ୧ କୌତୁକ । ୧୪ ।

---

୧—କୌତୁକଂ ତ୍ବଭିଳାଷେ ସ୍ୟାଦୁତ୍ସବେ ନର୍ମହର୍ଷୟୋରିତ ମେଦିନୀ ।

ବ୍ରଜେଁ ନୟନ ଶୟନେ ଲୀଳାମାନ ବଶି ଯାଇ ଯେଣୁ ତୋହର ।
ବେଳ ବେଳ କେ ସୁଖ ଭୋଗ ଯେତେକ କଉତୁକ ଜାତୁଁ ମାତର ।
ବାରବାର ହେ ! ବୋଲ ଦୁଃଖୀ ସଦା ନୋହୁଁଲେ ।
ବାହାରର ତୋହର ଆହା କରିବାକୁ ସଦା ନାହିଁ ଯା ଅଖିଳେ ॥
ବେଶ କରେ ମାନସିକେ କେଶ ବାନ୍ଧୁ ଅଳକ୍ତାଲେଖନ ପର୍ଯ୍ୟନ୍ତେ ।
ବିଗ୍ଭର ମାନସ ମୁଁ ପ୍ରିୟାର ଦାସ ସେବା କିନ୍ତୁ ହେବ କେମନ୍ତେ ।
ବାରିବାର ହେ ! ବିସ୍ମରିବ ନାହିଁ ଏ ବାଣୀ ।
ବର୍ଣ୍ଣନ ରତ୍ନରତନ ଲେଖି ଦେବ ଦେଖନ୍ତେ ତରୁଣି ନୋହି ଋଣୀ ॥

---

୧୫ଶ ପଦ—'ପୁଣି ଏମନ୍ତ କହୁଛି' 'ତୋ କାନ୍ତ' ନନ୍ଦନ ବ୍ରଜେଁ (ବ୍ରଜକ୍ଷେତ୍ରେ) ତୋହର ଶୟନେ (ତୋ ଶୟନ କାଳର) ଲୀଳାମାନ ଯେଣୁ ବଶି ଯାଇ (ଯାଉଅଛୁ), ତେତେବେଳ ବେଳ ମାତର (ତେତକ ବେଳ ମାତ୍ର) କୌତୁକ (ହର୍ଷ) ଜାତୁଁ (ଜାତ ହେବାରୁ) ଯେତେକ ସୁଖ 'ସେ' ଭୋଗ ହେଉଅଛୁ । ହେ ବାରବାର ! ବୋଲ (ବୋଲାଇ), ସଦା (ସର୍ବଦା) ଦୁଃଖୀ ସେ ନୋହୁଁଲେ ଯହୁଁ (ହେଣୁ) ତୋହର ବାହାରେ (ତୋ ଭିନ୍ନ) ଅଖିଳେ (ସମସ୍ତ ବ୍ରହ୍ମାଣ୍ଡରେ) 'ତାଙ୍କୁ' ଆହା କରିବାକୁ ସଦା (ସର୍ବଦା) 'ଆଉ କେହି' ନାହିଁ । ୧୫ ।

୧୬ଶ ପଦ—'ବିଚ୍ଛେଦ ହେବାକୁ ମାନସିକେ (ମନ ମଧ୍ୟରେ) କେଶ ବନ୍ଧୁଁ (ବାନ୍ଧିବାଠାରୁ) ଅଳକ୍ତା ଲେଖନ ପର୍ଯ୍ୟନ୍ତେ 'ତୋହର' ବେଶ କରେଁ (କରୁଅଛୁ) । ମାନସ ବିଗ୍ଭର (ମନରେ ବିଗ୍ଭରିଲି) ମୁଁ ପ୍ରିୟାର ଦାସ (ସେବାକାରୀ); ସେବା କେମନ୍ତେ କିନ୍ତୁ ହେବ ? ଏଣୁ ମନମଧ୍ୟରେ ସେବା କରେ ଏହା ଭାବ । ହେ ବାରବାର ! ଏ ବାଣୀ (ଏ କଥା) ବିସ୍ମରିବ (ପାଶୋରିବ) ନାହିଁ, 'ଦେଖିବ' ହେ ତରୁଣି 'ଦାସଜନ' ଦେଖନ୍ତେ (ଦେଖନ୍ତ ହେଲେ) ଲେଖି 'କଣ' ରତ୍ନରତନ 'ରୂପ' ବର୍ଣ୍ଣନ (ବେତନ) ଋଣୀ ନୋହିବ ଦେବ । ୧୬ ।

ବନିତ୍ୱେ ରଜନୀ ନାଏ ଯୋଗଧ୍ୟାନୀ ଜପେ ତୋ ନାମ ମନ୍ତ୍ର କରି ।
ବାସରେ କ୍ଷୁଧା ନାହିଁ ଆନ ରୁଚେ ଯେ ତୋ-ଓଷ୍ଠସୁଧା-ଆକାଂକ୍ଷୀ ।
ବାରି ବାହି ହେ । ବନିମେଷନେତ୍ର କହିବ ।
ବିଚିତ୍ର ଦର୍ପଣ ହେଲା ସେ ଅନ୍ତରେ ଧରିଛି ଟିକ ପ୍ରତିବିମ୍ବ ।୧୭।
ବିଗ୍ରହ ରମଣୀ ମୁହିଁ ଛୁଇଁ ପୁଣି ନ ଛାଡ଼ଇ ଅନବରତ ।
ବେଦବର ଭିନ୍ନ ଭିନ୍ନ କରାଇଲା ଅନ୍ଧାର କରାଇ ଜଗତ ।
ବାରି ବାହି ହେ । ବିକାଶ ହୋଇ ନାଶିଦିନ ।
ବଧୂମୁଖନାଶି ଅରୁଣଅଧର ତାମ୍ବୁଲ କରଣ ପ୍ରସନ୍ନ । ୧୮ ।

---

୧୭ଶ ପଦ—'ଆଜର କହିବ' 'ତୋହର କାନ୍ତ' ଯୋଗଧ୍ୟାନୀ (ଯୋଗୀପରି) କିବା ଯୋଗୀ (ତୋ ସଂଯୋଗ) ତାକୁ ଧ୍ୟାନ କରି ରଜନୀ (ରାତିକି) ବିନିଦ୍ରେ (ନିଦ୍ରାଗତେ) ନାଏ (କଟାଉଛି) ଏବଂ ମନ୍ତ୍ର 'ପ୍ରାପ୍ତ' କରି ତୋ ନାମ ଜପେ (ଜପ କରେ) ବାସରେ (ଦିବସରେ) କ୍ଷୁଧା ନାହିଁ, ଯେ ତୋ ଓଷ୍ଠସୁଧାଆକାଂକ୍ଷୀ (ତୋ ଅଧରସୁଧା ପାନକ ଶକ୍ତି) ଆନ "ପଦାର୍ଥ" ରୁଚେ କି ? (ରୁଚେ ନାହିଁ) । ହେ ବାରିବାହି ! କହିବ, ନେତ୍ର ବନିମେଷ ହୋଇଅଛି (ନେତ୍ରର ପଲକ ପଡ଼ୁନାହିଁ); ସେ 'ହୋଇଛି' ବିଚିତ୍ର ଦର୍ପଣ (ଆଶ୍ଚର୍ଯ୍ୟ ଦର୍ପଣ) ହେଲା, କିରୂପେ ? ଅନ୍ତରେ (ଅନ୍ତର ହେବାରେ) ପ୍ରତିବିମ୍ବ (ଛାୟାକୁ) ଧରିଛି ଟିକ ? ଦର୍ପଣ ଆଗରେ ଥିବା ଜନ ପ୍ରତିବିମ୍ବକୁ ଧରେ, ଦୂରେ ଥାଇଁ ମଧ୍ୟ ପ୍ରତିବିମ୍ବ ଧରିଅଛି ଏହିଭାବ । ୧୭ ।

୧୮ଶ ପଦ—ରମଣୀ (ମୋ ପ୍ରିୟା) ବିଗ୍ରହ (ଶରୀର), ମୁହିଁ ପୁଣି 'ତାହାର' ଛୁଇଁ 'ପରି' ଅନବରତ (ନିରନ୍ତର) ନ ଛାଡ଼ଇ, 'ଏବେ' ବେଦବର (ବ୍ରହ୍ମା) ଜଗତ ଅନ୍ଧାର କରାଇ ଭିନ୍ନ ଭିନ୍ନ (ଅଲଗା ଅଲଗା) କରାଇଲା । ହେ ବାରିବାହି ! ନାଶି (ରାତ୍ରରେ) ବଧୂମୁଖ (ଚନ୍ଦ୍ର ତୁଲ୍ୟ ମୁଖରେ) ହାସ୍ୟରୂପ କରଣ ଓ ଦିନ (ଦିବସରେ) ଅରୁଣ (ସୂର୍ଯ୍ୟ ତୁଲ୍ୟ ରକ୍ତ) ଅଧର (ଅଧରରେ) ତାମ୍ବୁଲ 'ରୂପ' କରଣ ପ୍ରସନ୍ନ ହୋଇ ବିକାଶ ପାଏ । ଏବେ ତା ଅଭାବରେ ଜଗତ୍ ଅନ୍ଧାର, କହିବ ଏହିଭାବ ।୧୮।

ବିଚ୍ଛେଦ ତମ ଗ୍ରସ୍ତେ ଯିନା ପତନ ହୋଇଅଛି ମୋର ଭରସା ।
ବଶିଷ୍ଟରେ ମୁକ୍ତ ହେବ ମହୋଦର ନାହିଁ ନିର୍ମଳ ହେବ ଆଶା ।
ବାରବାହ ହେ । ବପୁ ଯୁକ୍ତ ହେବ ପୂର୍ଣ୍ଣିତ ।
ବିଧାନ ଚକୋର ପଦ୍ମଲକ୍ଷ୍ୟ ନେନେ ସେ ଦେଖି ହେବେ ଉଲ୍ଲସିତ ॥
ବୈଦ୍ୟ ଯୋଷା ହେବ ଆହୁର ଉତ୍ସବେ ଅନଙ୍ଗବ୍ୟାଧି ତୁଟି ଯିବ ।
ବଦନ ଓଷଧିଈଶ ଓଷ୍ଠ ଉଦେ ଭାସ୍କରରସ ଯହୁଁ ଦେବ ।

୧୯ଶ ପଦ—'ପ୍ରିୟାର ମୁଖ ଚନ୍ଦ୍ର ଓ ଅଧର ସୂର୍ଯ୍ୟ' ବିଚ୍ଛେଦ ତମ (ବିଚ୍ଛେଦ ରୂପ ରାହୁଦ୍ୱାରା) ଗ୍ରସ୍ତେ (ଗ୍ରସ୍ତ) 'ହୋଇ ଥିବାରୁ' ଯିନା ପତନ ହୋଇଅଛି (ପଡ଼ି ଯାଉଅଛି); ଏଣୁ ମୋର ଭରସା 'ରହୁର ତ' *ମହୋଦର (ବଡ଼ପେଟ) ନାହିଁ, ବଶିଷ୍ଟରେ ମୁକ୍ତ ହେବ 'ବଡ଼ପେଟଥିଲେ ପାକ ହୋଇଯାନ୍ତା ଏଣୁ ମହୋଦର (ମହାଭୟ) ତୁଟିଗଲା, ଚନ୍ଦ୍ର ସୂର୍ଯ୍ୟ ମୁକ୍ତ ହେଲେ' । ଆଶା (ଦିଗ) ନିର୍ମଳ ହୁଏ, 'ସେହିପରି ପ୍ରିୟାମୁଖ ଚନ୍ଦ୍ର ଅଧରସୂର୍ଯ୍ୟ ବିଚ୍ଛେଦ ରାହୁ କବଳରୁ ମୁକ୍ତ ହେଲେ ମୋହର' ଆଶା (ପ୍ରତ୍ୟାଶା) ନିର୍ମଳ ହେବ । ହେ ବାରବାହୁ ! ବପୁ (ପ୍ରିୟାରୂପ ଦେହରେ) 'ଗ୍ଲାନି ପ୍ରାପ୍ତ ମୋ ଦେହ' ପୂର୍ଣ୍ଣି ଯୁକ୍ତ ହେବ ତ ? ଚକୋର ପଦ୍ମଲକ୍ଷ୍ୟ (ସଦ୍‌ଗୁଣ) ନେନେ (ମୋ ନେତ୍ରଦ୍ୱୟ) ସେ (ପୂର୍ବପରି) ମୁଖ ବିଧୁ କିରଣ ଅଧର ଅରୁଣ ପ୍ରସନ୍ନକୁ ଦେଖି ଉଲ୍ଲସିତ (ହର୍ଷ) ବିଧାନ କରିବ 'ଆନନ୍ଦିତ ହେବ ଏହିଭାବ' । ୧୯ ।

୨୦ଶ ପଦ—ଆତୁର ଯୋଷା (ମୋ ପ୍ରିୟା) ବୈଦ୍ୟ ହେବ, ବଦନ ଓଷଧିଈଶ (ମୁଖଚନ୍ଦ୍ର) ଓଷଧି ଈଶ (ଶ୍ରେଷ୍ଠ ଓଷଧି—ଓଷଧୀ ନାମକ କ୍ୱାଥ) ହେଲା । ଓଷ୍ଠ ଉଦେ ଭାସ୍କର (ଅଧର ସୂର୍ଯ୍ୟ) ଉଦେ ଭାସ୍କର ରସ (ଉଦୟ ଭାସ୍କର ରସ ନାମକ ଔଷଧ) ହେଲା ଏ ଦୁହିଁକ ଯହୁଁ ଉତ୍ସବେ (କାମୋତ୍ସବରେ) ଦେବ ତହିଁରେ 'ମୋହର' ଅନଙ୍ଗ ବ୍ୟାଧି ତୁଟି ଯିବ ହେ ବାରବାହୁ ! ବନ୍ଧୁକୁ (ମୋ ପ୍ରିୟାକୁ) ଏତେ ଘେନାଇବ (ଏଥିକି ତା ମନକୁ ନେଇ କହିବ) ତୋ କାନ୍ତ ବର୍ଷେ ଏ ଭାବନା କରେ (କରୁ

*—ଗଳିତ ଯଦ୍‌ଗଜନାଳବିଳାଧନା ଇତି ନୈଷଧେ ।

ବାରିବାହ ହେ । ବନ୍ଧୁଙ୍କୁ ଏତେ ଘେନାଇବ ।
ବସି ଏ ଭାବନା କରେ ଉଦଯୋଗ ଯେମନ୍ତେ ତ୍ୱରିତେ ହୋଇବା ୨୦ ।
ବଲ୍ଲଭୀ ବୋଲି ମୋର ତାକୁ ଚିହ୍ନିବ ଯେ ଶଯ୍ୟା କରିଥିବ ଧରା ।
ବିଶୀର୍ଣ୍ଣ ଶାଣିବସା ରତ୍ନ ଗଣ୍ଡିରୁ ଫିଟି ପତନ ହୋଇଲା ପରା ।
ବାରିବାହ ହେ । ବସିଥିବ ଅବା ଦେଖିବ ।
ବେଣୀ ପୃଷ୍ଠଭାଗେ ମନ୍ତ୍ରଧୂଳିପାତ ସ୍ଥକିତନାଗ ପ୍ରାୟ ଥିବ । ୨୧ ।
ବାର୍ତ୍ତା ମୋର କହି ତା ବାର୍ତ୍ତା ଆଣିଲେ ଭେଟ ହେଲା ଜନୁ ପ୍ରିୟାର ।
ବଢ଼ାଇ ତୋ ରଖି ଘନକେଶୀ ବୋଲି ନିତ୍ୟେ ଡାକିବ ସତ୍ୟ ମୋର ।

---

ଅଛନ୍ତି ) ଏହା ଯେମନ୍ତେ ତ୍ୱରିତେ ( ଶୀଘ୍ର ) ହେବ 'ତାହାର' ଉଦଯୋଗ ( ଉଦ୍‌ଯୋଗ ) କରୁ ଅଛନ୍ତି 'ସଂଶୟ ନାହିଁ' । ୨୦ ।

୨୧ଶ ପଦ—ଯେ ( ସ୍ତ୍ରୀ ) ଧରା ଶଯ୍ୟା କରିଥିବ (ଭୂମିରେ ଶୋଇଥିବ) ତାକୁ ମୋର ବଲ୍ଲଭୀ (ପ୍ରିୟା) ବୋଲି ଚିହ୍ନିବ । 'ତୁମ୍ଭେ ଅବା କହିବ-କେତେ ସ୍ତ୍ରୀ ଭୂମିରେ ଶୋଇଥାନ୍ତି ତାଙ୍କୁ ମୁଁ କିପରି ଚିହ୍ନିବି' 'କହୁଅଛି' ବିଶୀର୍ଣ୍ଣ (ଅତି ଶୀର୍ଣ୍ଣ) ଶାଣବସ୍ତ୍ରା ( ଶାଣରେ ବସିଥିବା ) ରତ୍ନ ଗଣ୍ଠିରୁ ଫିଟି ପତନ ହେଲ ପରା ( ତଳେ ପଡ଼ିଥିବ ପରି ) 'ଦିଶୁଥିବ ତାଙ୍କୁ ମୋ ବଲ୍ଲଭୀ ବୋଲି ଜାଣିବ' । ହେ ବାରିବାହ ! ଅବା ବସିଥିବ ଦେଖିବ । ସେତେବେଳେ ତାହାର ବେଣୀ ପୃଷ୍ଠଭାଗେ ( ପିଠିରେ ) ମନ୍ତ୍ରଧୂଳି ପାତ (ଧୂଳି ମନ୍ତ୍ରି ପକାଇବାରେ) ସ୍ଥକିତ ନାଗ (କୃଷ୍ଣସର୍ପ) ପ୍ରାୟ ଥିବ । ଚିନ୍ତାରେ ଶିରସ୍ଥାଳନ ହେଉ ନ ଥିବ ଏହିଭାବ । ୨୧ ।

୨୨ଶ ପଦ—ହେ ବାରିବାହ ! ମୋର ବାର୍ତ୍ତା କହି ତା ବାର୍ତ୍ତା ଆଣିଲେ ପ୍ରିୟାର ଭେଟ ହେଲ ଜନୁ ତୋ ବଢ଼ାଇ ରଖି ଘନକେଶୀ ବୋଲି ନିତ୍ୟ ଡାକିବ 'ଏ' ମୋର ସତ୍ୟ; ବୋଲନ୍ତେ ( ରାମ ଏମନ୍ତ କହନ୍ତେ ) ବାରିଦ (ମେଘ) ବାୟୁବଳରୁଁ ( ପବନ ଯୋଗୁଁ ) ଦକ୍ଷେଣେ ( ଦକ୍ଷିଣ ଦିଗକୁ ) ଚଳନ୍ତେ (ଚଳନ୍ତେ) 'ମୋ ବୋଲରେ' ଗଲ, 'ଏମନ୍ତ' ବିଗ୍ରହ ତୁପଢ଼ (ସନ୍ତୋଷ)

ବୋଲୁଁ ବାରଦ । ବାପୁ ବଳେ ଚକ୍ର ଦକ୍ଷେଣେ ।
ବିସ୍ମର ଗଳିତ ଭୂପତି, ବାଇଶିପଦରେ ଉପଇନ୍ଦ୍ର ଭଣେ । ୨୨ ।

—※—

## ତ୍ରିଂଶ ଛାନ୍ଦ

ରାଗ ବଙ୍ଗଳାଶ୍ରୀ । ଚନ୍ଦ ସିଂହାବଲୋକନ ।

ବରଷାକାଳ ଅନ୍ତ କଲେ ଶରଦ ବନ୍ଧି ଶିବ ଆଡମ୍ବର ।
ବରଧୂର୍ତ୍ତ ଘନାଘନ ଖଣ୍ଡନ୍ତୁ କେଶରୀ ସର ଆକର ! ୧ ।

---

ଜାଣିଲେ । ଉପଇନ୍ଦ୍ର ( ଉପେନ୍ଦ୍ର ଭଞ୍ଜଦେବ ) ବାଇଶି ପଦରେ ଭଣେ ( ଏ ଗ୍ରନ୍ଥ ରଚିଲେ ) । ୨୨ ।

—※—

ତ୍ରିଂଶ ଛାନ୍ଦ ।

୧ମ ପଦ—ଶରଦ ( ଶରତ୍‌କାଳ ) ଶିବ ( ମହାଦେବଙ୍କ ) ଆଡ଼ମ୍ବର (ଆଟୋପକୁ ) ବନ୍ଧି (ବନ୍ଧାଇ) । ଶିବ, ଧାଳ ( ମୁଖର ) ୧ ଅନ୍ତ (ବିନାଶକୁ ) କଲେ ( କରନ୍ତି ) ତେଣୁ ତାଙ୍କ ନାମ ମୃତ୍ୟୁଞ୍ଜୟ' । ଶରତ୍ କାଳ ସେହିରୂପ, ବର୍ଷା କାଳ ( ବର୍ଷା ଋତୁକୁ ) ଅନ୍ତ (ଅବସାନ ) 'କଲା' ଆବର ( ଆବୃତ ) କେଶରୀ ( ସିଂହ ) ସର (ସମାନ ) 'ହେଲା' । ସିଂହ ଯେପରି' ୨ ଘନାଘନ (ମତ୍ତଗଜକୁ) ଖଣ୍ଡନ ୩କୁତେ ( ଖଣ୍ଡନ କରିବା ପାଇଁ ) ବରଧୂର୍ତ୍ତ (ଦର୍ପିତ) 'ହୋଇଥାଏ ତଦ୍ରୂପ ଶରତ୍' ଘନାଘନ (ବର୍ଷୁକ ମେଘକୁ ) ଖଣ୍ଡନ୍ତୁ ( ଖଣ୍ଡନ କରିବା ନିମିତ୍ତ ) ବରଧୂର୍ତ୍ତ ( ବର୍ଦ୍ଧିତ) 'ହେଲା' । ୧ ।

---

୧—ଅନ୍ତଂ ସ୍ୱରୂପେ ନାଶେ ନା ନ ସ୍ତ୍ରୀ ଶେଷେଽନ୍ତିକେ ବଧୂ ଇତି ।
୨—ଘନାଘନୋ ବର୍ଷୁକାବ୍ଦେ ମତ୍ତଘାତୁକ କୁଞ୍ଜରେ ଇତି ମେଦନୀ ॥
୩—ଅର୍ଥେ କୃତେ ନିମିତ୍ତାର୍ଥମବ୍ୟୟଂ ।

ବର୍ଷେ ପବ୍ର ନବକନ୍ୟା ଆଳିଙ୍ଗନେ ବଢ଼ାଇ ଶୋଭା ପ୍ରବର ।
ବରଣକୃତ ରଜକପ୍ରଭବକୁ ନିର୍ମଳକାନ୍ତି ଅମ୍ବର । ୨ ।
ଚରକ୍ଷଣ ଶରେ କୃଷ୍ଣସାର ହତେ ଯଥା ଲୁବ୍ଧକ-ଶବର ।
ବରଧନ ଖେଳା ପୁଷ୍କର ତରଣି କରଇ ଯେସ କ ଧୀବର ।୩।

୨ୟ ପଦ—'ପୁଣି ସେ ଶରତ୍' ବର ପବ୍ର ( ବରପ୍ରାପ୍ତ ) 'ହର୍ଷିକ୍' 'ବର' ନବ ( ନୂତନ ) କନ୍ୟା ( କନ୍ୟାର ) ଆଳିଙ୍ଗନେ ( ଆଳିଙ୍ଗନରେ ) ଶୋଭା ପ୍ରବର ( ଶୋଭାଢଣସ୍ଥକୁ ) ବଢ଼ାଇ 'ଥାଏ' ଏ ଶରତ୍ ନବ ନୂତନ ) କନ୍ୟା (କନ୍ୟାମାନଙ୍କର) ଆଳିଙ୍ଗନରେ ଶୋଭାଢଣସ୍ଥକୁ ବଢ଼ାଇଲା । ପୁଣି ସେ ଶରତ୍ ୧ରଜକ ( ଧୋବା ) ପ୍ରଭବକୁ ( କର୍ତ୍ତାକୁ ) ବରଣକୃତ ( ବରଣକଲା ), 'ଧୋବା' ୨ଅମ୍ବର ( ବସ୍ତ୍ର ) ନିର୍ମଳକାନ୍ତି 'ଏ ସେରୂପ' ଅମ୍ବର ( ଆକାଶର ) ନିର୍ମଳକାନ୍ତି କଲା ।

୩ୟ ପଦ—ପୁଣି ସେ ଶରତ୍ ଲୁବ୍ଧକ ( ଲୋଭୀ ) ଶବର ( ବ୍ୟାଧ ) ଯଥା ( ଯେରୂପ ) 'ସେରୂପ ହେଲା' । 'ବ୍ୟାଧ' ୧କୃଷ୍ଣସାର 'ମୃଗକୁ' ହତେ ( ମାରିବାପାଇଁ ) ଶରେ ( ବାଣମାନଙ୍କୁ ) ବରଷଣ ( ବୃଷ୍ଟି ) 'କରୁଥାଏ' । ଏ ଶରତ୍, ବରକ୍ଷଣ ୨ଶରେ ( ଜଳ ବର୍ଷାକାଶ ମେଘ ) କୃଷ୍ଣ ( କୃଷ୍ଣବର୍ଣ୍ଣ ) ୩ସାର ( ଜଳକୁ ) ହତେ ( ନାଶକଲା ) 'ଶରତ୍କାଳମେଘ ଶୁକ୍ଳବର୍ଣ୍ଣ' । ସେ ( ଶରତ୍ ) ଧୀବର ( କେଉଟ ) କି ? 'ଧୀବର ଯେପରି' ୪ତରଣି ( ନୌକାର ) ଖେଳ ( କ୍ରୀଡ଼ା ) ପୁଷ୍କରେ ( ଜଳରେ )

୧— ରଜକୌ ନିର୍ଣ୍ଣେଜକଃ ସ୍ୟାଦ୍ରଜକ ଇତ୍ୟମରଃ ।
୨—ଅମ୍ବରଂ ବାସସି ବ୍ୟୋମ୍ନି କାର୍ପାସେ ଚ ସୁଗନ୍ଧକେ ଇତି ବିଶ୍ୱଃ ।
୧—କୃଷ୍ଣସାରଃ ସ୍ନୁହୀବୃକ୍ଷେ ଶିଂଶପାୟାଂ ମୃଗାନ୍ତରେ ଇତି କୁମୁଦାକରଃ ।
୨—ଶର ଜ୍ଞେତନକେ ବାଣେ ତକ୍ଷରେ ନା ଶରଂ ଜଳେ ଇତି ମେଦିନୀ ।
୩—ସାରେ ବଲେ ସ୍ଥିରାଂଶେ ଚ ଇତ୍ୟମରଃ ॥
*— ଶରନ୍ମେଘଶ୍ରେଣୀ ପ୍ରଚ୍ଛଭଟମଣ୍ଡଳୀପୁରଶିର-
ସ୍ଥିରଂ ଶୁଷ୍କଂ ବୃନ୍ଦାବନପରସରେ ଦ୍ରକ୍ଷ୍ୟତି ଭବାନ୍ ଇତି ହଂସଦୂତେ ।
୪—ସ୍ତ୍ରିୟାଂ ନୌ ସ୍ତରଣିସ୍ତରି ଇତ୍ୟମରଃ ।

ବର-ଉଜ୍ଜ୍ୱଳ ଚନ୍ଦ୍ର ଶିରୀ ଜନ୍ମାଇ ଯେମନ୍ତ ସରିତବର ।
ବରଗ ବରଗ ସୁମନା ଉତ୍ଫୁଲ୍ଲକାରକେ କ ପୀତାମ୍ବର ।୪।
ବରହେ ମଳନ ଶିଖିକ କରାଇ ହିମବନ୍ତ ଅନୁଭବର ।
ବରଣି ଭୁବନ ନିର୍ମଳ ରଚନେ ତୁଳ ସେ ପଦ୍ମଭବର । ୫ ।

ବରଧନ ( ବର୍ଦ୍ଧନ ) କରାଇ 'ଥାଏ', "ଏ ସେପର" ୫ଭଟ୍ଟଣି ( ସୂର୍ଯ୍ୟଙ୍କ ) ନୀଳା ପୃଷ୍ଠରେ ( ଆକାଶରେ ) ବର୍ଦ୍ଧନ କରାଇଲା ୩ ।

୪ର୍ଥ ପଦ—ସରିତବର ( ସମୁଦ୍ର ) ଯେମନ୍ତ "ତେମନ୍ତ ସେ ହେଲ" ସମୁଦ୍ର, ବରଉଜ୍ଜ୍ୱଳ ( ମହୋଜ୍ଜ୍ୱଳ ) ଚନ୍ଦ୍ର ( ଚନ୍ଦ୍ରମା ), ଶ୍ରୀ ( ଲକ୍ଷ୍ମୀ ) "ଏ ଦୁହିଙ୍କି" ଜନ୍ମାଇ "ଥିଲ" । ଶରତ୍ ବରଉଜ୍ଜ୍ୱଳ ( ଅତିଉଜ୍ଜ୍ୱଳ ) ଚନ୍ଦ୍ର ( କର୍ପୂରପଶ ) ଶିରୀ ( ଶୋଭାକୁ ) ଜନ୍ମାଇ ( ଜନ୍ମାଇଲା ) । ଅଥବା ଚନ୍ଦ୍ରଙ୍କ ଶୋଭର ମହୋଜ୍ଜ୍ୱଳକୁ ଜନ୍ମାଇଲା । 'ପୁଣି ସେ ଶରତ୍' ପୀତାମ୍ବର କ ( ହର କି ? ), ହର ୧ବରଗ ବରଗ ( ବର୍ଗ ବର୍ଗ—ଦେବତାବର୍ଗ, କିନ୍ନର ବର୍ଗ, ପିଶାଚୀବର୍ଗ, ମାଗଧୀବର୍ଗ, ) ସୁମନା ( ସ୍ତ୍ରୀମାନଙ୍କର ) ଉତ୍ଫୁଲ୍ଲକାରକେ ( ହୃଦୟ ପ୍ରଫୁଲ୍ଲକାରୀ ) ଅଟନ୍ତି, 'ଏ ଶରତ୍' ବର୍ଗ ବର୍ଗ ସୁମନା ( ପୁଷ୍ପସମୂହର ) ଉତ୍ଫୁଲ୍ଲକାରକେ ( ପ୍ରଫୁଲ୍ଲକାରୀ ) ହେଲା । ୪ ।

୫ମ ପଦ—ସେ ( ଶରତ୍ ) ହିମବନ୍ତ ୧ଅନୁଭବର ( ହିମରତୁ ପ୍ରଭାବର ) 'ଏବଂ' ପଦ୍ମଭବର ( ବ୍ରହ୍ମାଙ୍କର ) ତୁଳ ( ତୁଲ୍ୟ ) ହେଲା । 'ହିମପ୍ରଭାବ' ବରହେ ( ଶିଖାରେ ) ଶିଖିକ ( ଅଗ୍ନିକି ) ମଳନ 'କରାଏ' 'ଏ ଶରତ୍' ବରହେ ( ପୁଚ୍ଛରେ ) ଶିଖିକ ( ମୟୂରକୁ ) ମଳନ କରାଏ ( କରାଇଲା ) 'ବ୍ରହ୍ମା' ଭୁବନ ( ଜଗତ୍ ) ନିର୍ମଳ ରଚନେ ( ନିର୍ମଳଭାବରେ ସର୍ଜ୍ଜନା କରିବା ବିଷୟରେ ) ବରଣି ହୋଇଥିଲେ । 'ଏ ଶରତ୍' ଭୁବନ ( ଜଳକୁ ) ନିର୍ମଳ 'କରି' ରଚନେ ( ରଚିବାରେ ) ବରଣି ହେଲା ※ । ଏ ପାଞ୍ଚପଦ ଏକନାଳାବଲମ୍ବି-ଫଳଦ୍ୱୟସ୍ଥ ଶ୍ଳେଷ । ୫ ।

୫—ଦ୍ୟୁମଣିସ୍ତରଣିର୍ମିହ ଇତି ଗୃମରଃ ।
୧—ବୃନ୍ଦଭେଦାଃ ସମୈର୍ବର୍ଗ ଚ୍ୟମରଃ ।
ବର୍ଗୋଽଧ୍ୟାୟେ ସମୂହେ ଚ ସଜାତୀୟଗଣେଽପି ଚ ଇତି କୁମୁଦଃ ।
୧—ଅନୁଭବଃ ପ୍ରଭାବେ ସ୍ୟାନ୍ନିଶ୍ଚୟେ ଭାବସୂଚକେ ଇତି ବିଶ୍ୱଃ ।
※—ଜଳ ନିର୍ମଳତା ଚୈବ ପଟୁତ୍ୱଂ ଚନ୍ଦ୍ରସୂର୍ଯ୍ୟୟୋଃ ।

ବନ୍ଦୁଜ ବରଦ ରାମ ଏ ସମୟେଁ ବାଳମ୍ବିରୁ ସୁଗ୍ରୀବର ।
ବଳଗି ଦେଇ ସତ୍ୱରେ ଆଣ ଯାଇ ରାମନ୍ତେ ସୀତା ଦେବର ।୭।
ବରଗୁହାବୃତ ପର୍ବ ବ୍ୟାକୁଳରେ ବୁଲନ୍ତି ଗିରିବବର ।
ବରବରନାକୁ ଖୋଜନ୍ତି ପୁଛନ୍ତି ଅଛନ୍ତି ଯେତେ ସ୍ଥାବର ।୭।
ବରଦ ହୋଇବା ଦେଖିଥିଲେ କହ ଏମନ୍ତ ସୁନ୍ଦରବର ।
ବରଜ ବରଜ ଯହିଁ ଶୋଭବନ୍ତି ନାହିଁ ସେ ସୁରନବର ।୮।
ବରଶାସ୍ତ୍ର କ ବହୁମୂଲ୍ୟ ଦୁକୂଳ ବନ୍ଧ ଅନ୍ୟ ସ୍ତ୍ରୀ ରୀବର ।
ବରବର୍ଣ୍ଣିନୀ ହରିଦ୍ରା ବୋଲାଇଲି ଛୁଇଁ ଯାହା କଳେବର ।୯।

---

୭-୭ମ ପଦ—ଏ ସମୟେ ବରଜବରଦ ( ଗୋପାଳ ବରଦାତା ) ରାମ, ସୁଗ୍ରୀବର ବାଳମ୍ବିରୁ 'ସୁଗ୍ରୀବରାଜାଙ୍କୁ' ଆଣ ଯାଇ 'ବନ୍ଧୁ' • ସତ୍ୱରେ ( ଶୀଘ୍ର ) ବଳଗିଦେଇ. ( ଲକ୍ଷ୍ମଣଙ୍କୁ ପଠାଇବାକୁ ) ସୀତାଦେବର ( ଲକ୍ଷ୍ମଣ ) ରାମନ୍ତେ 'ରାମ' ବରିଛନ୍ତି ଘାତିକ (ବଚ୍ଛା ଘାତ ପାଇଥିବାଙ୍କ ) ପର୍ବ ( ପ୍ରାୟ ) ବ୍ୟାକୁଳରେ ଗିରିବବର ( ପର୍ବତ ଗୁହାମାନଙ୍କରେ ) ବୁଲନ୍ତି ଓ ବରବରନାକୁ ( ସୀତାଙ୍କୁ ) ଖୋଜନ୍ତି; ଯେତେ ସ୍ଥାବର ( ବୃକ୍ଷ ) ଅଛନ୍ତି 'ତାଙ୍କୁ' ପୁଛନ୍ତି ( ପଚାରନ୍ତି ) । ୭।୭ ।

୮ମ ପଦ—ହେ ସ୍ଥାବରମାନେ ! ଏମନ୍ତ ସୁନ୍ଦରବର ( ସୁନ୍ଦରଶ୍ରେଷ୍ଠ ) ଦେଖିଥିଲେ କହ, 'ତୁମ୍ଭଙ୍କୁ' ବରଦ ହୋଇବା ( ବର ଦେବା ) । ୧ବରଜ ବରଜ ( ବୃନ୍ଦବୃନ୍ଦ ) 'ହୋଇ' ଯହିଁ ( ଯେଉଁ ସ୍ୱର୍ଗରେ ) ଶୋଭବନ୍ତି ( ସୁନ୍ଦର ) ଅଛନ୍ତି ସେ ସୁରନବର (ସେହି ସ୍ୱର୍ଗପୁରେ ) 'ତାହା ତୁଲ୍ୟସୁନ୍ଦର ନାହିଁ' । ୮ ।

୯ମ ପଦ—ବନ୍ଧୁ ( ମୋ ପ୍ରିୟା ) ବହୁମୂଲ୍ୟ ଦୁକୂଳ ( ପୀତବସ୍ତ୍ରରେ ) ବରଶାସ୍ତ୍ର କ (ବର୍ତ୍ତମାନ୍ୟ ନୁହେ) ଅନ୍ୟ ସ୍ତ୍ରୀ ରୀବର (ଅନ୍ୟସ୍ତ୍ରୀଙ୍କୁ ବର୍ଣ୍ଣିବାରଯୁକ୍ତ) କାହିଁକ, ଯାହା କଳେବର ( ଯେଉଁ ପ୍ରିୟାଦେହ ) ଛୁଇଁ ହରିଦ୍ରା ( ହଳଦୀ ) ୧ବରବର୍ଣ୍ଣିନୀ ବୋଲାଇଲା । ୯ ।

---

୧—ବ୍ରଜୋ ଗୋଷ୍ଠାଧ୍ୱବୃନ୍ଦେଷୁ ଇତି ମେଦିନୀ ।
• ୨—ହରିଦ୍ରା ବରବର୍ଣ୍ଣିନୀ ଇତ୍ୟମରଃ ।

ବରନେ ବିଜନ ହେମଭୂଷାମାନ କୁହଇ କ୍ଷୀଣ-ପୀବର ।
ବରଚୀନ ଜଡ଼ ଅଙ୍ଗେ ବ୍ୟକ୍ତ ଧଡ଼ୀ ଥିବାରୁ ପୀତଅମ୍ବର ।୧୦।
ବରଟା ଗତିରେ ଶରଣ ପଶିଛି ସେ ଲାବଣ୍ୟ ସରୋବର ।
ବରନିତମ୍ବା ବଦନ ତାମରସ ବିକାଶ ଗନ୍ଧବହାର ।୧୧।
ବରଧମାନ ହୋଇଥାଇ ନ ତୁଟି ସର୍ବଦା ପ୍ରେମସମ୍ବର ।
ବର୍ତ୍ତମାନରେ ତାହା ଆସ୍ୱାଦନବହନେ ଆନ ତୁବର ।୧୨।

---

୧୦ମ ପଦ—ବରନେ (ଯାହାର ବର୍ଣ୍ଣକୁ ପ୍ରତି)• ହେମଭୂଷାମାନ (ସୁବର୍ଣ୍ଣାଲଂକାରମାନେ) ବିଜନ (ଉଣା) 'ଆଉ ସେ ପ୍ରିୟା' କ୍ଷୀଣ (କୃଶାଙ୍ଗୀ) କୁହନ୍ତି କି ପୀବର (ସ୍ଥୂଳାଙ୍ଗୀ) କୁହଇ, ବରଚୀନ (ବଡ଼ସରୁ) ପୀତଅମ୍ବର (ପୀତବସନ) ଅଙ୍ଗେ (ଅଙ୍ଗରେ) ଜଡ଼ିଥିବାରୁ ଧଡ଼ୀ (ଧଡ଼ୀରେ) ବ୍ୟକ୍ତ 'ହୁଏ'। ଗୌରବର୍ଣ୍ଣରେ ଗୌରବର୍ଣ୍ଣ ମିଶି ଯିବାରୁ ଲୁଗା ଚିହ୍ନା ପଡ଼ୁନାହିଁ, କେବଳ ଲୁଗାରେ ଧଡ଼ିଥିବାରୁ ଚିହ୍ନାପଡ଼େ ଏହି ଭାବ। ୧୦।

୧୧ଶ ପଦ—ସେ (ପ୍ରିୟା) ଲାବଣ୍ୟ ସରୋବର 'ଅଟେ' 'ତାହାର' ଗତିରେ (ଗମନରେ) ବରଟା (ହଂସୀ) ଶରଣ ପଶିଛି। 'ସେ' ବରନିତମ୍ବାର ବଦନତାମରସ (ମୁଖପଦ୍ମ) ଗନ୍ଧବହାର (ପବନଗତି) ବିକାଶ (ପ୍ରକାଶିତ) ହୋଇଥାଏ। ୧୧

୧୨ଶ ପଦ—'ସେ ଲାବଣ୍ୟ ସରସୀର' ପ୍ରେମ ସମ୍ବର (ପ୍ରେମ-ଜଳ) ସର୍ବଦା ନ ତୁଟି (ଉଣା ନ ହୋଇ) ବରଧମାନ (ବର୍ଦ୍ଧମାନ) ହୋଇଥାଇ। ବର୍ତ୍ତମାନରେ (ବର୍ତ୍ତମାନ) ତାହା (ସେହି ପ୍ରେମଜଳର) ଆସ୍ୱାଦନ ବହନେ (ବିନା) 'ମୋତେ' ଆନ (ଭକ୍ଷ୍ୟପଦାର୍ଥ) ତୁବର (କଷା) 'ଲାଗୁଅଛି'। ୧୨।

---

୧ – ହଂସସ୍ୟ ଯୋଷିଦ୍‌ବରଟା ଇତ୍ୟମରଃ।
୧—ତୁବରସ୍ତୁ କଷାୟୋଽସ୍ତ୍ରୀତ୍ୟମରଃ।

ବରନ୍ଧିବ ତେଜି ଟା ବକ୍ଷେଦେ ମୁହିଁ ହେଉଅଛି ହରବର ।
ବରଳ ସମାନ ଘାତ କରୁଅଛି ଫୁଲଶରେ ରତିବର । ୧୩ ।
ବରତପାଳନା ମୁଁ ଏକ ଲଳନା ହେଲ୍ଦିନୁ ସ୍ୱୟଂବର ।
ବରତନ ଭାବ ରତନ ମୁଁ ଦାସ ରଚନ ଅର୍ଥେ କବର ।୧୪।
ବରଣ୍ଡ ବାଳାମୂରତି ନେଣ ବେଗେ ଜୀବନ ସେ ମୋ ଜୀବର ।
ବରହିଣ-ପୁଚ୍ଛ-ଗୁଚ୍ଛକ-କୁନ୍ତଳା ଲଭ୍ୟେ ଦିଅନ୍ତେ କେ ବର।୧୫

---

୧୩ଶ ପଦ—ତା ବକ୍ଷେଦେ (ତାହାର ବିରହରେ) କେଞ୍ଚ (କ ଲୁପେ) ମୁହିଁ ବରଢବ (କହିବି), ହରବର (ଆକୁଳ) ହେଉଅଛି । ରତିବର (କାମ) ଫୁଲଶରେ (ଫୁଲବାଣରେ) ୧ ବରଳ ସମାନ (ବରୁଡ଼ପରି) ଘାତ କରୁଅଛି । ୧୩ ।

୧୪ଶ ପଦ—ସ୍ୱୟଂବର ହେଲ (ପ୍ରିୟା ବରିଲା) ଦିନୁ ମୋ ଏକ ଲଳନା ବରତ ପାଳନା (ଏକପତ୍ନୀ ବ୍ରତ ପାଳନା) ହୋଇଅଛି । ଅନ୍ୟ ସ୍ତ୍ରୀ ସମ୍ଭୋଗ ନାହିଁ ଏହି ଭାବ । ୧କବର ରଚନ ଅର୍ଥେ (ଖୋସା ନିର୍ମାଣ କରିବାନିମିତ୍ତ) ମୁଁ 'ତାହାର' ଦାସ; 'ମୋହର' ବରତନ (ବେତନ) 'ତାହାର' ଭାବରତନ (ଭାବରୂପରତ୍ନ)ହିଁ କେବଳ । ୧୪ ।

୧୫ଶ ପଦ—'ମୋ' ନେଣକୁ ବେଗରେ ବାଳାମୂରତ (ସେ ବାଳାର ମୂର୍ତ୍ତି) ୧ ବରଣ୍ଡ (ନୟନ ଅଞ୍ଜନ) ଅଟେ; 'ସେଣି' ସେ ମୋ ୨ଜୀବର ଜୀବନ (ଜୀବନବୃତ୍ତି); ବରହିଣପୁଚ୍ଛ (ମୟୂରପୁଚ୍ଛକୁ) ଗୁଚ୍ଛକ (ଗୁଚ୍ଛକରିଛି) କୁନ୍ତଳା (କେଶ) ଯାହାର ଏରୂପ ଯେ ମୋ ବାଳା, ତାକୁ ଲଭ୍ୟେ (ଲାଭାର୍ଥେ) କେ (କିଏ) ଆଦର ଦିଅନ୍ତା । ଏମନ୍ତ ଉତ୍କଣ୍ଠାରେ କହିଲେ । ୧୫ ।

---

୧—ବରଲସ୍ତ୍ରୀଣଷଟ୍ପଦ ଇତି ତ୍ରିକାଣ୍ଡଶେଷଃ ।

୨—କବରୀ କବରଂ ଚେତି ରତ୍ନକୋଷଃ ।

୧—ବର୍ତ୍ତି ର୍ଭେଷଜନିର୍ମାଣେ ନୟନାଞ୍ଜନଲେଖୟୋ ଶ୍ଚ ଇତି ମେଦିନୀ ।

୨—ବୃତ୍ତିର୍ଵର୍ତ୍ତନ ଜୀବନେ ଇତ୍ୟମରଃ ।

୩—ବରେ ଜାମାତରି ବୃତୌ ଦେବତାଦେରଭୀପ୍ସିତେ ଇତି ମେଦିନୀ ॥

ବର ଏତେ ଦେହ ମନେ ରହୁ ମନ ଯେମନ୍ତ ଅବସ୍ଥ ବନ୍ଧ ।
ବରବର୍ଣ୍ଣିମା ପାଶରେ ପରବେଶ ହୁଅନ୍ତୁ ଏକ ଲବର ।୧୬
ବରହ୍ନି ରୂପ ବରହାହ୍ଲାଦବନେ ଜାଳିବା କାମଦେବର ।
ବରଷି ଆହା ବାଣୀ ଭବଜଳକୁ ଲବାନ୍ତା କାନ୍ତା ଜବର ।୧୭
ବରତ୍ତିକ ଆଦ୍ୱ ପକ୍ଷୀ ଅଛ ପକ୍ଷ ଦେଲେ ଉଡ଼ନ୍ତ ଦବର ।
ବରଷମଧ୍ୟେ ଲୁଚିଥିବ କେହ୍ନ ମିଳନ୍ତ ବନ୍ଦୁ ଠାବର ।୧୮

---

୧୬ଶ ପଦ—ଏତେ ( ଏତିକି ମାତ୍ର ) ବର 'ହୁଅନ୍ତା' ଯେମନ୍ତ ଅବସ୍ଥବର (ଯେଉଁ ରୂପ ଦେହରେ) ମନ 'ରହୁଅଛି' ସେହିରୂପ ମନେ (ମନରେ) ଦେହ ରହୁ । ଏରୂପ ବର ଦେଲେ ୧ବରବର୍ଣ୍ଣିନୀ (ସୀତା) ପାଶ୍ୱରେ ଏକ ଲବର ( ଲବମାତ୍ରରେ ) ପରବେଶ (ପ୍ରବେଶ) ହୁଅନ୍ତି । ମନର ସ୍ୱେଚ୍ଛାଗାମିତ୍ୱ ହେତୁରୁ ଏହି ଭାବ । ୧୬ ।

୧୭ଶ ପଦ—'ପ୍ରିୟା ପାଶରେ ମିଳନ୍ତେ' କାମଦେବର (କନ୍ଦର୍ପର) ବରହ୍ନି (ବହ୍ନି—ଅଗ୍ନି) ରୂପ ( ରୂପରେ ) ବିରହ (ବିଚ୍ଛେଦକୁ) ହ୍ଲାଦବନେ ( ହ୍ଲାଦସ୍ୱରୂପ ବନରେ ) ଜାଳିବା ( ଜଳୁଥିବାର ଦେଖି ) କାନ୍ତା (ପ୍ରିୟା) ଜବର ( ବେଗରେ ) ଅହା 'ବୋଲିବା' ବାଣୀ ଭବ 'ରୂପ' ଜଳକୁ ବରଷି (ବୃଷ୍ଟି କରି) ଲବାନ୍ତା ( ଲିଭାଇ ପକାନ୍ତା ) କାମଦେବ ବୋଲିବାରୁ ଦେବ ଶବ୍ଦରେ ଉନ୍ମାଦଜନକତ୍ୱ ସୂଚିତ ହେଲା ଯଥା— 'ବ୍ରଜପୁର ବନିତାନାଂ ବର୍ଦ୍ଧୟନ୍ କାମଦେବ' । ୧୭ ।

୧୮ଶ ପଦ—'ନୋହିଲେ' ୧ବରତିକି (ବଣି) ଆଦ୍ୱ ପକ୍ଷୀ 'ଏଠାରେ ତ ଅଛ, 'ତୁମମାନଙ୍କ ମଧ୍ୟରେ' କେ ( କେହି ) ପକ୍ଷ (ଡେଣା) ଦେଲେ ୨ଦବର ( ଆକାଶରେ ) ଉଡ଼ି ୩ବରଷ ( ଜମ୍ବୁଦ୍ୱୀପ ) ମଧ୍ୟେ (ମଧ୍ୟରେ) କେହ୍ନ ଲୁଚିଛ ଥିବ 'ଧନା' ବନ୍ଧୁ ଠାବର (ମୋ ପ୍ରିୟା ପାଶରେ) ମିଳନ୍ତ । ୧୮ ।

---

୧—ଶୀତେ ସୁଖୋଷ୍ଣସର୍ବାଙ୍ଗୀ ଗ୍ରୀଷ୍ମେ ଚ ସୁଖଶୀତଳା ।
ଭର୍ତ୍ତୃଭକ୍ତା ଚ ଯା ନାରୀ ସା ଜ୍ଞେୟା ବରବର୍ଣ୍ଣିନୀ ଇତି ॥
୧—ବର୍ତ୍ତିକୋ ବର୍ତ୍ତିକାଦସ୍ତୁ ଇତ୍ୟମରଃ ।
୨—ଦ୍ୟୌଃ ସ୍ତ୍ରୀ ସ୍ୱର୍ଗେ ଚ ଗଗନେ ଦବ ବ୍ଲବେ ଇତି ମେଦିନୀ ॥
୩—ବର୍ଷୋଽସ୍ତ୍ରୀ ଭାରତାଦୌ ଚ ଜମ୍ବୁଦ୍ୱୀପାବ୍ଦ-ବୃଷ୍ଟିଷୁ ଇତି ମେଦିନୀ ।

ବର ଆରୋହା ତନୁ ଭିନ୍ନ ଦରେନି ଦର ଦେଲେ ଦିଗମ୍ବର ।
ବରଷକ କ୍ଷଣ ହେବା ତାହା ଭିନ୍ନେ ବଡ଼ ଖ୍ୟାତି ମାନବର ।୧୯।
ବରନ୍ତ ପ୍ରାଆଦ୍ୟେ ମୋ ଦୁଦ୍ଦଶା ରତି ବିଚ୍ଛେଦେ ହୋଇ ଅବର ।
ବରଜନ କାହିଁ ଅତନୁ ହେବାର କଲା ଜଡ଼ ବେଦବର । ୨୦ ।
ବରଅଙ୍ଗୀ ଅଙ୍ଗେ ମିଶନ୍ତି ପୁଣି ତା କର ଘାବେ ସ୍ବଭାବର ।
ବରତ କି କରି କାହିଁ ଖ୍ୟାପିଥିଲ ଅଜଣା ସେ ପୂରୁବର । ୨୧ ।

---

୧୯ଶ ପଦ—ବର ଆରୋହା ( ବରାରୋହା ସ୍ତ୍ରୀର ) ତନୁ ( ଦେହ ) ଭିନ୍ନ 'ହେବା' ଦର (ଉପ୍ତ୍ତି) ଦ୍ବାର (ଶିବଙ୍କୁ) ଦିଗମ୍ବର ( ଉଲଗ୍ନ ) କଲ; ତା ( ସେହି ସ୍ତ୍ରୀର ) ଭିନ୍ନେ ( ଭିନ୍ନରେ ) ମାନବର କ୍ଷଣକେ ବରଷ (ବର୍ଷ) ସମ ହେବା ବଡ଼ କି ? (ବଡ଼ ନୁହେ) ଇତି କାକୁଃ । ୧୯ ।

୨୦ଶ ପଦ—ରତି (ପୁରତି ରୂପ ରତି ଦେବୀ) ବିଚ୍ଛେଦେ (ବିରହରେ) ମୋ ଦୁଦ୍ଦଶା ଶମ୍ବରର 'ଅପୁର' ହୋଇ ପ୍ରାଆଦ୍ୟେ ବରନ୍ତେ (ପ୍ରକଟିଲା) । ବେଦବର (ବ୍ରହ୍ମା) 'ମୋତେ' କାହିଁ ଅତନୁ ( ତନୁହୀନ ) ହେବାର ବରଜନ (ବର୍ଜନ) କଲ; 'ଏଣୁ ସେ' ଜଡ଼ (ଅଜ୍ଞ) କାହିଁକି, ରତି ଦେବୀ ବିଚ୍ଛେଦରେ କନ୍ଦର୍ପ ଅତନୁ ହୋଇଥିଲ ତଦ୍ରୂପ ମୋତେ କରଅଛନ୍ତି ଏହିଭାବ । କନ୍ଦର୍ପ ହରକୋପାନଳରେ ଜଳିଗଲାପରେ ରତିଦେବୀକି ଶମ୍ବରାସୁର ହରିନେଲା, ମୁଁ ବଞ୍ଚିଥାଉଁ' ମୋ ପ୍ରିୟାକୁ ଅପୁର ନେଲା, ଏଣୁ ବିଧି କାହିଁକି ମୋତେ ଦେହଶୂନ୍ୟ କରୁନାହିଁ ଏହି ତାତ୍ପର୍ଯ୍ୟାର୍ଥ । ୨୦ ।

୨୧ଶ ପଦ—ପୂରୁବର (ପୂର୍ବଜନ୍ମରେ) କି ବରତ (ବ୍ରତ) କରି କାହିଁ (କେଉଁ ତୀର୍ଥରେ) ଖ୍ୟାପିଥିଲ, ସେ ( ସେ କଥା ) ଅଜଣା (ମୋତେ ଜଣା ଯାଉନାହିଁ) ତାର ଅଙ୍ଗ ସଙ୍ଗ ହୋଇଥିଲ ଏହିଭାବ । ପୁଣି ତା କର (ତାହା କରିବ ବୋଲି) ସ୍ବଭାବରେ ଘାବେ ( ଭାବୁଅଛୁ ) 'ଏ ଦେହାନ୍ତରେ' ବରଅଙ୍ଗୀ (ବରାଙ୍ଗୀର) ଅଙ୍ଗେ (ଦେହରେ ମିଶନ୍ତି 'ବୋଲି' । ୨୧ ।

ବର ଶଢ ପାଦ ଆଦ୍ୟପ୍ରାନ୍ତେ ଛନ୍ଦ ବୁଧରଞ୍ଜନ ଖବର ।
ବରଚେତ ଚନ୍ଦ୍ରସିଂହାବଲୋକେ କହେ ଉପଇନ୍ଦ୍ର ବୀରବର । ୨୨ ।

---

## ଏକତ୍ରିଂଶ ଛାନ୍ଦ ।

ରାଗ ଚନ୍ତା ମୁଖାରି—ଆଷାଢ଼ଶୁକ୍ଳ ବାଣୀ ।

ବକେ ବସିଥିଲ ଧ୍ରୁବ ଉପରେ । ବିଷ୍ଣୁ ପ୍ରଦକୁ ଭଜିଲି ଉତ୍ସରେ ।
ବଳକ୍ଷ ପକ୍ଷକୁ ଅଙ୍ଗରେ ବନ୍ଧ । ବହନ ସେ ତମ ନାଶନ କନ୍ଧ ।
ବକତା ଏ ଗିର । ବିଶ୍ରାମ ବାଗ୍ର କହିବା ସୁନ୍ଦର । ୧ ।

---

୨୨ଶ ପଦ—ପାଦ ଆଦ୍ୟ ପ୍ରାନ୍ତ ( ପାଦର ଆଦ୍ୟରେ ଓ ପ୍ରାନ୍ତରେ ) ବର (ବଶେଦ) ଯିଛ 'ହୋଇଅଛି' ଖବର ( ଖବରେ ) ବୁଧରଞ୍ଜନ (ବୁଧଜନ ରଞ୍ଜନକାରୀ) 'ପୁଣ' ଚନ୍ଦ୍ର ସିଂହାବଲୋକେ (ଚନ୍ଦ୍ରସିଂହାବଲୋକନରେ) 'ପ୍ରବର୍ତ୍ତିଛି' 'ଏ ଯେଉ' ଛନ୍ଦ 'ତାକୁ' ବୀରବର 'ଉପାଧିଯୁକ୍ତ' ଉପଇନ୍ଦ୍ର (ଉପେନ୍ଦ୍ର ନାମା କବି) କହେ । ୨୨ ।

---

ଏକତ୍ରିଂଶ ଛନ୍ଦ ।

୧ମ ପଦ—'ବର୍ତ୍ତିକ ଆଦ ପକ୍ଷୀ ଅଛ, ତୁମ୍ଭେ କେଣା ଦଅ, ସେହା ପୂର୍ବ ଛନ୍ଦରେ ରାମ ପଗ୍ଭରିଥିବାରୁ' ବକେ ( ଏକବକ ) ୧ଧ୍ରୁବ (ଲଣ୍ଡାବୃକ୍ଷ) ଉପରେ ବସିଥିଲ; 'ଆଜନ୍ମରୁ ବସିଥିଲ ? ଏମନ୍ତ ନୁହେଁ' ୨ବିଷ୍ଣୁ ପ୍ରଦ (ଆକାଶରେ) ଭଜିଲ ଉତ୍ସରେ ( ଉଡ଼ିଲ ପର ); 'ପୁଣି ସେ ବକ' ବଳକ୍ଷ ପକ୍ଷକୁ ( ଶୁକ୍ଳବର୍ଣ୍ଣ ପକ୍ଷୀମାନଙ୍କୁ ) 'କମ୍ବା ବିଷ୍ଣୁପ୍ରଦାଶ୍ରିତ ଜନ ହେଉଛୁ ନିର୍ମଳ ପକ୍ଷକୁ' ଅଙ୍ଗରେ ବନ୍ଧ 'ଥାଏ'; ରାମଙ୍କର ୩ତମ (ଶୋକ) ନାଶକୁ ବହନ (ବେଗରେ) ବନ୍ଧ (କଣ) ଏଗିର ବକତା ( ଏମନ୍ତ କହିଲ )

---

୧—ସ୍ଥାଣୁର୍ବା ନା ଧ୍ରୁବଃ ଶଙ୍କୁରିତ୍ୟମରଃ ।

୨—ବିଯଦ୍ବିଷ୍ଣୁପଦଂ ବା ତୁ ପୁଂସ୍ୟାକାଶବିହାୟସୀ ।

୩—ତମୋ ଧ୍ୱାନ୍ତେ ଗୁଣେ ଶୋକେ କ୍ଲୀବଂ ବା ନା ବଧୂ ନୁଦେ ଇତି ମେଦିନୀ ॥

ବଧି କାମ ଧର୍ମେ ଅଛୁ ଜୀବନେ । ବଧୂକାମବଶେ ଭ୍ରମ ଏ ବନେ ।
ବାଉନୁଅଛ ଯେଉଁ ରମଣୀପ୍ରେ । ବିଶେଷ ଶୋଭା ତହୁଁ ରମଣୀଏ ।
ବିଂଶ ବାହୁ ରଥେ । ବିଲୋକିଛୁ ଗଲା ଦକ୍ଷିଣ ପଥେ । ୨ ।
ବିଷପ୍ରସୂନ ଇନ୍ଦୁ ନିତି ଦେଖେଁ । ବିଲକ୍ଷ୍ୟ ପ୍ରସନ୍ନ ନ ଥିଲା ମୁଖେ ।
ବାଷ୍ପ ହେଉଛି ନୟନୁ ଜନିତା । ବୋଲନ୍ତି ମୀନ ଉଦ୍‌ଗାରେ ମୁକୁତା ।
ବଡ଼ ଉଣା ସେହି । ବାରିରେ ଲୁଚେ ଧରି ଭୟେଁ ମୂହିଁ ।୩।

ହେ ସୁନ୍ଦର ! ବିଶ୍ରାମ ( ସ୍ଥିତ ହୁଅ ), ୪ବାର୍ତ୍ତା ( ପଛରୁ ଥିବା ବୃତ୍ତାନ୍ତ ) କହିବା । 'ସେ ତିନି ବିଶେଷଣ ଦ୍ୱାରା ଚନ୍ଦ୍ରତୁଲ୍ୟ ହେଲା-ଚନ୍ଦ୍ର ଶୁକ୍ଳପକ୍ଷକୁ ଅଙ୍ଗରେ ବହେ , ଆକାଶରେ ଗମନ କରେ; ଧ୍ରୁବ ( ସ୍ଥାଣୁ-ମହାଦେବଙ୍କ ) ଉପରେ ( ମସ୍ତକରେ ) ବସିଥାଏ, ତମ ( ଅନ୍ଧକାରକୁ ନାଶେ ) । ୧ ।

୨ୟ ପଦ—କାମ ( କନ୍ଦର୍ପ ) ବଧି ( ବଧ କରନ୍ତେ ) 'ଆପଣ' ଧର୍ମେ ( ଧର୍ମବଳରେ ) ଜୀବନେ ( ପ୍ରାଣରେ ) ଅଛ; ବଧୂ ( ସ୍ୱକାନ୍ତାଠାରେ) କାମ ( ମନୋରଥ ) ବଶେ ( ବଶ ହେତୁରୁ ) ଏ ବନେ ଭ୍ରମ ( ଏହି ବନରେ ଭ୍ରମୁଅଛ ) । ଯେଉଁ ରମଣୀପ୍ରେ ( କମଳାପ୍ରୟରେ ) ବାଉନୁ ଅଛ ତହୁଁ ( ତାଠାରୁ ବିଶେଷ ( ଅଧିକ ) ଶୋଭା 'ଦଶେ' ରମଣୀଏ ( ଏମନ୍ତ ଗୋଟିଏ ରମଣୀ ) ବିଂଶବାହୁ ( ରାବଣର ) ରଥେ ( ରଥରେ ) ଦକ୍ଷିଣପଥେ ( ଦକ୍ଷିଣଦେଶ ମାର୍ଗରେ ) ଗଲା; ବିଲୋକିଛୁ ( ଦେଖିଛୁ ) । ୨ ।

୩ୟ ପଦ—ବିଷପ୍ରସୂନ ( ପଦ୍ମ ) ଇନ୍ଦୁ ( ଚନ୍ଦ୍ର ) 'ଏ ଦୁହିଙ୍କି' ମୁଁ ନିତି ଦେଖେଁ; ନିତି ଦେଖେଁ କିପରି କହିଲ, ଶିଶିର କାଳରେ ପଦ୍ମ ନ ଥାଏ, ଅମାବାସ୍ୟାରେ ତ ଚନ୍ଦ୍ର ନ ଥାଏ, ନା, ତାହା ନୁହେ, ପଦ୍ମ ଚନ୍ଦ୍ରର ନୀତି ( ନ୍ୟାୟକୁ ) ଦେଖେ ( ଦେଖାଉଛି ); ମୁଖେ ( ସେ ସ୍ତ୍ରୀ ମୁଖରେ ) ପ୍ରସନ୍ନ ନ ଥିଲା, 'ସେ ସ୍ତ୍ରୀ ମୁଖ ଶୁଖି ଯାଇ ଥିଲେ ମଧ୍ୟ ତଥାପି ତାକୁ ପଦ୍ମ ଚନ୍ଦ୍ର ଦୁହେଁ' ବିଲକ୍ଷ୍ୟ ( ଲକ୍ଷ୍ୟ ନୁହନ୍ତି ) । ନୟନୁ ( ତାଙ୍କ ନେତ୍ରରୁ ) ବାଷ୍ପ ( ଲୋତକ ) ଜନିତା ( ଜାତ ) ହେଉଛି 'ଯାହା ସେ ତାହା ନୁହେ' ଆଉ

୪—ବାର୍ତ୍ତା ପ୍ରବୃତ୍ତିର୍ବୃତ୍ତାନ୍ତ ଇତ୍ୟମରଃ ।

ବାସ ବହନ୍ତି ଅଙ୍ଗୁ ଯାଉଥିଲି । ବେଢ଼ିଥିଲେ ରଥେ ଭ୍ରମରମାଳା ।
ବର୍ଣ୍ଣଖଣ୍ଡକ ବଜୁଳିରେ ନାହିଁ । ବାରଦ ନିକଟେ ଦେଖିଛୁ ମୁହିଁ ।
ବୀଣା କ ମଧୁର । ବାହାରୁଥିଲି ଯେଉଁ ବାମସ୍ୱର । ୪ ।
ବୋଲବ ଭୁ ବୀଣା ଶୁଣିଲୁ । କାହୁଁ । ବାଜଇ ସପତ ସ୍ୱରରେ ସେହୁ ।

---

ମୀନ ( ମତ୍ସ୍ୟ ) ମୁକ୍ତା * ଉଦ୍‌ଗାରେ ( ବାନ୍ତକରେ ) 'ଏହୋତ' ବୋଲନ୍ତୁ 'ତାହା ନୁହେ, କାହିଁକି' ସେହି ( ମୀନ ) ତୃତ୍ତ ଓ୍ଣା, 'ସେଣୁ' ତାଙ୍କରେ ଲୁଚେ ( ନଯ୍ୟନ ସମାନ ନୋହିବାରୁ ପାଣିରେ ଲୁଚି ରହେ ), ମୁଁ 'ପୁଣି ତାଙ୍କୁ ଧରି ଭକ୍ଷେ ( ଖାଇଯାଏଁ ) । ୩ ।

୪ର୍ଥ ପଦ—ଅଙ୍ଗୁ ( ତାଙ୍କ ଅଙ୍ଗରୁ ) ବାସ ( ସୌରଭ ) ବହନ୍ତି ( ବାହାରି ) ବହୁଦୂର' ଯାଉଥିଲି, ତେଣୁ ରଥେ ( ସେହି ରଥରେ ) ଭ୍ରମରମାଳା ( ଭୃଙ୍ଗଶ୍ରେଣୀ ) ବେଢ଼ିଥିଲେ, ଏହା ଦ୍ୱାରା ପଦ୍ମିନୀ ସ୍ତ୍ରୀ ସୂଚିତ ହେଲା* ବର୍ଣ୍ଣ ଖଣ୍ଡକ ( ତାଙ୍କ ବର୍ଣ୍ଣର ଖଣ୍ଡକ ) ବଜୁଳିରେ ନାହିଁ । ଏହା ଦ୍ୱାରା ଗୌରବର୍ଣ୍ଣ ସୂଚିତ ହେଲା । 'ବିଜୁଳିରେ ନ ଥିବା କଥା ତୁ କିପରି ଜାଣିଲୁ ବୋଲିବ' । ମୁହିଁ ବାରଦ ( ମେଘ ) ନିକଟେ ( ନିକଟକୁ ଯାଇଁ ) ଦେଖିଛୁ । 'ତାଙ୍କଠାରୁ' ଯେଉଁ ବାମ ( 'ମନୋହର ) ସ୍ୱର ( ବେଦନ ଧ୍ୱନି ) ବାହାରୁଥିଲି ଅଥବା ବାମ ସ୍ୱର ( ହେ ବାମ ଏରୂପ ଯେଉଁ କନ୍ଦନ ସ୍ୱର ) ବାହାରୁଥିଲି ତା ସଙ୍ଗରେ ବୀଣାସ୍ୱର କି ମଧୁର ( କୁତ୍ସିତ ମଧୁର ) ସମାନ କାହୁଁ ହେବ ଏହି ଭାବ । ୪ ।

୫ମ ପଦ—'ତୁମ୍ଭେ' ବୋଲିବ ଭୁ ପକ୍ଷୀଜନ୍ତୁ' ବୀଣା କାହୁଁ ଶୁଣିଲୁ ? ସେହି ( ବୀଣା ) ୧ସପତ ସ୍ୱରରେ ବାଜଇ, ବଷାଭୁ (ଭେଦପାରୁ) ୨ଧୈବତ

---

* କମ୍ବୁକୁମ୍ଭଭୂତବରାହଶଙ୍ଖ ମତ୍ସ୍ୟାହି ଶୁକ୍ତ୍ୟୁଦ୍ଭବବେଣୁଜାନି ।
ମୁକ୍ତାଫଳାନି ପ୍ରଥିତାନି ଲୋକେ ତେଷାଂ ତୁ ଶୁକ୍ତ୍ୟୁଦ୍ଭବମେବ ଭୂରି । ଇତି ।
*—ପଦ୍ମିନୀ ପଦ୍ମଗନ୍ଧା ସ୍ୟାଦିତି ।
୧—କିଂ ଭୂଷାସ୍ଥାଂ ବିତର୍କେ ଚ ନିଷେଧପ୍ରଶ୍ନୟୋରପୀତ୍ୟମରଃ ।
୧—ନିଷାଦର୍ଷଭ ଗାନ୍ଧାରଷଡ୍ଜ ମଧ୍ୟମଧୈବତାଃ ।
ପଞ୍ଚମଶ୍ଚେତ୍ୟମୀ ସପ୍ତ ତନ୍ତ୍ରୀକଣ୍ଠୋତ୍ଥିତାଃ ସ୍ୱରା ଇତ୍ୟମରଃ ।
୨—ଗତ୍ୱା ନାଭେରଧୋ ଭୂତଂବସ୍ତିଂ ପ୍ରାପ୍ୟୋର୍ଦ୍ଧ୍ୱଗଃ ପୁନଃ ।
ଧାବନ୍ନିବ ଚ ଯୋ ଯାତି କଣ୍ଠଦେଶଂ ସ ଧୈବତଃ ।

ବର୍ଷାଭୂ ଧୈବତ୍ର ମୟୂର ଷଡ୍‌ଜା । ବନପ୍ରିୟରେ ପଞ୍ଚମ ସହଜା।
ବାଜୁଛନ୍ତି ମୋ କର୍ଣ୍ଣେ । ବଧିରେ ଏହିପରି ଆଉମାନେ ।୫।
ବାର୍ତ୍ତା ଶୁଣି ବର ଯାଚଁ କୃପାଳୁ । ବସାରେ ବର୍ଷାରେ ଆହାର ମିଳୁ ।
ବଳାକା ଗ୍ରାହୁଁ ଆଜ୍ଞା ଦେଲେ ହେଉ । ବକ୍ଷ ଚତୁରି ମାସ ଆଣି ଦେଉ
ବଲ୍ଲଭୀ ଉଚ୍ଛିଷ୍ଟ । ବୋଲୁଁ ବୋଇଲେ ପାନ କରି ଓଷ୍ଠ ।୬।

'ସ୍ୱର', ମୟୂର 'ଠାରୁ' ୩ଷଡ୍‌ଜା 'ସ୍ୱର', ବନପ୍ରିୟରେ (କୋକିଳଠାରୁ) ସହଜରେ ୪ପଞ୍ଚମ' 'ସ୍ୱର'; ମେ କର୍ଣ୍ଣେ (ଏ ସବୁ ସ୍ୱର ମୋ କର୍ଣ୍ଣରେ ବାଜୁଛି), ଆଉମାନେ ( ଅନ୍ୟାନ୍ୟ ଶବ୍ଦ ସ୍ୱର ସବୁ) ବଧିରେ ଏହିପରି ବାଜୁଛି✽ ।୫।,

୬ଷ୍ଠ ପଦ—ବାର୍ତ୍ତା (ଏମନ୍ତ ସୀତାଙ୍କ ବାର୍ତ୍ତା ) ଶୁଣି କୃପାଳୁ) ଦୟାଳୁ ରାମ) ବର ଯାଚଁ ( ଯାଚନ୍ତେ ) 'ମୋତେ' ବର୍ଷାରେ (ବର୍ଷାକାଳରେ) ବସାରେ ଆହାର ମିଳୁ 'ଏମନ୍ତ' ୧ବଳାକା ( ବକ ) ଭାଷନ୍ତେ 'ରାମ ଆଜ୍ଞା ଦେଲେ ହେଉ, ବକ୍ଷ ( ନୋ ଭାର୍ଯ୍ୟା ) ଚତୁରମାସ ( ଚତୁର୍ମାସ୍ୟାରେ ) 'ଆହାର' ଆଣି ଦେଉ; 'ଏମନ୍ତ ଶୁଣି' 'ତାଙ୍କ' ବଲ୍ଲଭୀ ଉଚ୍ଛିଷ୍ଟ ( ସ୍ତ୍ରୀ ଅଇଁଠା ) ବୋଲୁଁ (କହନ୍ତେ) 'ରାମ' ବୋଇଲେ ଓଷ୍ଠ ପାନକରି ( ସ୍ତ୍ରୀ ଓଷ୍ଠ ପାନ କରୁଥାଇ ) 'ଏଥିରେ ଦୋଷ ନାହିଁ' ✽ । ୬ ।

୩—ନାସାଂ କଣ୍ଠମୁରସ୍ତାଳୁଂ ଜିହ୍ୱାଂ ଦନ୍ତାଂଶ୍ଚ ସଂସ୍ପୃଶନ୍ ।
ଷଡ଼୍‌ଜଃ ସଂଜାୟତେ ଯସ୍ମାତ୍ତସ୍ମାତ୍‌ଷଡ଼୍‌ଜ ଇତି ସ୍ମୃତଃ ।
୪—ପ୍ରାଣୋପାନଃସମାନଶ୍ଚୋଦାନବ୍ୟାନୌ ଚ ବାୟବଃ ।
ଏତେଷାଂ ସମବାୟେନ ଜାୟତେ ପଞ୍ଚମସ୍ୱରଃ ।
✽—ଯଦୁକ୍ତଂ ସଙ୍ଗୀତ ଶାସ୍ତ୍ରେ—
ମୟୂରାଃ ଷଡ୍‌ଜଃ ମାଖ୍ୟାନ୍ତି ଋଷଭଂ ବକ୍ତ୍ର ଗୃଚକଃ ।
ଗ୍ରୁଗୋଗାନ୍ଧାରମାଚଷ୍ଟେ କ୍ରୌଞ୍ଚୋ ବଦତ୍ତ ମଧ୍ୟମଂ ।
କୋକିଳଃ ପଞ୍ଚମଂ ବ୍ରୂତେ ଭେକୋ ବଦତି ଧୈବତଂ ।
ନଷାଦଂ ଗ୍ରସତେ ହସ୍ତୀତ୍ୟେତେ ବ୍ରହ୍ମାଦସମ୍ମତା ଇତି ।
ଏ ବିଷମାଳଂକାର ହେଲା ଯଥା—
ଉକ୍ତ ପ୍ରଥୁକ୍ଷ୍ମଗ୍ୟରୂପ୍ୟନବନ୍ଧୋ ବିଷମୋ ମତ ଇତି ।
୧—ବଳାକା ବିଷକଣ୍ଠିକା ଇତ୍ୟମରଃ ।
✽—ମକ୍ଷିକାସନ୍ତତିଧାର ମାର୍ଜାରଶ୍ଚ ବ୍ରହ୍ମବଦବଃ ।
ବାଳବାମାମୁଖୋଚ୍ଛିଷ୍ଟଂ ନ ଦୋଷୋ ମନୁରବ୍ରବୀତ ।।

ବିଳ ପୁଣି ବନେ ବାରତା ରତା । ବିକାଶ କାଶହାସିତା ହା ସୀତା ।
ବିକ୍ଷପଲଙ୍କ ମୋ ତୋ ଶୟନକୁ । ବ୍ୟଥା ଦେଲି କ କୋମଳ ଅଙ୍ଗକୁ ।
ବିଧୁର ଏ ଦୋଷୁଁ । ବସୁ ନାହୁଁ କୋଳେ ଦଶେ ତ ଦଶୁ ।୭।
ବୋଳ ହୋଇ ଏବେ ବିହୁ ଚନ୍ଦନ । ବିଞ୍ଚିଥିବ ତହିଁ କର୍ପୂର ଚୂର୍ଣ୍ଣ ।
ବିଗୁଣ ନ ଘେନିବ ଦେବ ଲେଖି । ବେଳେ ଶ୍ରୀହସ୍ତେ ରେ ଆଜନ୍ମସୁଖି
ବକ୍ଷୋଜ ଯେ ନିନ୍ଦ । ବନ୍ଧୁ ଆଳିଙ୍ଗନେ ବିଳଗ ହୁଦୁଁ ।୮।
ବୋଇଲି କୁକ୍କୁଟ ଶୁଣି ସେ କ୍ଷଣି । ବତିଶଲକ୍ଷଣୀ ଗୃରୁଈକ୍ଷଣୀ ।
ବିହାୟସପଥେ ଗଲନି ରଥେ । ବସାଇ ନେଉଥିଲି ରକ୍ଷନାଥେ ।
ବିଳସେ କେ ଆଗ । ବିବେକୀ ହୋଇତ କଥା-ପ୍ରସଙ୍ଗ । ୯ ।

---

୭ମ ପଦ—ବକ ପାଶରୁ ଯାଇଁ ପୁଣି ବନେ ( ବନ ମଧ୍ୟରେ) ବୁଲି ବାରତା ରତା (କହିଲେ) ବିକାଶ କାଶହାସିତା ( କାଶହାସିନୀ ) ହା ସୀତା ତୋ ନୟନକୁ ମୋ ବକ୍ଷ ପଲଙ୍କ 'ତୋ' କୋମଳ ଅଙ୍ଗକୁ ବ୍ୟଥା ଦେଲି କ ? ଏ ଦୋଷୁ ( ଏହି ଦୋଷରୁ ) 'ତୁ' [୧]ବିଧୁର (ବିଶ୍ଳେଷିତ) ହେଲୁ; ଦଶେ (ଦଶମାନଙ୍କରେ) ଦଶୁତ (ଦଶୁଅଛତ) ! କୋଳେ (ମୋ କୋଳରେ ବସୁ ନାହୁଁ । ୭ ।

୮ମ ପଦ—ଏବେ ତହିଁ ( ସେହି ମୋହର କଠୋର ବକ୍ଷସ୍ଥଳରେ ) ବିହୁ (ବିହୁତ) ଚନ୍ଦନ ବୋଳ ହୋଇ କର୍ପୂର ଚୂର୍ଣ୍ଣ ବିଞ୍ଚିଥିବୁ । ରେ ଆଜନ୍ମ ସୁଖି ! ଶ୍ରୀହସ୍ତେ ( ତୋହର ଶ୍ରୀ ହସ୍ତରେ ) ବେଳେ ( ଥରେ ) ଲେଖି ଦେବୁ ମୁଁ ବିଗୁଣ ନ ଘେନିବ । ହେ ବନ୍ଧୁ ! ଆଲିଙ୍ଗନେ ( ଆଲିଙ୍ଗନ କାଳରେ ) ବିଳଗ ହୁଦୁଁ ( ବିଳଗ ହୁଦକ୍ଷ ହେବାରୁ ) 'ତୋ' ବକ୍ଷୋଜକୁ ନିନ୍ଦୁ । ୮ ।

୯ମ ପଦ—ଗ୍ରାମ ଏମନ୍ତ ବିଭ୍ରମରେ କହିବାର ଶୁଣି କୁକ୍କୁଟ (କୁକୁଡ଼ା) ସେକ୍ଷଣି ବୋଇଲି ବତିଶ ଲକ୍ଷଣୀ ( ବତିଶ ଲକ୍ଷଣଯୁକ୍ତା ) ଗୃରୁଈକ୍ଷଣୀ ( ସୁନ୍ଦରନୟନା ) 'ତୁମ୍ଭ ପ୍ରିୟା' ବିହାୟସପଥେ ( ଆକାଶମାର୍ଗରେ ) ଗଲନି, ରକ୍ଷନାଥେ ( ରାବଣ ) ରଥେ ବସାଇ ନେଉଥିଲି । ଆଗ (ତୁମ୍ଭ

---

୧—ବିଧୁରଂ ସ୍ୟାତ୍ ପ୍ରବିଶ୍ଳେଷେ ଇତି ମେଦିନୀ ।

ବଗୃର କଲିନା ବନ ପର୍ବତେ । ବୁଲି 'ସୁକୁମାରୀ ଶ୍ରମ ପ୍ରବର୍ତ୍ତେ ।
ବମାନେ ତା ସଙ୍ଗେ ସୁଖାର୍ଥେ ଯାଇ । ବୃଝିବାରେ ମୋ ଅନୁରାଗ ନାହିଁ
ବାରିଧର ଅକ୍ଷେ । ବକ୍ଷ ଦେଶକୁ ପଙ୍କିଳ କରଛୁ ।୧୦।
ବଧିରେ ପ୍ରଜାପତି-ନପ୍ତା ଅର୍ଥୀ । ବ୍ୟାକୁଳ-ବଳୀବର୍ଦ୍ଦ ଯୋଚ ତଥି ।
ବଳେ ହରଷି-ପ୍ରଜାଙ୍କୁ ଘଉଡ଼ି । ବୃଣିବାକୁ ପ୍ରେମବଣିକ ଲୋଡ଼ି ।
ବଳ ଥିଲେ ତୁମ୍ଭେ । ବିଚ୍ଛେଦ-ସୀରକୁ ଦ୍ୱନ୍ଦ୍ୱ ଆରମ୍ଭେ ।୧୧।

---

ଆଗରେ) କେ (କିଏ) ବଳସେ (ବଳସୁଛୁ) 'କେହି ନାହିଁ' । 'ଆପଣ' ବଦେକୀ ହୋଇଛ ୧କଥାପ୍ରସଙ୍ଗ (ବାତୁଳ) 'ହୋଇଅଛ' ।୯।

୧୦ମ ପଦ—ବଗୃର କର ନା ( ତୁମ୍ଭେ ଏମନ୍ତ ବଗ୍ଧର ନ କରି ), 'ମୋ ପ୍ରିୟା' ସୁକୁମାରୀ ବନ୍ ପର୍ବତେ ( ବନରେ ଓ ପର୍ବତରେ ) ବୁଲି୍ ଶ୍ରମ ପ୍ରବର୍ତ୍ତେ ( ଶ୍ରମ ପାଇଲ ); 'ଏଣୁ' ତା ସଙ୍ଗରେ (ସେହି ରାକ୍ଷସ ସଙ୍ଗରେ) ସୁଖାର୍ଥେ ( ସୁଖ ପାଇବା ପାଇଁ ) ବମାନେ ( ରଥରେ ) ଯାଇ (ଗଲା) । 'ଏମନ୍ତ ନୁହେ'; କାରଣ, ମୋ ବୁଝିବାରେ 'ତାଠାରେ' ଅନୁରାଗ (ସ୍ନେହ) 'ତାଙ୍କର' ନାହିଁ; ବାରିଧର ଅକ୍ଷି ( ତାଙ୍କର ଜଳଯୁକ୍ତ ଚକ୍ଷୁ ) ବାରିଧର ( ମେଘ ) ହେଲା, ସେ ବକ୍ଷ ଦେଶକୁ ( ବକ୍ଷସ୍ଥଳକୁ ) ପଙ୍କିଳ କରିଅଛୁ । ତା ଆଖିରୁ ଲୁହବହି ଗଳିତ ଚନ୍ଦ୍ର ଯାଉଥିଲା ।ମେଘ ଦେଶକୁ ପଙ୍କିଳ (କାଦୁଅ) କରେ; ଏଣୁ ସ୍ନେହ ନ ଥିବାର ଜଣାଗଲା ଏହି ଅଭିପ୍ରାୟ ।୧୦।

୧୧ଶ ପଦ—ବଧିରେ (ବିଧାନରେ ବା ଦୁର୍ବୁଦ୍ଧିରେ) ପ୍ରଜାପତିନପ୍ତା ( ରାବଣ ବା ଗ୍ରାମାଧିକାରୀର ନାତି ) ଅର୍ଥୀ ( କ୍ଷମତା ) 'ହୋଇଅଛ', ବ୍ୟାକୁଳ 'ରୂପ' ବଳୀବର୍ଦ୍ଦ (ବଳଦ) ତଥି (ସେହି 'ପଙ୍କିଳ ବକ୍ଷଦେଶରେ) ଯୋଚଅଛ । ହରଷ ପ୍ରଜାଙ୍କୁ ( ହର୍ଷରୂପ ପ୍ରଜାମାନଙ୍କୁ ) ବଳେ ( ବଳପୂର୍ବକ ) ଘଉଡ଼ି ( ଦୂରକରି ) 'ଦେଇଅଛ'; ପ୍ରେମବଣି ( ସ୍ନେହସମୂହ ) ସେ ବଣ ( ଖରା ) ହେଲା, ତାକୁ ବୁଣିବାକୁ ଲୋଡ଼ି ( ଲୋଡୁଅଛ କିନ୍ତୁ ବୁଣି ନାହିଁ ), ବଳଥିଲେ ତୁମ୍ଭେ ଦ୍ୱନ୍ଦ୍ୱ ଆରମ୍ଭେ

---

୧—କଥାପ୍ରସଙ୍ଗୋ ବାତୁଲେ ବକ୍ଷଚୈତ୍ୟୋପି ଚ ଦୃଶ୍ୟୋଶତି ଭୂମୁଦାକରା ।

ଖରଭଦ୍ର ଭଣି ଚରଣାୟୁଧ । ବହାୟୁ ସେ ତୁ କ୍ଷବିୟୁ-ପ୍ରସିଦ୍ଧ ।
ବହ ମୂକୁଟ କହିଲୁ ସନ୍ଦେଶ । ବୋଲୁଁ ହେମ ଚର୍ମେ ହେଲା ଲଳସ ।
ବୃଷରେ କୋପନ । ବଚରେ ଯୁକ୍ତ ନ କହ ବଚନ ।୧୨।
ବାଣୀ ନ ଶୁଣ ପ୍ରଶ୍ରବଣ ଥାଇଁ । ବୋଲାଅ ଶାଖାବନ୍ତ ସାଖା ନାହିଁ ।
ବିକାଶ କୁସୁମେ ହାସ ରଚନ । ବସ ନା ଉଚ୍ଚରେ ହୁଅ ପତନ ।
ବୋଲନ୍ତେ ଖସିଲେ । ବବର୍ଣ୍ଣିତା ସଙ୍କୁଚିତ ହସିଲେ ।୧୩।

---

(ଜଲହାରମୁଦ୍ରେ) ଶିର ( ମୁଣ୍ଡ ) ୧ସୀର ( ଲଙ୍ଗଳ ) ହେଳ, ତାକୁ ବଚ୍ଛେଦ (ଛେଦନ କର) । ୧୧ ।

୧୨ଶ ପଦ—ଚରଣାୟୁଧ (କୁକ୍କୁଟ) 'ଏମନ୍ତ କହନ୍ତେ' ୧ଖରଭଦ୍ର (ରାମ) ଭଣି (କହିଲେ), ବହାୟୁ ସେ (ପକ୍ଷିଙ୍କ ମଧ୍ୟରେ) ତୁ ପ୍ରସିଦ୍ଧ (ବଖ୍ୟାତ) କ୍ଷବିୟୁ 'ଏଣୁ' ସନ୍ଦେଶ (ବାର୍ତ୍ତା) କହିଲୁ, ତୁ ହେମମୁକୁଟ ବଦ । ବୋଲୁଁ (ଏମନ୍ତ ରାମ ବୋଲନ୍ତେ) 'କୁକ୍କୁଟର' ଚର୍ମ 'ମୁକୁଟରେ' ଲଳସ (ଲୋଭ) ହେଲା । 'ନାହିଁକ, ସୁନାମୁକୁଟ କହିଲେ ଲୋକରେ ଲୋକେ ମୋତେ ମାନ୍ୟ ପଚାରିବେ ।' 'ତଦନ୍ତେ ରାମ' ବୃଷରେ (ବୃଷଙ୍କ ଠାରେ) କୋପନ କ୍ରୋଧ) 'ଚହ୍ନ' 'କହିଲେ' ୨ଚଚ ( ଶୁକପକ୍ଷୀ ) ସେ ବଚନ (ବାଣୀ) ହେଳ 'ତହିଁ ରେ ତୁମ୍ଭେ' ଯୁକ୍ତ 'ହୋଇଅଛ' 'ପରୁଶଲେ କାହିଁକି' ବଚନ (କଥା) ନ କହ (କହ ନାହିଁ) । ୧୨ ।

୧୩ଶ ପଦ—୧ପ୍ରଶ୍ରବଣ (ପ୍ରସ୍ୟନ୍ଦନ) 'ସେ' ପ୍ରଶ୍ରବଣ ( ପ୍ରକୃଷ୍ଟ ଶ୍ରବଣ ) ହେଳ 'ସେ, ଥାଇ ବାଣୀ ( ମୋ କଥା ) ନ ଶୁଣ ( ଶୁଣୁନାହିଁ ) ସାଖା ( ମୋହର ସହାୟ ) ନାହିଁ, 'ତୁମ୍ଭେ' ଶାଖାବନ୍ତ ବୋଲାଅ, ପୁଣି' ବିକାଶ କୁସୁମେ ( ବିକଶିତ ପୁଷ୍ପରେ ) ହାସ ରଚନ 'କରୁଅଛ' ( ହସୁଅଛ ) । 'ଏଣୁ ତୁମ୍ଭେମାନେ' ଉଚ୍ଚରେ ବସ ନା ( ନ ବସ ); ପତନ ହୁଅ ( ଖସିପଡ଼ ), ବୋଲନ୍ତେ ( ରାମ ଏହା କହନ୍ତେ ) ଖସିଲେ (ପର୍ବତରୁ

---

୧—ହଲଃ ଫାଲବହିଃ ସୀର ଇତି ବକ୍ରମାଦିତ୍ୟଃ ।

୧—ଖରଭେଦେ ରଶ୍ମେଧାଶ୍ୱେ ଖରଶ୍ରେଷ୍ଠେ ଚ ଖରଣେ ଇତି ମେଦିନୀ

୨—ବସ୍ତ୍ରସ୍ୟାଦ୍ଦଶକଶାୟାଂ ସାରକାୟାଂ ଶୁକେ ବଚ ଇତି ବଶ୍ୱଃ ।।

୧—ଉତ୍ସଃ ପ୍ରସ୍ରବଣ ମିତ୍ୟମରଃ ।

ବୈଦର୍ଭୀପତି ଅଇଲେ ସଙ୍ଗୋଳି । ବହନ୍ତ୍ରି ମାର୍କଣ୍ଡେୟ ଋଷି ମିଳି ।
ବାସାଅଙ୍କେ ଅଶ୍ରୁ ପୋଛି ଶ୍ରୀରାମ । ବେନି ମୁନିଙ୍କ ବନ୍ଦିଲେ ପ୍ରଣାମ ।
ବୋଧନ୍ତି କୁମ୍ଭଜ । ବିବେକଶେଖର ହୋଇ ଅଧୈର୍ଯ୍ୟ ।୧୪।
ବୋଇଲେ ରାମ କାମ ଭସ୍ମ ଗଲା । ବଲ୍ଲଭୀକି ତାର ଶମ୍ବର ନେଲା ।
ବସିଛି ଜୀବେ ଆନ ନେଲା ଭୀରୁ । ବଳ କ୍ଷତ ବଡ଼ ଅଛି ଏଥିରୁ ।
ବୋଧେ ମୁନିବର । ବସନ୍ତା ନାହିଁ ଦ୍ୱାଃସ୍ଥ ନିରୋଧର ।୧୫।

---

ବୃକ୍ଷସବୁ ଯେପି ପଡ଼ିଲେ), 'ଏଣୁ' ମହୀଭୃତ (ପର୍ବତମାନେ) ବିବର୍ଣ୍ଣିତା ଦିଶିଲେ (ବିବର୍ଣ୍ଣ ଭାବକୁ ପାଇଲେ) ଅସୁନ୍ଦର ଦିଶିଲେ ଏହିଭାବେ । ୧୩ ।

୧୪ଶ ପଦ—ବୈଦର୍ଭୀପତି (ଅଗସ୍ତ୍ୟମୁନି) ସଙ୍ଗୋଳି (ରାମଙ୍କୁ ସଙ୍ଗୋଳିବା ପାଇଁ) ଅଇଲେ, ବହନ୍ତ୍ରିଁ (ସେ ଆସି ସେଠାରେ ବହିରହନ୍ତେ) ମାର୍କଣ୍ଡେୟ ଋଷି ମିଳି (ମିଳିଲେ)। 'ସେ ଦୁଇ ଋଷିଙ୍କି ଦେଖି' ଶ୍ରୀରାମ ବାସାଅଙ୍କେ (ଆପଣା ପିନ୍ଧା କାନିରେ) ଅଶ୍ରୁ (ଲୋତକ) ପୋଛି ବେନି ମୁନିଙ୍କ ପ୍ରଣାମ ବନ୍ଦିଲେ (କଲେ)। 'ଶ୍ରୀରାମଙ୍କୁ ଶୋକଯୁକ୍ତ ଦେଖି' କୁମ୍ଭଜ (ଅଗସ୍ତ୍ୟ) ବୋଧନ୍ତି (ପ୍ରବୋଧ କରି କହନ୍ତି), 'ଆପଣ' ବିବେକଶେଖର (ବିବେକମାନଙ୍କ ମଧ୍ୟରେ ପ୍ରଧାନ) ହୋଇ ଅଧୈର୍ଯ୍ୟ 'ହେଉଅଛନ୍ତି କାହିଁକି' ।୧୪।

୧୫ଶ ପଦ—ଅଗସ୍ତ୍ୟଙ୍କ ପ୍ରବୋଧ ବାକ୍ୟ ଶୁଣି ରାମ ବୋଇଲେ କାମ (କନ୍ଦର୍ପ) ଭସ୍ମଗଲା (ହରଙ୍କ କୋପାଗ୍ନିରେ ପୋଡ଼ିଗଲା) । ତାର ବଲ୍ଲଭୀକି (ରତି ଦେବୀକି) ଶମ୍ବର (ଶମ୍ବରାସୁର) 'ହରି' ନେଲା । ମୁଁ ଜୀବେ (ସଜୀବ ହୋଇ) ବସିଛି, ଆନ (ଅନ୍ୟଜଣେ) ଭୀରୁ (ଭୟାଳୁ) ମୋ ପ୍ରିୟାକୁ ନେଲା, ଏଥିରୁ ବଳି ବଡ଼ କ୍ଷତି (ହାନି) 'ଆଉ କଣ' ଅଛି ? (ନାହିଁ) । 'ଏମନ୍ତ ରାମ କହିବାରୁ' ମୁନିବର (ଅଗସ୍ତ୍ୟ) ବୋଧେ (ବୋଧ କରି କହିଲେ), 'ତୁମ୍ଭ ପର୍ଣ୍ଣ କୁଟୀରେ'[୧] ନିରୋଧର (ନିଷେଧ କରିବାର) ଦ୍ୱାଃସ୍ଥ (ଦ୍ୱାରୀ) ବସନ୍ତା ନାହିଁ (କେହି ନ ଥିଲା), 'ଏଣୁ ସେ ଘେନିଗଲା' । ଅଥବା ନିରୋଧର (ଅନ୍ତଃପୁରର) ଦ୍ୱାଃସ୍ଥ (ଦ୍ୱାରୀ) 'ରାବଣ' ବସନ୍ତା

---

୧—ନିରୋଧସ୍ତୁ ନିଷେଧେ ସ୍ୟାଦବରୋଧବରୋଧୟୋଃଶବ୍ଦ ଧରଣୀ ।
ରୋଧୋ ନରକଭେଦେ ଚ ରୋଧୋଽନ୍ତଃ ପୁରବୃନ୍ଦୟୋଃଶବ୍ଦ କୁମୁଦଃ ।

ବିଦେହ ତପ ଦେହ ପାଇବ ପୁଣି । ବଧି ଶମ୍ବର ତା ରଖିବ ଆଣି ।
ବଳବନ୍ତ ସ୍ୱୟଂ ଅଛ ପରାଣେ । ବଳୀ ବଧ ହେଲା ଯା ଏକାବାଣେ
ବଇରୀ ଭୁମ୍ବର । ବନ୍ଦୀ ହୋଇଥିଲା ତାହା-କଷର ।୧୬।
ବେଦନା ସହ ନୋହେ ରାମ ଭାଷେ। ବନ୍ଦୀ ସେ ବଡ ଭୟାଳୁ ରାକ୍ଷସେ
ବିପିନେ ବିଚ୍ଛେଦଭୟରୁ କଳ । ବିରହାନଳ ହେଉଥିବ ଜାଳ ।
ବସି ଏକା ଘୋଷେ । ବର୍ତ୍ତିଥିବ ନିଜ ପ୍ରୀତିଭଳଶୀ । ୧୭ ।

---

ନାହିଁକ ? (କଣ୍ଠି ବସନ୍ତା) ବୈକୁଣ୍ଠରେ ଦ୍ୱାସ୍ଥ ହୋଇଥିଲ, ଏବେ ଦ୍ୱାସ୍ଥ ହୋଇ ଜଗିଛ ଏହିଭାବ । ୧୫ ।

୧୬ଶ ପଦ—ବିଦେହ ( ଦେହ ନାହିଁ ଯାହାର ଏମନ୍ତ ଯେ କନ୍ଦର୍ପ ସେ ) ପୁଣି ଦେହ ପାଇବ । ଶମ୍ବର (ଶମ୍ବରାସୁରକୁ) ବଧି ( ବଧକରି ) ତା (ତାହାରି) ଆଣି (ମହତ୍ତ୍ୱ—ତେଜ ) ରଖିବ। ସ୍ୱୟଂ (ଆପଣ ନିଜେ ); ପରାଣେ (ପ୍ରାଣରେ) 'ଦେହଧର' ଅଛ, 'ପୁଣି' ବଳବନ୍ତ 'ଅଛ' । 'ବଳବନ୍ତ କଣ ସାଧାରଣ ବଳବନ୍ତ ତାହା ନୁହେ' ଯା (ଯାହାଙ୍କର ) ଏକ ବାଣେ (ଗୋଟିଏ ବାଣରେ) ବାଳୀ (କିଷ୍କିନ୍ଧ୍ୟାଧିପ) ବଧ ହେଲ । ଯେଉ ବାଳୀର କୋଟିଏ ସିଂହର ବଳ ସେ ତୁମ୍ଭ ବାଣ ଗୋଟିକରେ ମଲା ଏହି ତାତ୍ପର୍ଯ୍ୟାର୍ଥ । ଭୁମ୍ବର ବଇରୀ (ଦାରବୈରୀ,ରାବଣ) ତା କକ୍ଷର ( ସେହି ବାଳୀର କାଖରେ) ବନ୍ଦୀ ହୋଇଥିଲା । ସେ କେତେ ମାତ୍ର, ଉକ୍ତ ମାତ୍ରରେ ଆପଣ ତାକୁ ମାରିବ ଏହି ଫଳିତାର୍ଥ । ୧୬ ।

୧୭ଶ ପଦ—ଅଗସ୍ତ୍ୟ ଏମନ୍ତ କହିବାରୁ ରାମ (ରାମଚନ୍ଦ୍ର) ଭାଷେ ( କହୁଅଛନ୍ତି ), 'ମୋ ପ୍ରିୟା' ବେଦନା ସହ (ବ୍ୟଥା ସହିଲା ଭଳି ) ନୋହେ (ନୁହଇ ), ସୁକୁମାରୀ ଏମନ୍ତ ଭାବ । ସେ 'ପୁଣି' ଅତି ଭୟାଳୁ 'ଅଟେ' । 'ତହିଁରେ ପୁଣି' ରାକ୍ଷସେ (ରାକ୍ଷସଦ୍ୱାରା) ବନ୍ଦୀ 'ହୋଇଅଛି' ଯେଉଁ ରାକ୍ଷସକୁ ଦେବତା ଡରନ୍ତି, ତା ଆଗେ ସ୍ତ୍ରୀ ମାତ୍ର ବା କେତେ ! ମରିଯିବାର ସମ୍ଭାବନା ଏହି ଫଳିତାର୍ଥ । ବିପିନେ (ବିଶାଳରେ—ବିସ୍ତୃତ ରୂପରେ ) ବିଚ୍ଛେଦ ଭୟରୁ ( ବିଚ୍ଛେଦ ଓ ଭୟ ଏ ଦୁଇକଥାରୁ ) କଳ ( କଳନା କରୁଅଛ ) । ବିରହାନଳ ( ବିରହାଗ୍ନି ) ଜାଳ ହେଉଥିବ ।

ବୋଧ ଦେଲେ ତତକାଳ ଅଗସ୍ତି । ବିଶ୍ୱଧାରୀ ପୁରୀ କନକଗାରୀ
ବାରଣ ନାମ ଆଦ୍ୟ ପ୍ରାନ୍ତାକ୍ଷରେ । ବ୍ୟକ୍ତ ମହାସୁର ନାମ ମଧ୍ୟରେ ।
ବର୍ତ୍ତିଛି ଏ ନାମା । ବାମା ବକ୍ଷେଦେ ଅତି ପ୍ରୀତିଧାମା ।୧୮।

---

ମୁଁ ବସି ( ବସିକରି ) ଏକା ( ଏହି ବିଷୟ ମାତ୍ର ) ଘୋଷି 'ହେଉଅଛି' ପ୍ରୀତଳଳସୀ ( ବାଲା )ଂବର୍ତ୍ତିଥିବ ନକ ( ବଞ୍ଚିଥିବ ସେ ସତେ ) । ୧୭ ।

୧୮ଶ ପଦ—'ଏମନ୍ତ ଶ୍ରମ କହୁବାରୁ' ଅଗସ୍ତ୍ୟ ତତ୍କାଳେ ( ତକ୍ଷଣେ) ବୋଧ ଦେଲେ, 'ଆପଣ ଯାହା କହୁଲ ମୋ ପ୍ରିୟା ବେଦନାସହ ନୁହେଁ, କାହିଁକି ନ ହେବେ' 'ଯେଣୁ ସେ' ବିଶ୍ୱଧାରୀ ( ସର୍ବସହାର ) ପୁତ୍ରୀ, (ଝିଅ) ଯାହାର ମା ସବୁ ସହେ, ତା ଝିଅ ନ ସହେ କି ? ବେଷ୍ଟର୍ଯ୍ୟ ସହୁବ ଏହିଭାବ । 'ପୁଣି ବିରହାନାଳ ଜଳି ଦେଉଥିବ ବୋଲି ଯାହା କହୁଲ ତା ମଝ ହୋଇ ନ ପାରେ' କାରଣ, ସେ' କନକଗାରୀ ( ଅଗ୍ନିରେ ସୁନାକୁ- ପୋଡ଼ିଲେ ସେ ମ୍ଳାନ ନ ହୋଇ ଉଜ୍ଜ୍ୱଳ ଦିଶେ, ତଦ୍ରୂପ ସେ ସୁନାଦେହର ବିରହାଗ୍ନି କଣ କରିବ ? କିଛି କରି ପାରିବ ନାହିଁ ) । 'ଯାହା କି କହୁଲ ସେ ପ୍ରୀଢଳଳସୀ ବର୍ତ୍ତିଥିବ କି ? ନିଶ୍ଚୟ ବର୍ତ୍ତିଥିବ', 'ଯେରୂପ' † ଆଦ୍ୟପ୍ରାନ୍ତାକ୍ଷରେ ( ଆଦ୍ୟରେ ଗୋଟିଏ ଅକ୍ଷର ଓ ପ୍ରାନ୍ତରେ ଗୋଟିଏ ଅକ୍ଷର ଏରୂପ ଦୁଇଗୋଟି ଅକ୍ଷରରେ ବ୍ୟକ୍ତ ହୋଇଥିବା ) ବାରଣ ( ହସ୍ତିର ) ନାମ 'ଦନ୍ତୀ' । ମଧ୍ୟରେ ( ସେ ଦୁଇଅକ୍ଷର ମଧ୍ୟରେ ଆଉ ଦୁଇଅକ୍ଷରଦେଲେ) ମହାସୁର ନାମ ହେବ 'ମୟ' । 'ଏ ସବୁ ମିଶାଇ ପଢ଼ିଲେ ହେଲା ଦମୟନ୍ତୀ' ଏ ନାମା ( ଦମୟନ୍ତୀନାମ ) ବାମା ( ସ୍ତ୍ରୀ ) ଅତି ପ୍ରୀତିଧାମା ( ଅତ୍ୟନ୍ତପ୍ରୀତିସ୍ଥାନୀୟା ), 'ସେ ବାମା' ବକ୍ଷେଦେ ( ହୃଦୟରେ ) ବର୍ତ୍ତିଛି ( ବସିଛି ) । ସୀତା ନିଶ୍ଚୟ ବଞ୍ଚିଥିବେ ଏହିଭାବ । ୧୮ ।

---

*—ଦଗ୍ଧଂ ଦଗଧଂ ତ୍ୟଜତି ନ ପୁନଃ କାଞ୍ଚନଂ କାନ୍ତବର୍ଣ୍ଣଂ । ଇତି ।
† — ଯଦୁକ୍ତଂ ବିଦଗ୍ଧ ମୁଖ ମଣ୍ଡନେ—
ଆଦ୍ୟନ୍ତାଭ୍ୟାଂ ଭବେଦ୍ଦନ୍ତୀ ମଧ୍ୟାଭ୍ୟାଂ ମହାସୁରଃ ।
ଅନୁଲୋମେ କୃତାନ୍ତଃ ସ୍ୟାଦ୍ଭୁର୍ଥେ ତୁ ବରାଙ୍ଗନା । ଇତି ।

ବାହୁଡ଼ୁଁ ବୋଧି ମାର୍କଣ୍ଡେୟ ପୁଛି । ବସ୍ତୁ ପବି ପରାକ୍ରମ ନାହିଁକି ।
ବହି ନାହାନ୍ତି ତ ଦର ଅଡ଼କ । ବହୁଛନ୍ତି ଏକା ଦର ଅଡ଼କ ।
ବିପତ୍ତି ବିହୀନ । ବିପତ୍ତିରଞ୍ଜନେ ହୋଇ ମଉନ । ୧୯ ।

ବିଶ୍ୱକେତୁ ଏ ପରଚେ ହୁଅଇ । ବାଳିବିଚ୍ଛେଦ ଜନ୍ମାନ୍ତେ ନ ଯାଇ ।
ବହୁଛି ଶିଖିଷାଙ୍ଗୀ ଶିଖିଶିଖି । ବ୍ୟର୍ଥ ପ୍ରଖ୍ୟାତ ରାଗଲତା ପରି ।
ବନ୍ଦୀ ସେ ଦୈତ୍ୟରେ । ବିଧାନ ହୋଇଲି ଜନମାନ୍ତରେ ।୨୦।

---

୧୯ଶ ପଦ—'ଅଗସ୍ତ୍ୟ ରାମଙ୍କୁ' ବୋଧି (ବୋଧଦେଇ) ବାହୁଡ଼ି (ବାହୁଡ଼ନ୍ତେ) ମାର୍କଣ୍ଡେୟ (ମୁନି) ପୁଛି (ବାଟରେ ତାଙ୍କୁ ପଚାରିଲେ), 'ଏ ରାମ' ବସ୍ତୁ ପବି ? 'ଏହାଙ୍କର' ପରାକ୍ରମ ନାହିଁକି (ନାହିଁଅଛି) ? 'ପରାକ୍ରମ ତ ନାହିଁ' । ଦର (ଶଙ୍ଖକୁ) ଅଡ଼କୁ (ଚକ୍ରକୁ) ବହି ନାହାନ୍ତି ତ, 'କେବଳ ଅର୍ଦ୍ଧ (ଶଧୁଠାରୁ) ଦର (ଭୟକୁ) ବହୁଅଛନ୍ତି' । 'ପୁଣି' ବି-ପତ୍ତି (ଗରୁଡ଼) ବିହୀନ (ରହିତ) 'ହୋଇଅଛନ୍ତି' ଏହାଙ୍କ ସଙ୍ଗରେ ଗରୁଡ଼ ନାହାନ୍ତି ଏହି ଭାବ । 'କେବଳ' ବିପତ୍ତି (ଦୁର୍ଗତିରେ) ରଞ୍ଜନ ହୋଇ ମଉନ (ମୌନଭାବରେ) ଅଛନ୍ତି । ଏଣୁ ଏ ବସ୍ତୁ ନୁହନ୍ତି ଏହି ଭାବ । ୧୯ ।

୨୦ଶ ପଦ—ବିଶ୍ୱକେତୁ (କନ୍ଦର୍ପ) ଏ, "ଏମନ୍ତ" ପରିଚେ (ପ୍ରତୀତି) ହୁଅଇ । ବାଳିବିଚ୍ଛେଦ (କାମ ବିଚ୍ଛେଦ) 'ହୋଇ' ଜନ୍ମାନ୍ତେ (ଜନ୍ମାନ୍ତରେ ପୁଣି) ନ ଯାଇ (ଯାଉ ନାହିଁ) । ପୂର୍ବଜନ୍ମରେ ହରଙ୍କ କୋପାନଳରେ ଭସ୍ମ ହୋଇଥିବାରୁ ବାମାବିଚ୍ଛେଦ ଘଟିଥିଲା, ଏ ଜନ୍ମରେ ଘଟିଲା ଏହି ତ ସୂଚ୍ୟାର୍ଥ । ଶିଖିଷାଙ୍ଗୀ (କୋମଳାଙ୍ଗୀ ସୀତାଙ୍କର) ଶିଖି (ଲକ୍ଷ୍ମୀର) ଶିଖି (ଶୋଭା) ବହିବା ବ୍ୟର୍ଥ । ସେ ଲକ୍ଷ୍ମୀ ନୁହନ୍ତି ଏହି ଭାବ । ରାଗଲତା (ରତିଦେବୀ) ପରି ପ୍ରତୀତି 'ହେଉଅଛି' । 'ସେ ରତିଦେବୀ' ଦୈତ୍ୟରେ (ଶମ୍ବରାସୁର ଦ୍ୱାରା) ବନ୍ଦୀ 'ହୋଇଥିଲେ' । ଏ (ସୀତା) ଜନ୍ମାନ୍ତରେ ଦୈତ୍ୟରେ (ରାବଣ ଦ୍ୱାରା) ବନ୍ଦୀ ବିଧାନ ହୋଇଲେ (ପୂର୍ବଭ୍ୟାସ ବିଧି ଅନୁସାରେ ବନ୍ଦୀ ହେଲେ) । ୨୦ ।

---

' — ବିପତ୍ତୌ ବିପଦାପଦାବିତ୍ୟମରଃ ।

—୧କାଙ୍କ୍ଷିଶ୍ରୀସ୍ୟ ପ୍ରିୟା ରାଗ ଲତା କେଳି କଳାରତି ଶତି ଶେଷଃ ।

ବୋଲେ ଅଗସ୍ତି ହୋଇଣ ଚତୁର । ବଣା ହୁଅ ଥିଲା ଭୁଜ ଚତୁର ।
ବଟେ ପ୍ରଳୟକାଳେ ଦେଖିଅଛ । ବାଳମୂରତି ହୋଇଥିଲ ସ୍ୱଚ୍ଛ ।
ବିଭୂତି ଦେଖିବ । ବ୍ରହ୍ମାଦି ଥିବେ ଅଭିଷେକ ହେବ । ୨୧ ।
ବାମନ ହୋଇ ଯଥା ତ୍ରିବିକ୍ରମ । ବୃଦ୍ଧି ଐଶ୍ୱର୍ଯ୍ୟ ହେବ ସେହି କ୍ରମ ।
ବେଗେ ମୁନି ବେନି ଆଶ୍ରମେ ସ୍ଥିତି । ବିଖ୍ୟାତ ହେମନ୍ତ କି ଐରାବତ ।
ବର୍ଣ୍ଣ କୁଜ୍‌ଝଟିତ । ବ୍ୟାପି ଗଲା ଜଗତ୍ତରେ ଝଟିତ । ୨୨ ।

୨୧ଶ ପଦ—ଅଗସ୍ତ୍ୟ (ଋଷି) ବୋଲେ (କହିଲେ) 'ତୁମ୍ଭେ' ଚତୁର ହୋଇଣ (ହୋଇ) ବଣା ହୁଅ (ହେଉଅଛ) । ପ୍ରଳୟକାଳେ (ଯେତେବେଳେ ମହାପ୍ରଳୟ ହୋଇଥିଲା ସେତେବେଳେ) ବଟେ (କଳ୍ପବଟର ପତ୍ର ପୁଟରେ) ଚତୁର (ଚାରି) ଭୁଜ ଥିଲା 'ଦେଖିଛ' ? 'କେବଳ ବିଷ୍ଣୁଙ୍କର' ସ୍ୱଚ୍ଛ (ନିର୍ମଳ) ବାଳ ମୂରତି (ବାଳମୁକୁନ୍ଦ ମୂର୍ତ୍ତି) ହୋଇଥିଲା ପରି । 'ସେହି ମୂର୍ତ୍ତି ଏବେ ଦ୍ୱିଭୁଜ ହୋଇ ରାମ ରୂପରେ ଅବତରି ଅଛନ୍ତି' । 'ଏହାଙ୍କ' ବିଭୂତି (ଐଶ୍ୱର୍ଯ୍ୟ ପୁଣି) ଦେଖିବ । ବ୍ରହ୍ମାଦି (ବ୍ରହ୍ମା ପ୍ରଭୃତି ଦେବତା ଓ ଋଷିମାନେ) ଥିବେ, "ଏହାଙ୍କର" ଅଭିଷେକ ହେବ । ନରତନୁ ଧରିବାରୁ ଚହ୍ନିଲ ନାହିଁ ଏହିଭାବ । ୨୧ ।

୨୨ଶ ପଦ—ଯଥା ବାମନ ହୋଇ ତ୍ରିବିକ୍ରମ ହେଲେ 'ଏହାଙ୍କ' ଐଶ୍ୱର୍ଯ୍ୟ ସେହି କ୍ରମ (କ୍ରମରେ) ବୃଦ୍ଧି ହେବ । 'ଏମନ୍ତ କୁହାକୁହି ହୋଇ' ବେଗେ ବେନି ମୁନି (ମାର୍କଣ୍ଡେୟ ଓ ଅଗସ୍ତି) ୧ଆଶ୍ରମେ (ନିଜ ନିଜ ତପୋବନରେ) ସ୍ଥିତି (ରହିଲେ) । 'ଶତକାଳପରେ' ବିଖ୍ୟାତ (ପ୍ରଖ୍ୟାତହେଲା ଯେଉଁ) ହେମନ୍ତ (ହିମଋତୁ) 'ସେ' ଐରାବତ 'ହସ୍ତୀ' କି ? 'ଐରାବତ ସମୁଦ୍ରରୁ ଜାତହେଲା ବେଳେ' ବର୍ଣ୍ଣକୁଜଝଟୀ (ଧୂସରବର୍ଣ୍ଣ) ୨ଜଗତ୍ତ (ଜଳରେ) ଝଟିତ (ବେଗରେ) ବ୍ୟାପି ଯାଇଥିଲା 'ସେହିପରି ହେମନ୍ତର' ବର୍ଣ୍ଣ (ରୂପ) କୁଜ୍‌ଝଟିତ (କୁହୁଡ଼ି ର); ଜଗତ୍ତ (ସଂସାରକୁ) 'କୁହୁଡ଼ି ରୂପରେ' ଝଟିତି (ହଠାତ୍) ବ୍ୟାପିଗଲା । ୨୨ ।

—୧ତପୋବନେ ମଠେ ବ୍ରହ୍ମାଚର୍ଯ୍ୟାଦାବାଶ୍ରମୋଽସ୍ତ୍ରି ସ୍ତ୍ରୀମିତି ବାଟେ ।
—ଜଗତ୍ତି ପିଷ୍ଟପେ ମହ୍ୟାଂ ଛନ୍ଦୋଭେଦେ ଜଲେଽପି ଚ ଇତି ମେଦିନୀ ।

ବିଭ୍ରାଜିତ ହୋଇ କୁନ୍ଦଦନ୍ତରେଁ । ବିଳାସ ରଚି ବନ-ପର୍ବତରେ ।
ବୃଷ୍ଟି ତୁଷାର ମଦକଣ କରେ । ବଳାଇଲ୍ ଅତି ଆଦର ସୁରେ ।
ବାସବର ସ୍ନେହୀ । ବଳମାନସ-କମ୍ପନ କରାଇ । ୨୩ ।
ବିରସ ଘନ ନିରତେ ନ-ମୁଚି । ବିସ୍ତାର ଶୀନ୍ଧ୍ରୁ ଚିତ୍ତ ସୁରୁଚି ।

---

୨୩ଶ ପଦ—"ଯେରୂପ ଐରାବତ" କୁନ୍ଦଦନ୍ତରେ (କୁନ୍ଦାହୋଇଥିବା ଦାନ୍ତରେ) ବିଭ୍ରାଜିତ (ବିରାଜିତ) ହୋଇ [୧]ବନ ପର୍ବତରେ (ମନୋହର ଗିରି-ମେରୁରେ) ବିଳାସ (କେଳି) ରଚି (ରଚନାକରି) ତୁଷାର (କାକରରୂପ) ମଦକଣ (ଦାନଜଳବିନ୍ଦୁ) ବୃଷ୍ଟି କରେ, 'ଆଉମଧ' ସୁରେ (ଦେବତାମାନଙ୍କଠାରେ) ଆଦର ବଳାଇଲା । ଦେବତମାନେ ଆଦର କଲେ ଏହାଙ୍କୁ । 'ପୁଣି' ବାସବରେ (ଇନ୍ଦ୍ରଠାରୁ) ସ୍ନେହୀ (ସ୍ନେହପ୍ରାପ୍ତ ହୋଇ) ବଳ (ବଳାସୁରର) ମାନସ (ଚିତ୍ତକୁ) "କମ୍ପନ କରେ", ତଦ୍ରୂପ ହେମନ୍ତ କୁନ୍ଦ (ନୂତନ କୁନ୍ଦପୁଷ୍ପ ରୂପ) ଦନ୍ତରେ ବିଭ୍ରାଜିତ (ବିରାଜିତ) ହୋଇ ବନ (କାନନ), ନଦୀସ ବା (ଆଳସ୍ୟରେ) ଓ ପର୍ବତରେ (ଗିରିରେ) ବିଳାସ (କେଳି) ରଚି ମଦକଣ ତୁଷାର (ଦାନଜଳରୂପ କାକରବିନ୍ଦୁ) ବୃଷ୍ଟି କରେ (ବର୍ଷିଲା) । ସୁରେ (ସୂର୍ଯ୍ୟଙ୍କଠାରେ) "ଲୋକମାନଙ୍କର" ଅତି ଆଦର (ଅତ୍ୟନ୍ତ ଆଦରକୁ) ବଳାଇଲା । ବାସବରେ (ଶ୍ରେଷ୍ଠ ବସନରେ ବା ପ୍ରଶସ୍ତ ଗୃହରେ) 'ଜନମାନଙ୍କ' ସ୍ନେହୀ (ସ୍ନେହଯୁକ୍ତ) 'କଲା' । [୨]ବଳ (ବଳବନ୍ତ ଲୋକଙ୍କ) ମାନସ (ହୃଦୟକୁ) କମ୍ପନ କଲା (କମ୍ପାଇଲା) । "ଦୁର୍ବଳ ଲୋକଙ୍କ କଥା କି କହିବା" । ୨୩ ।

୨୪ଶ ପଦ—'ଯେଉଁ ଐରାବତ ହେତୁରୁ' ନମୁଚି (ଦୈତ୍ୟ) ନିରତେ (ନିରନ୍ତର) ବିରସ (ବିରସରେ) [୧]ଘନ (ଦୁଃଖୀ)

---

୧—ବନଂ ନୀରେ କାନନେ ଚ ରୁଚିରେ ବର୍ତ୍ତିକେଽପି ଚ ଇତି ଶବ୍ଦମାଳା ।
୨—ବଲୋ ବଲୀ ବଲଂ ସତ୍ୟଂ ବଲଂ ସୈନ୍ୟଂ ବଲୋ ହଲୀ ।
ବଲା ଯେ ଜର୍ବଲୋଦୈତ୍ୟା ଚଲା ଲକ୍ଷ୍ମୀର୍ବଲା ମହାତ୍ୟନେକାର୍ଥ ଧ୍ୱନିମଞ୍ଜରୀ ।
୧—ଘନଂ ସ୍ୟାଦ୍‌ବାସରେ ଦୁଃଖେ ଇତି ରଭସଃ ।

ବନ୍ଧ ହିରଣାକ୍ଷ ଛବି ଶରଦ । ବପ୍ରାଦ୍ରି ଦାଡ଼ଭେଦରେ ଲୂଚିଦ ।
ବିଶୋଧିତ ଘନ । ବିରବ ରହିଲ ମହୀକମ୍ପନ । ୨୪ ।
ବିଦେଶରେ ହେଲ ମଙ୍ଗଳଜାତ । ବରୁଣ ସୁମନେ ହେଲ ରଞ୍ଜିତ ।

'ହେଲ' । 'ପୁଣି ସେ' ୧ ଝୀନ୍ଦ୍ର (ଇନ୍ଦ୍ରପୁତ୍ର ଜୟନ୍ତର) ଚଉ ସୁ ୩ଲୂଚ (ଚଗ୍ରୁଭିଲାସକୁ ) ବସ୍ତାଶ ( ବସ୍ତାଶଳ ) । 'ଏ ହେମନ୍ତକାଳରେ' ଘନ ( ଢବସ ) ନିରନ୍ତେ ( ଅବିରତରେ ) ବିରସ ନ ମୁଚ ( ବିରସକୁ ନ ଗ୍ରୁହିଲ ) ଝୀନ୍ଦ୍ର ( କାକମାନଙ୍କର ) ଚଉସୁରୁଚ ( ମନୋହରରତ୍ନକୁ ) ବସ୍ତାର (ବସ୍ତାରଲ) । ଶରଦ (ଶରତ୍କାଳ) ହିରଣ୍ୟାକ୍ଷଛବି (ହିରଣ୍ୟାକ୍ଷ ଦୈତ୍ୟ-ଶୋଭାକୁ ) ବନ୍ଧ ( ବନ୍ଧିଲ ) । 'ହିରଣ୍ୟାକ୍ଷ ଯେରୂପ' ବରାହ ଦାନ୍ତ-ଭେଦରେ ( ବରାହରୂପୀ ବିଷ୍ଣୁଙ୍କ ଦାନ୍ତଦାଢ଼ି ବିଦାରଣରେ ) ଲୂଚିତ ( ଅଭି-ଷ୍ୱଙ୍ଗଦାତା ) 'ହୋଇଥିଲ' ।ଲାଗି ରହିଥିଲ ଏହିଭାବ । ସେତେବେଳେ ଘନ ( କବଡ଼ ) ବିରବ ( ଶବ୍ଦ ) ବିଶୋଧିତ 'ହୋଇଥିଲ' ※ 'ଏବଂ ଘୋର ଗର୍ଜନ ରହିତହେବାରୁ ଓ ଦୈତ୍ୟଭୟରୁ' ମହୀକମ୍ପନ ( ଭୂମିକମ୍ପ ) ରହିଲ 'ହିରଣ୍ୟାକ୍ଷ ସମୁଦ୍ରମଧ୍ୟରେ ଗୁପ୍ତ ହୋଇଥିଲ, ସେହିପରି ଶରତ୍କାଳ ଏ ଋତୁପ୍ରଭାବରେ ଗୁପ୍ତ ହୁଅନ୍ତେ' ବରାହଦାନ୍ତ ( ବାଶହାଡାଢ଼ଫଳ ) ଭେଦରେ ( ଫୁଟିବାରେ ) 'ହିମଋତୁ' ଲୂଚିଦ ( ରମ୍ୟପ୍ରଦ ) ହେଲ । ଘନବିରବ ( ମେଘଧ୍ୱନି ) ବିଶୋଧିତ 'ହେଲ' ( ରହିଲ ), ମହୀକମ୍ପ ( ଭୂକମ୍ପ ) ନ ରହିଲ ( ହେଲି ) । ୨୪ ।

୨୫ଶ ପଦ—'ସେହି ହିରଣ୍ୟାକ୍ଷ ନାଶ କାଳରେ' ବିଦେଶରେ (ଆକା-ଶରେ ) ମଙ୍ଗଳଜାତ ( ଦୁନ୍ଦୁଭିବାଦନ, ଗନ୍ଧର୍ବଗାନ, ଅପ୍ସରାନୃତ୍ୟ ) 'ହୋଇ-ଥିଲ' । ୧ବରୁଣ ' ଦେବତା' ସୁମନେ ( ହୃଷ୍ଟ ମନରେ ) ରଞ୍ଜିଲ ( ଶୋଭିତ ) "ହୋଇଥିଲେ" । "ଏ ହେମନ୍ତ ଋତୁରେ" । ଏ ବିଦେଶରେ

୧—ଝୀନ୍ଦ୍ରଃ କାଲେ ଜୟନ୍ତେ ନା ଇତି ମେଦିନୀ ।
୩—ଲୁଚଃ ସ୍ତ୍ରୀଦାପ୍ତୌଶୋଭାଯୁମଭିଷ୍ୱଙ୍ଗା ଭିଲାଷୟୋରିତି ମେଦିନୀ ।
※—ଶରଦ ନ ଗର୍ଜତି ନ ବର୍ଷତି ବର୍ଷତି ବର୍ଷାସୁ ନ ସ୍ୱନୋମେଘଃ ।ଇତ
୧—ବରୁଣସ୍ତରୁ ଭେଦେ ସ୍ୟାତ୍ ପଶ୍ଚିମାଶା ପତାବପୀକ ମେଦିନୀ ।

ବ୍ୟାଧ ସମ କରି ପୁଣି ସେ କାଳ । ବନରୁ ନାଶିଲା ଖୋଜ କମଳ ।
ବାହୁବନ୍ଧେ ରଖେ । ବେଳେ ବେଳେ ଜନ ସେ ପାଶ ଯୋଖେ ॥
ବିରତରୁ ଶ୍ରମ କହେ ଆତୁରେ । ବୋଲୁଅଛୁ ତୁ ରିତୁ ବାଧୁ ତରୁରେ ।
ବିଧାତା ତ୍ବ ବ୍ରୂନ ବୋଲିଛି ଜାଣି । ବିଦଗ୍ଧ କରୁ ତ୍ର ପଦ୍ମ ଶ୍ରେଣୀ ।
ବନ୍ଧୁ ମୋ ପଦ୍ମା । ବିନାଶ ନା ତାକୁ ଭ୍ରମକୁ ଘେନି । ୨୬ ।

( ବିଶେଷରେ ଦେଶମାନଙ୍କରେ ) ମଙ୍ଗଳ ( ବିବାହାଦି ମଙ୍ଗଳୋତ୍ସବ ) ଜାତ ହେଲା; ବରୁଣ ( ବରୁଣ ବୃକ୍ଷମାନେ ) ସୁମନେ ( ପୁଷ୍ପମାନଙ୍କରେ ) ରଞ୍ଜିତ ( ଶୋଭିତ ) ହେଲେ । ପୁଣି ସେ କାଳ ( ହିମଋତୁ ) ବ୍ୟାଧ ସମ-କରି ( ବ୍ୟାଧ ସମାନରେ ) ବନରୁ ( ଜଳରୁ ) ଖୋଜ କମଳ ( ପଦ୍ମସବୁ ) ନାଶିଲା, ବ୍ୟାଧ ବନରୁ ( ଅରଣ୍ୟରୁ ) ଖୋଜ କମଳ ( ମୃଗମାନଙ୍କୁ ) ନଷ୍ଟ କରେ, ଏ କାଳ ସେହିପରି ଏହି ଭାବ । 'ବ୍ୟାଧ ମୃଗର' ବାହୁ (ବାହୁକୁ) ବନ୍ଧେ ( ବନ୍ଧନ କରି ) ରଖେ ( ରଖିଥାଏ ); ବେଳେ ବେଳେ ସେ ( ବ୍ୟାଧ ) ଜନ ( ଜନମାନଙ୍କ ) ପାଶ ( ସମୀପରେ ) ଯୋଖେ ( ନିଯୁକ୍ତ କରେ ) * । 'ତଦ୍ରୂପ ହିମକାଳ' ବେଳେ ବେଳେ ( ସବୁବେଳେ ) ପାଶ ଯୋଖେ (ପାଶ ସମାନରେ ) ଜନ ( ଜନମାନଙ୍କୁ ) ବାହୁବନ୍ଧେ ( ଭୁଜ ବନ୍ଧରେ ) 'ରଖିଲା' । ଶୀତରେ ଜାକଜୁକ ହୋଇ-ଗଲେ ଏହି ଭାବ । ୨୫ ।

୨୬ଶ ପଦ—ବିରତରୁ ( ବିରକ୍ତିରୁ ଅଥବା ରତି ହୀନ ହେବାରୁ ) ଶ୍ରମ ( ଶ୍ରମବନ୍ଦେ ) ଆତୁରେ ( ଆତୁର ହୋଇ ) 'କହିଲେ'—ରେ ହେମନ୍ତ' ! ତୁ ୧ ରିତୁ ବୋଲାଉ; ରିତୁରେ ( କାନ୍ତକୁ ) ବାଧୁ ( ବାଧା-କରୁଅଛୁ ) ଏଣୁ ତୁ ମିତ୍ରଦ୍ରୋହୀ' । ଏହି ହେତୁରୁ ବିଧାତା ଜାଣି ( ବିଧି ତୋହର ଏ ଗୁଣ ଜାଣି ) 'ତୋତେ' ୨ ତୁହିନ । (ହିମ —ତୁ ହୀନ ଅଟୁ ଏମନ୍ତ ) ବୋଲିଛି ( ବୋଲିଅଛି ); ତୁ ପଦ୍ମ ଶ୍ରେଣୀ (ପଦ୍ମ ସମୂହକୁ ) ବିଦଗ୍ଧ ( ଭସ୍ମ ) କରୁ, ମୋ ବନ୍ଧୁ ( ପ୍ରିୟା ) ପଦ୍ମା

*—ପିଶିତ ନେଭକନା ଧାବନ୍ତୀତ୍ୟର୍ଥଃ ।
୧—ରିତୁକର୍ଷ । ଉଷ୍ଟତ୍ପୂତ । ଅର୍ତ୍ତିବେ ଭାସିତ ପୁମାନଢ ମେଦନୀ ।
୨—ତୁଷାରସ୍ତୁହିନଂ ହିମମିତ୍ୟମରଃ ।

ବୃକ୍ଷେ ବସି ହୁଁ ହୁଁ କରୁଁ କପୋତ୍ତ । ବର୍ଣ୍ଣଲେ ଶୁଣି କଲ ସମ୍ମତ ।
ବୋଇଲେ ଉଚ୍ଚେ ତୁଷାର ତୁଷାର । ବ୍ରହ୍ମାଣ୍ଡେତ ହୋଇଥିଲ ତୁ ସାର
ବପକ୍ଷର ତହିଁ । ବାଦଅନୁକୂଳ ସମୟ ଶୁଦ୍ଧ । ୨୭ ।
ବର୍ତ୍ତି ଥାଇ ଏକା ନାଗସ୍ୱବର । ବର୍ତ୍ତି ଥିବ ସେତ ଶ୍ରୀବନ ମୋର ।
ବର୍ତ୍ତି ଥିବାରୁ ମୋ ନାହିଁ ସଂଶୟ । ବଞ୍ଚାଇ ନିକାଳେ ମୋତେ ତା-ଦେହ
ବଞ୍ଚୁ ଥିବ ସେହ । ବର୍ଷ ଉଷ୍ଣ ଶୀତ ହିମତ ବହ୍ନ । ୨୮ ।

---

( ପଦ୍ମ ଜାଗାଙ୍କ ସ୍ତ୍ରୀ ) ତାକୁ ଭ୍ରମକୁ ଦେନ ( ପଦ୍ମ ଏ, ଏହ୍ଭ୍ରମରେ ) ବନାଶ ନା ( ବନାଶ ନ କର ) । ୨୬ ।

୨୭ଶ ପଦ—'ଏ ସମୟରେ' ବୃକ୍ଷେ ( ବୃକ୍ଷରେ ) ବସି କପୋତ୍ତ ହୁଁ ହୁଁ 'ଶବ୍ଦ' କରୁଁ ( କରନ୍ତେ ) 'ଶ୍ରୀରାମ ମନରେ' ବର୍ଣ୍ଣଲେ 'ମୋ କହିବା କଥା' ଶୁଣି ସମ୍ମତ କଲ ( ତୋ ପ୍ରିୟାକୁ ନ ମାରବ ବୋଲ କହିଲ ) । 'ତେଣୁ ଆନନ୍ଦମନରେ' ଉଚ୍ଚେ ( ଉଚ୍ଚସ୍ୱରରେ ) ବୋଇଲେ ହେ ତୁଷାର ! ହେ ତୁଷାର ! ※ ବ୍ରହ୍ମାଣ୍ଡେ ( ବ୍ରହ୍ମାଣ୍ଡ ମଧ୍ୟରେ ) ତୁ ସାର ( ଶ୍ରେଷ୍ଠ) ହୋଇ 'ତୋ ନାମ' ଥିଲା; ତ ( କେବଳ ) ବପକ୍ଷର ( ଶତ୍ରୁର ) ତହିଁ ( ସଙ୍ଗେ ) ବାଦ ( ବବାଦ ) 'କରବାକୁ' ଅନୁକୂଳ ସମୟ ଶୁଦ୍ଧ ( ଏହି ସମୟରେ ଆମ୍ଭେ ଶତ୍ରୁ ନାଶିବାକୁ ଅନୁକୂଳ କରବୁଁ ) । ୨୭ ।

୨୮ଶ ପଦ—ନାଗସ୍ୱବର ( ମୋ ନାଗସ୍ୱମଣି ) ଏକା ବର୍ତ୍ତି ଥାଇ ( ବଞ୍ଚିଥିବ କ ? ) କାହିଁକ ନା ? ସେ ତ ମୋର ଜୀବନ ( ପ୍ରାଣ ) 'ଏଣୁ ଜଣାଯାଏ' ବର୍ତ୍ତିଥିବ । ମୋ ବର୍ତ୍ତି ଥିବାରୁ ( ମୁଁ ବଞ୍ଚିଥିବାରୁ ) ସଂଶୟ ନାହିଁ ( ପ୍ରିୟା ବଞ୍ଚିବାର ସଂଶୟ ନ ରହିଲା ) । ତା ଦେହ ମୋତେ ନିକାଳେ ( ଗ୍ରୀଷ୍ମ ବର୍ଷା ଓ ଶୀତକାଳରେ) ବଞ୍ଚାଇଁ 'ଥିଲା' ※ । ସେହ (ସେ ପ୍ରିୟାମଧ୍ୟ ବର୍ଷ ( ଦେହରେ ) ଉଷ୍ଣ ( ଶୀତରେ ଉଷ୍ଣ ) ଶୀତ ( ଗ୍ରୀଷ୍ମରେ ଶୀତଳ ) ହିମତ ( ବର୍ଷାରେ ଶୀତୋଷ୍ଣ ) ବହ୍ନ ବଞ୍ଚୁଥିବ । ୨୮ ।

---

※—ହର୍ଷାତ୍ତ ନ ପୁନରୁକ୍ତ ଦୋଷଃ ।
※—ଯଦୁକ୍ତଂ—ଶୀତେ ସୁଖୋଷ୍ଣସର୍ବାଙ୍ଗୀ ଗ୍ରୀଷ୍ମେ ଚ ସୁଖଶୀତଳା ।
ଯା ବର୍ଷାସୁଖଶୀତୋଷ୍ଣ ସା ଭବେଦ୍ଦୁର୍ଲ୍ଲଭା । ଇତ ।

ବାନ୍ଧବୀ ପରି ମୋ ନାହିଁ ସୁନ୍ଦରୀ । ବାସେ ଦେହ ସଜସରୋଜ ପରି ।
ବାମଦେବାରି ହୃଦେ ଯୋଖି ଶର । ବନ୍ଧୁ ମୋହି ହୋଇ ଥିବ କର
ବାଞ୍ଚବ କି ଲଖ । ବଶୀଭୂତ ହେବ ଗୁଣ ଶିଳୀମୁଖ ।୨୯।
ବଡ଼ବାନଳ ଜାଳୁଁ ତା ଶରୀର । ବୁଡ଼ିଥିବ ଭବ-ଭାବନ-ନୀର ।
ବହୁତଜନ୍ମର ସୁକୃତରାଶି । ବିନୋଦ କଲେ ମୋ ଏଠାରେ ଆସି ।
ବିଧି ବିଧି ଭଲ । ବାରୁଣୀ ଶୋଭାରାଶି ତାକୁ ଦେଲ ।୩୦।

୨୯ଶ ପଦ—ମୋ ବାନ୍ଧବୀ (ପ୍ରିୟା) ପରି (ପ୍ରାୟ) ସୁନ୍ଦରୀ ନାହିଁ (ନାହିଁ) 'ପୁଣି' 'ତା' ଦେହ ସଜସରୋଜ (ସଜ ପଦ୍ମଫୁଲ) ପରି ବାସେ । ଏହାଦ୍ୱାରା ସୌନ୍ଦର୍ଯ୍ୟାତିଶୟ ଓ ପଦ୍ମିନୀଜାତି ସୂଚିତ ହେଲ' । ବାମଦେବାରି (କନ୍ଦର୍ପ) ହୃଦେ (ତା ହୃଦୟକୁ) ଶର ଯୋଖି ବନ୍ଧୁ (ବନ୍ଧନ୍ତେ) 'ତାହାର ସୁନ୍ଦରପଣ ଦେଖି' ମୋହିହୋଇ (ମୋହିଯାଇ) କର (ତା ହାତ) ଥିବ । 'ଏଣୁ ହୃଦୟରେ' ଲଖ ବାଞ୍ଚବ କି ? (ବାଞ୍ଚିବ ନାହିଁ), ପୁଣ ଧନୁରୁ ଗୁଣଶିଳୀମୁଖ * (ଗୁଣମୟ ଭ୍ରମରମାନେ) ବଶୀଭୂତ (ଆମୋଦ ହେତୁରୁ) ବଶୀଭୂତ ହେବେ) 'ପଦ୍ମଗନ୍ଧ ପାଇ ଉଡ଼ିଯିବେ ଏହିଭାବ ।

୩୦ଶ ପଦ—ତା ଶରୀର ବଡ଼ବାନଳ ଜାଳୁଁ (ବଡ଼ବାନଳ ତା ଦେହକୁ ଅବା ଜାଳନ୍ତା ତା କୋହିବ) କାହିଁକି ? ମୋ ଭବ, ତା ଭାବନା ଯେ ସେ ନୀର ହେନ୍ତି ତହିଁରେ ବୁଡ଼ିଥିବ । 'ଏଣୁ' ମୋ (ମୋହର) ବହୁତ ଜନ୍ମର ସୁକୃତରାଶି (ପୁଣ୍ୟସମୂହ) ଏଠାରେ ଆସି ବିନୋଦ (କ୍ରୀଡ଼ା) କଲେ । ବିଧି (ବିଧାତାର) ବିଧି (ବିଧାନ) ଭଲ 'ଅଟେ' ତାକୁ (ସେହି ପ୍ରିୟାକୁ) ବାରୁଣୀ ଶୋଭା ରାଶିତ (ବାରୁଣୀଯୋଗ ରୂପ ଶୋଭା ପ୍ରସ୍ତରକୁ) ଦେଲ । ଲୋକେ ବାରୁଣୀଯୋଗରେ ଜଳେ ବୁଡ଼ି ପୁଣ୍ୟ ଲଭନ୍ତି ମୋ ପ୍ରିୟା ମୋ ଭାବଜଳରେ ବୁଡ଼ି ପୁଣ୍ୟବଳରେ ବଡ଼ବାନଳ ନାଶିଲ ଏଣୁ ବିଧି ବିଧାନ ଧନ୍ୟ ଏହି ତାତ୍ପର୍ଯ୍ୟାର୍ଥ । ୩୦ ।

*—ବର୍ଣ୍ଣିତମାସ୍ତୁଂ ଧନୁ ପୌଷ୍ପଂ ଶିଞ୍ଜିନୀ ଭୃଙ୍ଗମାଳକେତ୍ତ ।
୧—ଘଟିତଃ ପ୍ରସ୍ତରେ ସ୍ୟନ୍ଦେ ଚେତି ବିଶ୍ୱଃ ।

ବିବାଦରେ ହୋଇ ଗ୍ରୀଷମାକାର୍ । ବଂଶ ବହୁତକାଳୁଁ ବୃଦ୍ଧି ତାର ।
ବହ୍ନି ଶରେ ତା କରି ଭସ୍ମୀଭୂତ । ବିଶ୍ରାମନଗ୍ରରେ ଦେଇ ଜ୍ୱଳିତ ।
ବଳ ପତଙ୍ଗାଢ୍ୟ । ବଳେ ପକାଇବି ତହିଁ ସମ୍ପାଢ୍ୟ ।୩୧।
ବିଧାତା ରଖିବାକୁ ପକ୍ଷ ହେଲେ । ବ୍ରହ୍ମ ପଦବୀ ନ ରଖିବି ଭଲେ ।
ବୋଲିଣ ମଣ୍ଡନ ରଘୁନନ୍ଦନ । ବାନରପତି–ଆଗମନେ ମନ ।
ବୋଲେ ଉପଇନ୍ଦ୍ର । ବତିଶ ପଦେ ମନୋରମ ଛାନ୍ଦ ।୩୨।

—*—

---

୩୧ଶ ପଦ—ବିବାଦରେ (ସଂବଣଠାରେ) ଗ୍ରୀଷମାକାର (ଗ୍ରୀଷ୍ମକାଳଭିଳି) ହୋଇ ତାର ବଂଶ (ସଂବଣକୁଳ) ବଂଶ ( ବାଉଁଶପ୍ରାୟ ) ବହୁତକାଳୁଁ ( ବହୁତକାଳରୁ ) ବୃଦ୍ଧି 'ପାଇଛି', ବହ୍ନି ଶରେ ( ଅଗ୍ନି ବାଣରେ ) ତା (ସେ ବଂଶରୂପ ବାଉଁଶକୁ) ଭସ୍ମୀଭୂତ କରି ବିଶ୍ରାମନଗରେ(ବିଶ୍ରାମନ୍ଥପଡା ପୁର) ନଗ ( ପର୍ବତ ) ହେଲା 'ତହିଁରେ' ଜ୍ୱଳିତ ଦେଇ (ତାକୁ ଜାଳିଦେଇ) ବଳ ¹ପତଙ୍ଗାଢ୍ୟ ( ସୈନ୍ୟରୂପ ପତଙ୍ଗ ଦ୍ରୂତଭାବ ) ବଳେ ( ବଳପୂର୍ବକ ) ନେଇ) ତହିଁ ସମ୍ପାଢ଼ ( ସେ ଅଗ୍ନିରେ ସମ୍ପାଦନକରି) ପକାଇବି । ୩୧ ।

୩୨ଶ ପଦ—'ତାକୁ' ରଖିବାକୁ ବିଧାତା 'ଆସି ତାହାର' ପକ୍ଷ ହେଲେ ତାହାଙ୍କ ବ୍ରହ୍ମପଦବୀ (ଲୋକେଶ ଐଶ୍ୱର୍ଯ୍ୟକୁ ) ଭଲେ ରଖିବି ନାହିଁ (ଲୋପ କରିଦେବି) 'ଏମନ୍ତ' ବୋଲିଣ ରଘୁନନ୍ଦନ ( ରାମ ) ମଣ୍ଡନ (ତୁଷ୍ଣୀ) ହେଲେ । ବାନରପତି ( ସୁଗ୍ରୀବଙ୍କ ) ଆଗମନେ ( ଆସିବାରେ ) ମନ 'ଦେଲେ' । ବତିଶ ପଦରେ ମନୋରମ ଛାନ୍ଦ ଉପଇନ୍ଦ୍ର (ଉପେନ୍ଦ୍ରଭଞ୍ଜ) ବୋଲେ (ରଚିଲେ) ।୩୨।

---

¹—ପତଙ୍ଗଃ ଶଲଭେ ଶାଳିପ୍ରଭେଦେ ପକ୍ଷିସୂର୍ଯ୍ୟୟୋରଥ ଯାଦବଃ ।

## ଦ୍ୱାତ୍ରିଂଶ ଛାନ୍ଦ ।

ରାଗ—ମଙ୍ଗଳଗୁଜ୍ଜରୀ ।

ବଜମେ ଲକ୍ଷ୍ମଣ ମିଳେ କିଷ୍କିନ୍ଧ୍ୟାକାନନ ।
ବସନ୍ତ ମଳୟାଦ୍ରିରୁ କି ସେ ଆଗମନ ।୧।
ବଚନ କୋକିଳ ସଦାଗତି ମେଳ ହୋଇ ।
ବହୁତ ସୁମନାକୁ ସେ ଉତ୍ଫୁଲ୍ଲ କରଇ ।୨।
ବିହିବେ ଦକ୍ଷିଣଦିଗେ ଯାତ୍ରା ଆରମ୍ଭଣ ।
ବନୌକା ଖେଳିବେ ରକ୍ଷେ ଅବୀର କରଣ ।୩।

ଦ୍ୱାତ୍ରିଂଶ ଛାନ୍ଦ ।

୧ମ ପଦ—'ଭ୍ରମ ହୋଇ ନ ବହିବାରୁ' ଲକ୍ଷ୍ମଣ ବଜମି (ମାଲ୍ୟବାନରୁ ଶୀଘ୍ର ହୋଇ) କିଷ୍କିନ୍ଧ୍ୟା କାନନେ (କିଷ୍କିନ୍ଧ୍ୟା ବନରେ) ମିଳେ (ମିଳିଲେ) । 'ତହିଁକି କବି ଉତ୍ପ୍ରେକ୍ଷା କଲେ' । ସେ ( ଲକ୍ଷ୍ମଣ ) ବସନ୍ତ 'କାଳପ୍ରାୟ' ମଳୟାଦ୍ରିରୁ ( ମଳୟପର୍ବତରୁ ) ଆଗମନ 'କଲେ' କି ? 'ଏଥିା ଦ୍ୱାରା' ଲକ୍ଷ୍ମଣଙ୍କର ଗୌରବର୍ଣ୍ଣତ୍ୱ ସୂଚିତ ହେଲା ଯେଣୁ ବସନ୍ତଂ ଗୌରବର୍ଣ୍ଣ' ।୧।

୨ୟ ପଦ—'ବସନ୍ତକାଳ' କୋକିଳ ବଚନ ( ପିକବାଣୀ ) ସଦାଗତି (ପବନ) 'ଏଣେ' ମେଳ ହୋଇ ବହୁତ ସୁମନାକୁ ( ପୁଷ୍ପକୁ ) ଉତ୍ଫୁଲ୍ଲ (ପ୍ରସ୍ଫୁଟିତ) କରଇ (କରଏ) ସେ (ଲକ୍ଷ୍ମଣ) କୋକିଳ 'ପ୍ରାୟ' ବଚନ ସଦାଗତି (ସର୍ବଦାଗମନ) ଏଣେ ମେଳ ହୋଇ ବହୁତ ସୁମନାକୁ ( ରାବଣ ନାଶରେ ଉଦ୍‌ଯୋଗୀ ହେବାରୁ ସବୁ ଦେବତାଙ୍କୁ) ପ୍ରଫୁଲ୍ଲ କରଇ (କରଇଲେ) ।୨।

୩ୟ ପଦ—ଦକ୍ଷିଣ ଦିଗେ ୧ଯାତ୍ରା ( ଦକ୍ଷିଣ ଦିଗ ପ୍ରସ୍ଥାଣ ) ଯାତ୍ରା (ବସନ୍ତୋତ୍ସବ) ହେଲା 'ତାହାର' ଆରମ୍ଭଣ (ଆରମ୍ଭ) ବିହିବେ (କରିବେ) ବନୌକା ( ବାନରମାନେ ) ରକ୍ଷେ (ରାକ୍ଷସମାନଙ୍କୁ) ଅବୀର (ନିର୍ବୀର କରି) 'ତାଙ୍କୁ' ଅବୀର ( ଫଗୁ ) କରଣେ ଖେଳିବେ । 'ବସନ୍ତୋତ୍ସବରେ

୧—ଗମନୋତ୍ସବୟୋର୍ଯାତ୍ରା ଇତି ତ୍ରିକାଣ୍ଡଶେଷଃ ।

ବିଜେ ରାଜା ସିଂହଦ୍ୱାରେ ରାମାନୁଜ ଯାଇ ।
ବନ୍ଧ ଲଭି ପ୍ରବୃଦ୍ଧ ସରିତ ସର ରହି ।୪।
ବାଧିରେତ ଶରାଳରେ ଯୁକ୍ତ ହୋଇଛନ୍ତି ।
ବାର ପୂର୍ତ୍ତି ଅପଘନେ ରୁଚିର ଦିଶନ୍ତି ।୫।
ବସିଥିଲା ଦ୍ୱିବିଦନାମରେ କପି ଦ୍ୱାରେ ।
ବୋଇଲେ କହ ଲକ୍ଷ୍ମଣ ଆଗତ ରାଜାରେ ।୬।
ବୃଷଣି ବଦାର ଚକ୍ଷୁ ଗ୍ଲକ ସେ ରଦନ
ବକୃତମୁଖ ଦେଖାଇ ଘୋଷେ କେ ତୁ ପୁନ ।୭।

ଅମ୍ବରରେ ଫଗୁ ଖେଳନ୍ତି ଏ ଦକ୍ଷିଣ ଦିଗ ଯାତ୍ରା ରୂପ ବସନ୍ତୋତ୍ସବରେ ବାନରେ ରାକ୍ଷସରୂପ ଅମ୍ବରରେ ଫଗୁ ଖେଳିବେ ଏହି ଫଳିତାର୍ଥ । ୩।

୪ର୍ଥ ପଦ—ରାମାନୁଜ ( ଲକ୍ଷ୍ମଣ ) ଯାଇ ରାଜସିଂହଦ୍ୱାରେ ବିଜେ 'କଲେ' । ବନ୍ଧ (ବନ୍ଧକୁ) ଲଭି ପ୍ରବୃଦ୍ଧି ସରିତ (ବୃଦ୍ଧି ନଦୀ) ସର (ପ୍ରାପ୍ତ) 'ଦ୍ୱାରବନ୍ଧକୁ ଲଭି ରହି' ରହି (ରହିଲେ) । ୪ ।

୫ମ ପଦ—'ବୃଦ୍ଧି ନଦୀ' ବାଧିରେ ୧ଶରାଳରେ (ପକ୍ଷିସମୂହରେ) ଯୁକ୍ତ ହୋଇଥାଏ ଅପଘନେ ( ଅଙ୍ଗରେ ) ବାରପୂର୍ତ୍ତି 'ହୋଇବାରୁ' ରୁଚିର (ସୁନ୍ଦର) ଦିଶେ । 'ଲକ୍ଷ୍ମଣ ତଦ୍ରୂପ' ବାଧିରେତ ଶରାଳରେ (ଶରସମୂହରେ) ଯୁକ୍ତ ହୋଇଛନ୍ତି 'ଏବଂ' ଅପଘନେ ( ଅଙ୍ଗରେ ) ବାର ( ସ୍ୱେଦ ) ପୂର୍ତ୍ତି 'ହେବାରୁ' ରୁଚିର (ସୁନ୍ଦର) ଦିଶନ୍ତି । ୫ ।

୬ଷ୍ଠ ପଦ—ଦ୍ୱାରେ (ସିଂହଦ୍ୱାରରେ) ଦ୍ୱିବିଦ ନାମରେ କପି ବସିଥିଲା । 'ତାକୁ' ବୋଇଲେ ରାଜାରେ ( ତୁମ୍ଭ ରାଜା ଆଗରେ ) କହ ଲକ୍ଷ୍ମଣ ଆଗତ (ଆସିଅଛନ୍ତି) ।୬।

୭ମ ପଦ—'ଲକ୍ଷ୍ମଣ ଏମନ୍ତ କହନ୍ତେ' ସେ ( ସେ ଦ୍ୱିବିଦ ) ୨ବୃଷଣ (ଅଣ୍ଡକୋଷକୁ) ବଦାର ଚକ୍ଷୁ ଗ୍ଲକ ( ବୁଲାଇ ) ବକୃତ ମୁଖ ଓ ରଦନ (ଦନ୍ତ) ଦେଖାଇ ବୋଲେ କେ ତୁ (ତୁ କିଏ) ପୁନ ପୁଣ । ୭ ।

୧—ଶରାଳ ରାଟିବଣ୍ଡଶ୍ୱେତାର୍ଥ । ଇଲଯୋରୈକ୍ୟଂ ।
୨—ମୁଷ୍କୋଽଣ୍ଡକୋଷୋବୃଷଣ ଇତ୍ୟମରଃ ।

ବୋଇଲେ କେତୁ ହୁଅନ୍ତୁ ଏ ଦେହରେ ନାହିଁ ।
ବିଳମ୍ବ ନ କର ତୁ ଲକ୍ଷ୍ମଣ ହୁଅ କହି ।୮।
ବଳୀ ବଳ ଦେଖେ ସେ ପ୍ଲବଗଚନ୍ଦ୍ର ଶୋଭା ।
ବ୍ୟୋମଦୋଳୀରେ ଉଦୟ କୋଳେ ତାର ପ୍ରଭା ।୯।
ବେତ୍ରକର ଯୋଡ଼ ଜଣାଇଲା ତତ୍‌କ୍ଷଣ ।
ବିଜୟ ପୁରୁଷେ ଦ୍ୱାରେ ବୋଲନ୍ତି ଲକ୍ଷ୍ମଣ ।୧୦।
ବଚନ ମନ୍ତ୍ରୀ ଭଣିଲା ଶଶିରୁ ଖସିଲା ।
ବହି ନରତନୁ କମ୍ପା ଏଠାକୁ ଆସିଲା ।୧୧।

---

୮ମ ପଦ—'ଦ୍ୱିବିଦ ତୁ କେ ଏମନ୍ତ ପଶ୍ନରନ୍ତେ ଲକ୍ଷ୍ମଣ' ବୋଇଲେ କେତୁ ( କେତୁ ପ୍ରାୟ ଦ୍ୱିଖଣ୍ଡ) ହୁଅନ୍ତୁ ଏ ଦେହରେ ନାହିଁ ( ତଦ ଥିଲେ ଦ୍ୱିଖଣ୍ଡ କରିଥାନ୍ତ) ଅଥବା ଏ ଦେହରେ ନାହିଁ (ବଳଭଦ୍ରାବତାରରେ ତୋତେ ମାରବୁଁ ) । ※ 'ଏଣୁ' ତୁ ବିଳମ୍ବ ନ କର ଲକ୍ଷ୍ମଣ 'ବୋଲି' କହି ହୁଅ । ୮ ।

୯ମ ପଦ—ବଳୀ (ବଳବାନ୍) ସେ ( ଦ୍ୱିବିଦ ) ବଳ ( ଗମନରେ ପ୍ରବୃତ୍ତି ) ପ୍ଲବଗଚନ୍ଦ୍ର ( ସୁଗ୍ରୀବର ) ଶୋଭା ଦେଖେ (ଚନ୍ଦ୍ରପ୍ରାୟ ଦେଖିଲା) ବ୍ୟୋମଦୋଳରେ ( ଦୋଳରୂପ ଆକାଶରେ ) ଉଦୟ ହୋଇଅଛୁ, କୋଳେ ( ତାଙ୍କ କୋଳରେ ) ତାର ( ପାଟମହାଦେଈ ) ତାର (ନକ୍ଷତ୍ର ପ୍ରାୟ ) ପ୍ରଭା ( ଦୀପ୍ତି ) ପାଉଅଛୁ । ୯ ।

୧୦ ପଦ—ବେତ୍ରକର ଯୋଡ଼ ତତକ୍ଷଣ ( ସେହିକ୍ଷଣରେ ) ଜଣାଇଲା ପୁରୁଷେ (ଏକ ପୁରୁଷସିଂହ) ଦ୍ୱାରେ (ସିଂହଦ୍ୱାରରେ) ବିଜୟ 'କରିଅଛନ୍ତି' 'ସେ' ଲକ୍ଷ୍ମଣ 'ବୋଲି' ବୋଲନ୍ତି । ୧୦ ।

୧୧ଶ ପଦ—'ସୁଗ୍ରୀବ ତାହା କଥାକୁ' ବଚନ ମନ୍ତ୍ରୀ ଭଣିଲା 'ଲକ୍ଷ୍ମଣ ଚନ୍ଦ୍ରଠାରେ ଅଛନ୍ତି ସେ କରୂପେ' ଶଶିରୁ ଚନ୍ଦ୍ର ଦେହରୁ (ଖସିଲା । ନରତନୁ (ନରଦେହ) ବହି ଏଠାକୁ କମ୍ପା ଆସିଲା । ୧୧ ।

---

※—ତଦୁକ୍ତଂ ଭାଗବତେ—
ସପ୍ତଷଷ୍ଠି ତମେ ରାମୋ ଗବରୀ ରୈବତତେ ମଦାତ୍ତ
ସ୍ତ୍ରୈର ଯୁବତିଭିଃ କ୍ରୀଡ଼ନ୍ନବଧୀଦ୍ଦ୍ୱିବିଦଂ ଖଳଂ ।

'ବତ୍ତିଶସଂଖ୍ୟା ଯେ ଦେହେ ସହଜେ ମହତ ।
ବୋଲ ଯା କେଉଁ ଲକ୍ଷ୍ମଣ ଆସି କ ଜାମିତ୍ର । ୧୨ ।

ବାହୁଡ଼ ଦ୍ୱାଃସ୍ଥ ପୁଚ୍ଛନ୍ତେ ବୋଇଲେ ସେ ବୀର ।
ବୋଲ ସେ ରାମଅନୁଜ ଯେ ଶିଶାଦ ତୋର । ୧୩।

ବାନର ଯାଉଁ ପାଞ୍ଚିଲେ ନ କହୁ ଏ ଭାଷ ।
ବାତାଯୁ ରାମ ତା ଅନୁଜାଯୀ ସିନା ଶଶ । ୧୪ ।

ବଦୋଦ୍ଧି ହସ୍ତରୁ ପୋଷାମର୍କଟ ପଟଇ ।
ବକ୍ରୃତମୁଖ ଦେଖାଇ ଗୁଣ ନ ମାନଇ । ୧୫ ।

---

୧୨ଶ ପଦ—ଦେହେ (ଦେହରେ) ୧ବତ୍ତିଶ ସଂଖ୍ୟା ( ବତ୍ତିଶ ସଂଖ୍ୟକ ଲକ୍ଷଣ) ଅଛନ୍ତି । ସେ 'ପୁଣି' ସହଜେ ( ସହଜରେ ) ୨ମହତ ( ମହତ୍ତ୍ୱ—ମହାପୁରୁଷ ଲକ୍ଷଣ) । କେଉଁ ୩ଲକ୍ଷ୍ମଣ ସେ କ ଜମିତ୍ର ଆସି 'ଅଛି' ଯା (ଯାଇ) 'ଏମନ୍ତ' ବୋଲ (ପଚାର) । ୧୨ ।

୧୩ଶ ପଦ—ଦ୍ୱାଃସ୍ଥ (ଦ୍ୱାରୀ) ବାହୁଡ଼ି 'ଆସି' ପୁଚ୍ଛନ୍ତେ (ତୁମ୍ଭେ କେଉଁ ଲକ୍ଷ୍ମଣ ବୋଲି ପଚାରନ୍ତେ) ସେ ବୀର (ଲକ୍ଷ୍ମଣ) ବୋଇଲେ ଯେ (ରାମ) ତୋର ଶିଶାଦ (ସମ୍ପଦଦାତା) ସେ ରାମ ଅନୁଜ ( ସାନଭାଇ ଲକ୍ଷ୍ମଣ ) 'ଏମନ୍ତ ଯାଇ' ବୋଲ (ତୋ ରାଜାକୁ କହ) । ୧୩ ।

୧୪ଶ ପଦ—ବାନର (ଦ୍ୱିବିଦ) ଯାଉ ( ଯାଉଥାନ୍ତେ ) ପାଞ୍ଚିଲେ ( ଲକ୍ଷ୍ମଣ ମନରେ ପାଞ୍ଚିଲେ ) ଏ ଭାଷା (ଏକଥା ) ନ କହୁଁ ୧ବାତାଯୁ ଯେ ରାମ (ମୃଗ) ତା ( ତାହାର ) ୨ ଅନୁଜାୟୀ ( ସାନଭାଇ ) ଶଶ ସିନା (ଶଶା ବୋଲି ନ କହେତ ) । ୧୪ ।

୧୫ଶ ପଦ—ପୁଣି ବିଚାରିଲେ, ବିନୋଦ 'ଜନ' ହସ୍ତରୁ ପୋଷା-

---

୧—ପଞ୍ଚଦୀର୍ଘଃ ପଞ୍ଚସୂକ୍ଷ୍ମଃ ସପ୍ତରକ୍ତଃ ଷଡ଼ୁନ୍ନତଃ ।
ତ୍ରିହ୍ରସ୍ୱଃ ପୃଥୁଗମ୍ଭୀରୋ ଦ୍ୱାତ୍ରିଂଶଲକ୍ଷଣୋ ମହାନ୍ । ଇତି ସାମୁଦ୍ରିକେ ।

୨—ମହତୋ ଭାବଃ ମହତ୍ତ୍ୱଂ ।

୩—ସ୍ୟାଲ୍ଲକ୍ଷେ ଲକ୍ଷଣଃ ପୁଂସି ସୌମିତ୍ରୌ ଶ୍ରୀମତି ତ୍ରିଷୁ ଭଦ୍ରଂ ଇତି ରଭସଃ ।

୧—ମୃଗେ କୁରଙ୍ଗବାତାୟୁହରିଣାଜିନଯୋନୟଃ ଇତ୍ୟମରଃ ।

୨—ଅନୁଜଇବାଚରତି ଅନୁଜାୟତେ—ଇତି ଅନୁଜାୟୀ । ଇନ୍ ପ୍ରତ୍ୟୟଃ ।

ବଳୀମୁଖ ସିନା ଏହ୍ନ ସେ ବୁଦ୍ଧି ରଚଇ ।
ବାଳନାଶାସ୍ତ୍ର ଧନୁରେ ଯୋଚ ଡିଆରଇ । ୧୬ ।
ବସିବା-ଦୋଳ୍ପସ୍ତମ୍ଭକୁ ଭେଦ୍ଦ ଦିଅ ନାସ ।
ବୋଲୁଛି ସୁଗ୍ରୀବେ ଏ ସମୟେ ତାହ୍ୱ ଭାଷ । ୧୭ ।
ବିଭ୍ରମ ହେଲ କମ୍ପାଇଁ ରଘୁତ୍ତମ ଭ୍ରାତେ ।
ବଦାନ୍ୟ ସେ ଏ ସମ୍ପଦେ-ସେହ୍ନ ମଦମତ୍ତେ । ୧୮ ।
ବାଜେ ଆସ ସ୍ତମ୍ଭେ ଶର ପଡ଼େ କି ନର୍ଘାତ ।
ବାଣତେଜଘାତେ ରବିସୁତ ମୂର୍ଚ୍ଛିତ । ୧୯ ।

---

ମର୍କଟ ଫିଟଇ ( ଫିଟିଲେ ) ବିକୃତ ମୁଖ ଦେଖାଇ ଗୁଣ ( ପୋଷିଲ ଗୁଣ ) ନ ମାନଇ । ୧୫ ।

୧୬ଶ ପଦ—ଏହ୍ନ ( ସୁଗ୍ରୀବ ) ବଳୀମୁଖ (ମର୍କଟ) ସିନା 'ତେଣୁ' ସେ ବୁଦ୍ଧି ରଚଇ କଲ ( ଆମ୍ଭ କଲ ଉପକାରକୁ ନ ଘେନଲ) । 'ଏମନ୍ତ ଭାଳ କ୍ରୋଧରେ' ବାଳନାଶାସ୍ତ୍ର ( ବାଳିକ ନାଶିଥିବା ଶରକୁ ) ଧନୁରେ ଯୋଚ (ଯୁକ୍ତକରି) ଡିଅଇଇ (ଡିଆଣଲେ) । ୧୬ ।

୧୭ଶ ପଦ—'ହେ ଶର ! ସୁଗ୍ରୀବ' ବସିବା ଦୋଳସ୍ତମ୍ଭକୁ ଭେଦ ନାସ ଦିଅ ( ସୁଗ୍ରୀବକୁ ଭୟ ଦେଖାଇବ ) ଏ ସମୟେ ସୁଗ୍ରୀବେ (ସୁଗ୍ରୀବକୁ) ତାହ୍ୱ 'ମହାଦେଇ ଭାଷ ବୋଲୁଛି (କଥା କହୁଅଛ୍ନ) । ୧୭ ।

୧୮ଶ ପଦ—ହେ ! ନାଥ ରଘୁତ୍ତମଭ୍ରାତେ ( ଲକ୍ଷ୍ମଣଙ୍କଠାରେ ବିଭ୍ରମ କମ୍ପାଇ ହେଲ ( ବାଭୁଳ ବୁଦ୍ଧି ତାହ୍ନଙ୍କ ପ୍ରକାଶ କଲ ) । ଏ ସମ୍ପଦେ (ଏ ସମ୍ପତ୍ତିରେ) ୧ବଦାନ୍ୟ (ଦାତା) ସେ; ସେହ୍ନ ମଦମତ୍ତେ* (ସେହ୍ନ ସମ୍ପତ୍ତି ମଦମତ୍ତରେ) "କେଉଁ ଲକ୍ଷ୍ମଣ ବୋଲି ପଚ୍ଚରିଲ୍ ଜାଣି ପାରିଲ୍ ନାହିଁ ।" ।୧୮।

୧୯ଶ ପଦ—'ତାହ୍ୱ ଏମନ୍ତ କହୁବାବେଳେ,, ଲକ୍ଷ୍ମଣ ପ୍ରେରିତ' ଶର ଆସି ସ୍ତମ୍ଭେ ( ଦୋଳାସ୍ତମ୍ଭରେ ) ବାଜେ ( ବାଜିଲ ), ନର୍ଘାତ

---

୧—ସ୍ୟାଦ୍ଵଦାନ୍ୟସ୍ଥୂଲ ଲକ୍ଷଦାନଶୌଣ୍ଡା ବହୁପ୍ରଦେ ଇତ୍ୟମରଃ ।

* ସମ୍ପତ୍ତିପଟଲାଚ୍ଛନ୍ନାଃ ପଶ୍ୟନ୍ତପି ନ ପଶ୍ୟନ୍ତି ।
ବିପଦ୍ୟଞ୍ଜନଚୂର୍ଣ୍ଣେନ ପୁନଃ ପଶ୍ୟନ୍ତି ନିର୍ମଳଂ ।

ବାସାନ୍ତରେ ଥିଲେ ଶାଖାମୃଗମନ୍ତ୍ରୀ ପାଞ୍ଚ ।
ବଜ୍ର ଇନ୍ଦ୍ର ବାଳି ଛଳେ ମାଇଲା ଏ ପାଞ୍ଚ । ୨୦ ।
ବାଧ ପ୍ରାଣ ଯେବେ କରିଥିବ ସୁଗ୍ରୀବଙ୍କୁ ।
ବୁଡ଼ାଇବା ତା ସମ୍ପଦ କହ୍ନ ରାଘବଙ୍କୁ । ୨୧ ।
ବୋଲେ କେ କହିବା ଯାଏ ରାଘବଙ୍କୁ କାହିଁ ।
ବାରି ସଞ୍ଚି କଣ୍ଠ ଫୁଙ୍କେ ତାହା ଯାଇଁ କହି । ୨୨ ।
ବଟସ ଝାମ ପାଇ ପିତୃବୈରୀ ପ୍ରାପ୍ତ ଛନ୍ନ ।
ବୁଝିଲେ ସମସ୍ତ କଥା ଉପାୟବିହୀନ । ୨୩ ।

---

ପଡ଼େ କି ? (କର୍ଘାତ ପଡ଼ିଲା ପ୍ରାୟ ଶବ୍ଦ ହେଲା) । ବାଣ ତେଜଘାତେ ରବିସୁତ (ସୁଗ୍ରୀବ) ମୂର୍ଚ୍ଛିତ (ମୋହଗଲା) । ୧୯ ।

୨୦ଶ ପଦ—ବାସାନ୍ତରେ ( ଅନ୍ୟଗୃହରେ ) ପାଞ୍ଚ ( ପାଞ୍ଚଗୋଟି ) ଶାଖାମୃଗ ମନ୍ତ୍ରୀ (ବାନରମନ୍ତ୍ରୀ) ଥିଲେ । 'ସେମାନେ' ଏ (ଏମନ୍ତ) ପ୍ରାଞ୍ଚ (ଚତୁର) 'କଲେ', ବାଳିଛଳେ (ବାଳିଛଳରେ) ଇନ୍ଦ୍ର ବଜ୍ର ମାଇଲା । ୨୦ ।

୨୧ଶ ପଦ—ଯେବେ ସୁଗ୍ରୀବଙ୍କ ପ୍ରାଣ ବାଧ ( ପ୍ରାଣରେ ବିନଷ୍ଟ ) କରିଥିବ 'ତେବେ' ରାଘବଙ୍କୁ କହି ତା ସମ୍ପଦ ବୁଡ଼ାଇବା ( ଇନ୍ଦ୍ରସମ୍ପତ୍ତି ନାଶିବା ) । ୨୧ ।

୨୨ଶ ପଦ—'ଏମନ୍ତ କେହି ମନ୍ତ୍ରୀ ବୋଲନ୍ତେ, ତାହା ଶୁଣି' କେ (କେହି ମନ୍ତ୍ରୀ) ବୋଲେ ( ବୋଇଲା ) ରାଘବଙ୍କୁ କହିବା ଯାଏ ଆଉ କାହିଁ ? 'ଏମନ୍ତ ବାରେ' କହି 'ଦେଖିଲା' ତାହା 'ସେଠାରୁ' ଯାଇ (ଗଲେ) । 'ସେ ସ୍ଥାନରେ ମିଳି' ବାରି ସିଞ୍ଚି କଣ୍ଠ ଫୁଙ୍କେ (ଫୁଙ୍କିଲା) । ୨୨ ।

୨୩ଶ ପଦ—ଏମନ୍ତ ଉପଦ୍ରବରୁ, ଝାମଯାଇ (ଝାମଗଲା) ସୁଗ୍ରୀବ ବଟେ (ଉଠି ବସେ ), ପିତୃବୈରୀ ପ୍ରାପ୍ତ ଛନ୍ନ 'ହୁଏ' ମନ୍ତ୍ରୀମାନେ ସକଳ କଥା ବୁଝିଲେ ଉପାୟବିହୀନ ( ଏକଥାକୁ ଉପାୟ ନାହିଁ ) । 'ସମସ୍ତେ ନିରୁଦ୍ୟମ ହେଲେ ଏହିଭଳି' । ୨୩ ।

ବନ୍ଧାପନାସ୍ଥାଳୀ ଘେନି ବାହାରିଲେ ରାଣୀ ।
ବାଡ଼ାନ୍ତରେ ମନ୍ତ୍ରୀ ଘେନି କପିଚୂଡ଼ାମଣି । ୨୦ ।
ବାଳିକା ଜାଙ୍ଗଳୀ ସ୍ତନ ପେଟୀ ବିଶାରଦ ।
ବନ୍ଧାଣିତଣ୍ଡୁଳ ଧୂଳି ତନୁଗନ୍ଧ ଗଦ । ୨୫ ।
ବିନସ୍ତ୍ର ପଦ ହ୍ରୀଁ ରାଗ ଯୋଗରେ ଉକ୍ତ ।
ବଶୀକୃତ ପୁନ୍ନାଗକୁ ବିହିତ ସ୍ଥକିତ । ୨୬ ।
ବାନର ଈଶ ସୁମନ୍ତ୍ରୀ କରି ଭେଟାଇଲା ।
ବଚନ ରଚନ ତାଙ୍କ ଏମନ୍ତ ହୋଇଲା । ୨୭ ।

---

୨୪ଶ ପଦ—'ଏମନ୍ତ ଦେଖି' ରାଣୀ ( ତାରା) ବନ୍ଧାପନା ସ୍ଥାଳୀ ଘେନି 'ଲକ୍ଷ୍ମଣଙ୍କୁ ବୋଧିବା ପାଇଁ' ବାହାରିଲେ । 'ସେ ସମୟେ' କପି ଚୂଡ଼ାମଣି (ସୁଗ୍ରୀବ) ମନ୍ତ୍ରୀ (ମନ୍ତ୍ରୀମାନଙ୍କୁ) ଘେନି "ଭୟପାଇ" ବାଡ଼ାନ୍ତରେ (ବାଡ଼ମଧ୍ୟରେ) ରହିଲେ । ୨୪ ।

୨୫ଶ ପଦ—ଏ ରୂପକ—ବାଳିକା (ବାଳା-ତାରା) ୧ ବିଶାରଦ (ପ୍ରବୀଣ) ୨ଜାଙ୍ଗଳୀ (ବିଷବୈଦ୍ୟ-ସାପୁଆକେଳା) 'ହେଲା' । 'ତାହାର' ସ୍ତନ (ପୟୋଧର ଦ୍ୱୟ ) ପେଟୀ (ପେଡ଼ି) ହେଲା । ବନ୍ଧାଣିତଣ୍ଡୁଳ 'ତହିଁରେ' ଧୂଳି (ମନ୍ତ୍ରଧୂଳି) 'ହେଲା' । ତନୁ ଗନ୍ଧ ( ଦେହ ସୁବାସ ) ଗଦ (ହେଲା) । ୨୫ ।

୨୬ଶ ପଦ—ରାଗ (ଅନୁରାଗ) ରାଗ ( ରାଗିଣୀ ) ହେଲା । 'ତାହା' ଯୋଗରେ ଉକତ (ଉକ୍ତ) ବିନସ୍ତ୍ର (ବିନୟବଚନ) ପଦ ହେଲା । ହ୍ରୀ (ଲଜ୍ଜା) 'ଏମାନଙ୍କ ଦ୍ୱାରା' ପୁନ୍ନାଗ ( ପୁରୁଷଶ୍ରେଷ୍ଠ ଲକ୍ଷ୍ମଣ ) ପୁନ୍ନାଗ (ପୁରୁଷନାଗ) ହେଲେ । ତାଙ୍କୁ ବଶୀକୃତ 'ଏବଂ' ସ୍ଥକିତ (ସ୍ଥିର) ବିହିତ (କରାଇଲା) ।

୨୭ଶ ପଦ—'ତଦନ୍ତେ' ସୁମନ୍ତ୍ରୀ ( ମନ୍ତ୍ର ସହିତ ) କରି ବାନରଈଶ (ସୁଗ୍ରୀବଙ୍କୁ) 'ଲକ୍ଷ୍ମଣଙ୍କ ସମ୍ମୁଖେ' ଭେଟାଇଲା । "ସେକାଳେ" ତାଙ୍କ (ସୁଗ୍ରୀବାଦିଙ୍କର) ଏମନ୍ତ ବଚନ ରଚନ ହୋଇଲା । ୨୭ ।

---

୧—ବିଶାରଦେ ବୁଧେ ଧୃଷ୍ଟେ ପ୍ରଗଲ୍ଭେ ଚ ବିଶେଷକେ ଇତି କୋଷଃ ।
୨—ବିଷବୈଦ୍ୟେ ଜାଙ୍ଗଳିକ ଇତ୍ୟମରଃ ।

ବକ୍ଷେ ଭକ୍ତ ପାଦଘାତ ବହିଲେ ମାଧବ ।
ବହିଲେ ବହିଲେ ଏତେ ବୋଇଲେ ସୁଗ୍ରୀବ । ୨୮ ।
ବୋଇଲେ ମନ୍ତ୍ରୀଏ ପ୍ରହ୍ଲାଦକୁ ଇନ୍ଦ୍ର କଲେ ।
ବିଭୂତି ମଦେ ସେ ନ ଚହ୍ଲିଲ କ କୋପିଲେ । ୨୯ ।
ବାହ୍ନିଲେ ଘୃତ ଢାଳିଲେ ଯଥା ତେଜ ରଜ ।
ବହିଲେ ଦୁଗ୍ଧ ଆହୁତି ତଥା ଶାନ୍ତ ଭଜ । ୩୦ ।
ବିଜେ କର ପୁରେ ବୋଲନ୍ତେ ବସି ତରୁତଳ ।
ବିଧାନ ଲଙ୍କାର ସୁଗ୍ରୀବାଦ ଅନୁକୂଳ । ୩୧ ।

୨୮ଶ ପଦ—* ଭକ୍ତ (ଭୃଗୁଋଷି) ୧ ବକ୍ଷେ (ବକ୍ଷସ୍ଥଳରେ) ପାଦଘାତ ବହିଲେ । ମାଧବ ୨ ବହିଲେ (ସେ ବୃତ୍ତିବରେ) "ସେ ପାଦଚହ୍ନକୁ ବହିଲେ 'ତାଙ୍କ ଦୋଷ ନ ଘେନିଲେ' । 'ସେପରି ମୋ ଦୋଷ ଘେନିବେ ନାହିଁ' ଏତେ (ଏମନ୍ତ) ସୁଗ୍ରୀବ ବୋଇଲେ । ୨୮ ।

୨୯ଶ ପଦ—ମନ୍ତ୍ରୀଏ (ମନ୍ତ୍ରୀମାନେ) ବୋଇଲେ ସେ 'ପ୍ରଭୁ' ପ୍ରହ୍ଲାଦଙ୍କୁ 'ସ୍ୱର୍ଗରେ' ଇନ୍ଦ୍ର କଲେ । ସେ (ପ୍ରହ୍ଲାଦ) ବିଭୂତି ମଦେ (ଐଶ୍ୱର୍ଯ୍ୟ ମଦରେ) ନ ଚହ୍ଲିଲ 'ସେ ପ୍ରଭୁ ତାଠାରେ' କୋପିଲେ କି ? (କୋପ କଲେ ନାହିଁ) । "ସେପରି ତୁମ୍ଭଠାରେ ଏ କୋପ କରିବେ ନାହିଁ ଏହି ସ୍ତବ" । ୨୯ ।

୩୦ଶ ପଦ—ସୁଗ୍ରୀବାଦଙ୍କର ଏମନ୍ତ ବିନୟ ଗର୍ଭ ବାକ୍ୟ ଶୁଣି, ବାହ୍ନିଲେ (ଅଗ୍ନିରେ) ଘୃତ ଢାଳିଲେ ତେଜ ଯଥା (ଯେପରି) ରଜ (ପ୍ରଦୀପ୍ତ) ହୁଏ "ସେହିପରି ଲକ୍ଷ୍ମଣ ହୋଇଥିଲେ" । "ତହିଁରେ" ଦୁଗ୍ଧ ଆହୁତି ବହିଲେ (ଦେଲେ) 'ଅଗ୍ନି ଯେପରି ଶାନ୍ତିକୁ ଭଜେ' ତଥା 'ଲକ୍ଷ୍ମଣ' ଶାନ୍ତ ଭଜ (ଶାନ୍ତହେଲେ) । ୩୦ ।

୩୧ଶ ପଦ—'ହେ ପ୍ରଭୋ !' ପୁରେ (ମୋହର ପୁରକୁ) ବିଜେ କର (ଆସ) ବୋଲନ୍ତେ (ଏମନ୍ତ ବୋଲନ୍ତେ) "ଅଙ୍ଗୀକାର ନ କରି"

*—ଭୃଗୁପ୍ରଚଣ୍ଡଚରଣାଘାତେ ଘୃଣାଘୂର୍ଣ୍ଣିତଃ ଇତି ପ୍ରୟୋଗଃ ।
୧—ଉରେ ବକ୍ଷଂ ଚ ବକ୍ଷଶ୍ଚେତ୍ୟମରଃ ।
୨—ଶ୍ରୀମାନ୍ ସ୍ନିଗ୍ଧସ୍ତୁ ବତ୍ସଲଃ ।

ବ୍ୟଥିତ ରାମର ସୈନ୍ୟ ଆଣିଗଲ ଗୃହେ ।
ବଞ୍ଚନ୍ତି ସେ ଜାଣି ସେହି କଥା ପରସ୍ପରେ । ୩୨ ।
ବୋଲଇ କ୍ଷଣଦା ସେହୁ କ୍ଷଣ ପ୍ରାୟେ ଗଲ ।
ବାସର ପ୍ରସରୁ ଦ୍ୱିଜ ଆନନ୍ଦ ବଢ଼ିଲ । ୩୩ ।
ବିଶୁଦ୍ଧ କର୍ମ ଉଦୟେ ସଲିଳେ ଗମନ ।
ବିନାଶିଲ ତମ ଦିନବନ୍ଧୁ ଦରଶନ । ୩୪ ।
ବଳ ଘେନି ଏ ସମୟେ ଅଙ୍ଗଦ ପ୍ରବେଶ ।
ବ୍ରହ୍ମାଣ୍ଡ ପୂରିତ ହେଲ କଳକଳା ଘୋଷ । ୩୫ ।

---

ତରୁତଳ ବସି ( ବୃକ୍ଷ ମୂଳରେ ବସିଲେ ) । ଲଙ୍କାର ବିଧାନ "ଲକ୍ଷ୍ମଣ କହନ୍ତେ" ସୁଗ୍ରୀବାଦି ଅନୁକୂଳ "କଲେ" । ୩୧ ।

୩୨ଶ ପଦ—ରାମର ( ରାମଚନ୍ଦ୍ରଙ୍କର ) ବ୍ୟଥିତ 'ହେବାର ଲକ୍ଷ୍ମଣ କହନ୍ତେ' ଗୃହେ ( ଗୃହମାନେ ) ସୈନ୍ୟ ଆଣିଗଲ ( ଆଣି ଯାଇଥିବା ) କଥା ସୁଗ୍ରୀବ କହିଲେ' । ଏମନ୍ତେ ସେ ପରସ୍ପରେ ( ଅନ୍ୟୋନ୍ୟରେ ) 'କଥା ବାର୍ତ୍ତା ହୋଇ' ବସି ଜାଣି ବଞ୍ଚନ୍ତି (ସେଠାରେ ରାତି ପୁହାଇଲେ) ୩୨ ।

୩୩ଶ ପଦ—ସେହୁ (ରାତ୍ରି) କ୍ଷଣଦା ବୋଲଇ 'ଏଣୁ' କ୍ଷଣ ପ୍ରାୟ ଗଲ । ବାସର (ଦିନ) ପ୍ରସରୁଁ (ପ୍ରସରନ୍ତେ) ଦ୍ୱିଜ (ପକ୍ଷିଙ୍କର ଓ ବିପ୍ରଙ୍କର ) ଆନନ୍ଦ ବଢ଼ିଲ । ୩୩ ।

୩୪ଶ ପଦ—ବିଶୁଦ୍ଧ କର୍ମ ( କୃତ୍ୟ ) ଉଦୟେ ( ଉଦୟ ନିମିତ୍ତ ) ସଲିଳେ (ଜଳା ସହିତରେ) 'ପକ୍ଷୀଏ' ଗମନ 'କଲେ' । ବିପ୍ରେ ବିଶୁଦ୍ଧ କର୍ମ (ସନ୍ଧ୍ୟା ତର୍ପଣାଦି) ଉଦୟେ ( କରିବା ନିମିତ୍ତ ) ସଲିଳେ (ଜଳରେ) ଗମନ (ପଶିଲେ) । ଦୀନବନ୍ଧୁ ( ହରିଙ୍କ ) ଦରଶନ ( ଦର୍ଶନ ) 'ବିପ୍ରଙ୍କ' ତମ (ଅଜ୍ଞାନ) ବିନାଶିଲ । ଦୀନବନ୍ଧୁ ( ସୂର୍ଯ୍ୟ ) ଦରଶନ ( ଦର୍ଶନ ) 'ପକ୍ଷିଙ୍କ' ତମ (ଅନ୍ଧକାର) ବିନାଶିଲ । ୩୪ ।

୩୫ଶ ପଦ—ଏ ସମୟେ ଅଙ୍ଗଦ ବଳ ( ସୈନ୍ୟ ) ଘେନି ପ୍ରବେଶ 'ହେଲ' । କଳକଳା ଘୋଷ ( ବାନରଙ୍କ କଳକଳା ଧ୍ୱନି ବ୍ରହ୍ମାଣ୍ଡ ପୂରିତ ହେଲ ) ବ୍ରହ୍ମାଣ୍ଡ ପୂରିଲ । ୩୫ ।

ବୋଲି ଶ୍ରୀ ଜଗନ୍ନାଥଙ୍କଲ ସୁଗ୍ରୀବ ଲକ୍ଷ୍ମଣ ।
ବାହାରିଲେ ସଙ୍ଗ କରି ସେନାପତିଗଣ । ୩୬ ।
ବସୁଧାଭୃତରେ ଥାଇ ଭାଳେ ଦାଶରଥି ।
ବାହୁଡ଼ିତ ନ ଆସିଲ ସୌମିତ୍ରେୟ ଏଥି । ୩୭ ।
ବୈଦ୍ୟ ହେବ ବେଗୀ ମୁହିଁ ତାହା ଉପଗ୍ରରେ ।
ବ୍ୟବହାର କରି ରହିଥିଲି ଜୀବନରେ । ୩୮ ।
ବ୍ୟାଧି ଅସାଧ ଜାଣି କି ନ ଆସେ ସନ୍ନିଧି ।
ବିନାଶ ହୋଇବା କଥା ମୋର ହେଲି ସିଦ୍ଧି । ୩୯ ।
ବାଣୀ ଶୁଭିଲ ଏ କାଳେ ଧାମ ରହ ଗମ ।
ବଷପୁ କି ଭାଳି ଅନାଇଲେ ରଘୂତ୍ତମ । ୪୦ ।

---

୩୬ଶ ପଦ—ସୁଗ୍ରୀବ ଲକ୍ଷ୍ମଣ 'ଦୁହେଁ' "ସୈନ୍ୟ ଆଣିବାକୁ" ଶ୍ରୀଜଗନ୍ନାଥଙ୍କଲ ବୋଲି ସେନାପତିଗଣ ସଙ୍ଗ କରି "ରାମ ଛାମୁରୁ" ବାହାରିଲେ । ୩୬ ।

୩୭ଶ ପଦ—ବସୁଧାଭୃତରେ (ମାଲ୍ୟବାନ୍ ପର୍ବତରେ) ଥାଇ ଦାଶରଥି (ରାମ) ଭାଳେ ( ଭାଳୁଛନ୍ତି ) । ସୌମିତ୍ରେୟ (ଲକ୍ଷ୍ମଣ) ତ ଏଥି ( ଏଠାକୁ ), ବାହୁଡ଼ି ନ ଆସିଲ । ୩୭ ।

୩୮ଶ ପଦ—ସେହି (ଲକ୍ଷ୍ମଣ) ବୈଦ୍ୟ, ମୁହିଁ ରୋଗୀ, ତାହା ଉପଗ୍ରରେ (ତା ଚିକିତ୍ସାରେ) ବ୍ୟବହାର କରି ଜୀବନରେ ରହିଥିଲି । ୩୮ ।

୩୯ଶ ପଦ—'ମୋହର' ବ୍ୟାଧି (ବିରହ ବ୍ୟାଧି ) ଅସାଧ୍ୟ ଜାଣି (ମନେ କରି) ସନ୍ନିଧି ('ମୋ ନିକଟକୁ ) ନ ଆସେ କି ? "ଏଣୁ" ମୋର ବିନାଶ ହୋଇବା କଥା ସିଦ୍ଧି (ନିଶ୍ଚୟ) ହେଲି । ୩୯ ।

୪୦ଶ ପଦ—ଏ କାଳେ ( ଏ ସମୟେ ) ଧାମ ( ଧାଆଁ ) ରହ (ସ୍ଥିର ହୁଅ) ଗମ ( ଗ୍ରଲ ) ବାଣୀ ଶୁଭିଲ । 'ଶୁଣି' ରଘୁତ୍ତମ ( ରାମ ) ବଷପୁ କି "ଏମନ୍ତ" ଭାଳି ଅନାଇଲେ । ୪୦ ।

ବନଗିରି ପୂରି ଆସେ ଅଲେଖ ପ୍ଲବଗ ।
ବାରୁଣୀ ସନ୍ଧ୍ୟା ଅରୁଣୀ ପ୍ରାପ୍ତ କେଉଁ ମାର୍ଗ । ୪୧ ।
ବ୍ୟାପିଲ ପରି କେ ଦଗେ ଧୂମପାଣ୍ଡୁରତା ।
ବିଧୁକର ନବୋଦୟେ ଆସିବା ଶୋଭିତା । ୪୨ ।
ବିଦିତ କେଉଁ ଦଗରେ କୁଜଝଟିକା ପରି ।
ବଢ଼େ କେଉଁ ପଥରେ କ ହରିତାଳଧାରି । ୪୩ ।
ବିଷବୈଦ୍ୟ ପରି ଶୋଭା ଅଛନ୍ତି ସେ ପାଇ ।
ବିଳେଶୟ ଲାଙ୍ଗୁଳକୁ ଆସନ୍ତି ଖେଳାଇ । ୪୪ ।

---

୪୧ଶ ପଦ—ଅଲେଖ (ଅସଂଖ୍ୟ) ପ୍ଲବଗ (ମର୍କଟ) ବନଗିରି ପୂରି ଆସେ । ବାରୁଣୀ ସନ୍ଧ୍ୟା ( ପଶ୍ଚିମ ଦିକ୍ ସନ୍ଧ୍ୟା ) ଅରୁଣୀ (ଆରକ୍ତ ହେଲା ) ପ୍ରାପ୍ତ କେଉଁ ମାର୍ଗ (ବାଟ) 'ହୋଇଅଛୁ' । ୪୧ ।

୪୨ଶ ପଦ—କେ (କେଉଁ) ଦଗେ (ଦଗରେ) ଧୂମ (ଧୂଆଁ) ପାଣ୍ଡୁରତା (ପାଣ୍ଡୁରବର୍ଣ୍ଣ) ନବୋଦୟେ (ନୂତନ ଉଦୟ ହୋଇ) ବିଧୁକର (ଚନ୍ଦ୍ରକିରଣ) ବ୍ୟାପିଲ ପରି ଆସିବା ଶୋଭିତା (ବାନରଙ୍କ ଆସିବା ଶୋଭା ଦିଶଇ) 'ଏହାଦ୍ୱାରା ଧୂମବର୍ଣ୍ଣ ପାଣ୍ଡୁରବର୍ଣ୍ଣ ରକ୍ତବର୍ଣ୍ଣ ଶୁକ୍ଳବର୍ଣ୍ଣ କପି ଆସିବାର ସୂଚିତ ହେଲା' । ୪୨ ।

୪୩ଶ ପଦ—କେଉଁ ଦଗରେ କୁଜଝଟିକା ( କୁହୁଡ଼ି ) ପରି ବିଦିତ (ପ୍ରକାଶ ହୋଇ ଅଛନ୍ତି) । କେଉଁ ପଥରେ ହରିତାଳ ଧାରି ବଢ଼େ କି ? 'ଏହାଦ୍ୱାରା କୁହୁଡ଼ିବର୍ଣ୍ଣ କପି ଓ ହଳଦିଆବର୍ଣ୍ଣ କପି ଆସିବାର ସୂଚିତ ହେଲା' । ୪୩ ।

୪୪ଶ ପଦ—ସେ (ବାନରମାନେ) ବିଷବୈଦ୍ୟ (ସାପୁଆକେଳା) ପରି ଶୋଭା ପାଇଅଛନ୍ତି । ବିଳେଶୟ ( ସର୍ପ ) ଲାଙ୍ଗୁଳକୁ ଖେଳାଇ ଆସନ୍ତି । ଅଥବା ତାଙ୍କ ଲାଙ୍ଗୁଳକୁ ବିଳେଶୟ (ସର୍ପପ୍ରାୟ) ଖେଳାଇ ଆସନ୍ତି (ଆସୁଅଛନ୍ତି) । ୪୪ ।

ବାଟଏ ବାଟଏ କ ନପାର ଆଳ ଆଳ ।
ବକ୍ତ୍ର ମାଳାବଜ କୈରବ କୋକନଦ ଝଳ । ୪୫ ।
ବୃଦ୍ଧଶ୍ରବାଦଗୁଁ ସନ୍ଧ୍ୟା ତମ ଯଥା ଯୋଟି ।
ବିହରନ୍ତ କେଉଁ ପଥେ ଋକ୍ଷ କୋଟି କୋଟି । ୪୬ ।
ବସୁଧାଭୃତ ତଳରେ ରଖି କପିସୈନ୍ୟ ।
ବ୍ରଧ୍ନସୁତ ଲକ୍ଷ୍ମଣ ସୁଷେଣ ହନୁମାନ । ୪୭ ।
ବାଳପୁତ୍ର ଜାମ୍ବବ ତାରାଖ୍ୟ ସାତେ ଯାଇ ।
ବନ୍ଦନ୍ତି ରାଘବେ ଉଚ୍ଚ ଆସନେ ବସାଇ । ୪୮ ।
ବିଶ୍ୱାମିତ୍ର ରାମଚନ୍ଦ୍ରେ ରାମଚନ୍ଦ୍ର ବିଧି ।
ବିଦିତ ଉଦିତ ସପ୍ତର୍ଷି କ ସନ୍ନିଧି । ୪୯ ।

---

୪୫ଶ ପଦ—ବକ୍ତ୍ର (ତାହାଙ୍କ ମୁଖ) ମାଳାବ୍ଜ (ମାଳୋତ୍ପଳ) କୈରବ (କୁମୁଦ) କୋକନଦ (ରକ୍ତୋତ୍ପଳ) 'ପ୍ରାୟ' ଝଳଆଳ ଆଳ (ପଂକ୍ତି ପଂକ୍ତି) 'ହୋଇ ଆସିବାରେ ଏମନ୍ତ ଦିଶୁଅଛି' ନପାର ବାଟଏ ବାଟଏ କ ? (ଲମ୍ବଣାପାଖରେ ଲମ୍ବଣା କି ?) ଏହାଦ୍ୱାରା କାଳମୁଖା ଦଧିମୁଖା ରକ୍ତମୁଖା କପି ଆସିବାର ସୂଚିତ ହେଲା । ୪୫ ।

୪୬ଶ ପଦ—ବୃଦ୍ଧଶ୍ରବାଦଗୁଁ (ପୂର୍ବଦଗରୁ) ଯଥା (ଯେମନ୍ତ) ସନ୍ଧ୍ୟାତମ (ସନ୍ଧ୍ୟାଅନ୍ଧାର) ଘୋଟି 'ଆସେ' ତଥା (ତେମନ୍ତ) କେଉଁ ପଥେ ଋକ୍ଷ (ଭଲ୍ଲୁକ) କୋଟି କୋଟି ବିହରନ୍ତି । ୪୬ ।

୪୭।୪୮ଶ ପଦ—ବସୁଧାଭୃତତଳରେ (ମାଲ୍ୟବାନ୍ ପର୍ବତତଳରେ) କପିସୈନ୍ୟ ରଖି ବ୍ରଧ୍ନସୁତ (ସୁଗ୍ରୀବ) ଲକ୍ଷ୍ମଣ ସୁଷେଣ ହନୁମାନ ବାଳପୁତ୍ର (ଅଙ୍ଗଦ) ଜାମ୍ବୁ ତାରାକ୍ଷ ସାତେ (ଏ ରୂପେ ସାତ୍ଜଣ) ଯାଇ ରାଘବେ (ରାମଙ୍କୁ) ଉଚ୍ଚଆସନେ ବସାଇ ବନ୍ଦନ୍ତି (ନମସ୍କାର) 'କଲେ' । ୪୭।୪୮

୪୯ଶ ପଦ—ରାମଚନ୍ଦ୍ରେ (ରାମଙ୍କଠାରେ) ରାମଚନ୍ଦ୍ର (ରମଣୀୟଚନ୍ଦ୍ର) ବୁଦ୍ଧି ବିଶ୍ୱାମିତ୍ର । କିମ୍ବା ବିଧି (ବିଧାନ) ବିଶ୍ୱାମିତ୍ର । 'ସେ' ୧ ସପ୍ତର୍ଷି (ମରୀଚ୍ୟାଦି ସପ୍ତର୍ଷିଙ୍କ) ସନ୍ନିଧି (ସମୀପରେ) ଉଦିତ 'ହୋଇ' ବିଦିତ

---

୧—ମରୀଚ ଅଙ୍ଗିରା ଅତ୍ରିଃ ପୁଲସ୍ତ୍ୟଃ ପୁଲହଃ କ୍ରତୁଃ ।
ବଶିଷ୍ଠଶ୍ଚେତି ସପ୍ତୈତେ ଇତି ସପ୍ତର୍ଷୟୋବିଦୁଃ ॥

ବେଢ଼ିବେ କ୍ଷମକ୍ଷମରେ ଋକ୍ଷପନ୍ତ ପୁଣି ।
ବାତାତ୍ମଜ ଯୁବରାଜ ଦୁହେଁ ଗଲେ ଆଣି । ୫୦ ।
ବିଭ୍ରାଜନ୍ତ ଚକ୍ରବର୍ତ୍ତୀ ପରା ଗୃପଧାରୀ ।
ବାହ୍ବୟ ପୁଚ୍ଛନ୍ତ ନାମ ବଳକୁ ଉଚାରି । ୫୧ ।
ବସନ୍ତେ ତୋଷବର୍ଦ୍ଧନ ସେ ନବ ମଦନ ।
ବନ୍ଧ୍ୟ ହେଲେ ଚନ୍ଦନେ ଜଗତପ୍ରାଣ ପୁନ । ୫୨ ।

---

(ପ୍ରକାଶ ପାଇଅଛନ୍ତି) କି ? 'ରାମଙ୍କ ପାଖରେ ସୁଗ୍ରୀବାଦ ସାକ୍ଷ୍ଜଣ ବସିବାରୁ ଏମନ୍ତ ଉପମିତ ହେଲା' । ୪୯ ।

୫୦ଶ ପଦ—ପୁଣି 'ସେହି ରମଣୀୟ଼ଚନ୍ଦ୍ରଙ୍କୁ' ଋକ୍ଷପନ୍ତ (ଭଲ୍ଲୁକ ପନ୍ତ) ଋକ୍ଷପନ୍ତ ( ନକ୍ଷତ୍ରପନ୍ତ ) ହେଲେ 'ସେ' ବେଢ଼ିବେ । ଅନନ୍ତର' ବାତାତ୍ମଜ (ହନୁମାନ) ଯୁବରାଜ (ଅଙ୍ଗଦ) ଦୁହେଁ 'ରାମଙ୍କ ଅନୁମତ ନେଇ' ସୈନ୍ୟ ଆଣି (ଆଣିବାକୁ) 'ଗଲେ' । ୫୦ ।

୫୧ଶ ପଦ—'ସେ କାଳରେ' ଗୃପଧାରୀ ( ରାମ ) ୧ଚକ୍ରବର୍ତ୍ତୀ (ସାର୍ବଭୌମ ରାଜା) ପରା ବିଭ୍ରାଜନ୍ତ ( ଶୋଭିପାଆନ୍ତ ) 'ଏଣୁ' ୨ବାହ୍ବୟ (ସେମାନଙ୍କର) ନାମ ଓ ବଳ ଉଚାରି (ଡାକି) ପୁଚ୍ଛନ୍ତ (ପଚାରନ୍ତ । କାହାର କି ନାମ, କାହାର କେତେବଳ ଏହା ଡ଼ାକି ପଚାରନ୍ତ ଏହି ତାତ୍ପର୍ଯ୍ୟାର୍ଥ ।୫୧।

୫୨ଶ ପଦ—ସେ ( ରାମ ) ନବମଦନ ( ନବୀନ କନ୍ଦର୍ପ ) 'ପରା ଅଟନ୍ତି' । 'କନ୍ଦର୍ପ ୧ବସନ୍ତେ (ପ୍ରିୟ ସଖାଠାରେ) ତୋଷ ବର୍ଦ୍ଧନ 'କରନ୍ତି' 'ରାମ ତଦ୍ରୂପ' ବସନ୍ତେ ( ବସନ୍ତ ନାମକ ଯୂଥପତିଠାରେ ) ତୋଷ ବର୍ଦ୍ଧନ 'କଲେ' । ପୁନ ( ପୁଣି ) 'ସେ ରାମ' ଜଗତ୍ପ୍ରାଣ (ପବନ) 'ପରା ହେଲେ' । 'ପବନ' ଚନ୍ଦନେ ( ଚନ୍ଦନରେ ) ବନ୍ଧ୍ୟ ହୁଏ 'ରାମ' ଚନ୍ଦନେ (ଚନ୍ଦନ ନାମକ ଯୂଥପତି ଦ୍ୱାରା) ବନ୍ଧ୍ୟ ହେଲେ । ୫୨ ।

---

୧—ଚକ୍ରବର୍ତ୍ତୀ ସାର୍ବଭୌମ ଇତ୍ୟମରଃ ।

୨—ସେନାନୀର୍ବାହ୍ବୟୀପତିରିତ୍ୟମରଃ ।

୧—ଖ୍ୟାତଃ ସହଚରସ୍ତସ୍ୟ ବସନ୍ତଃ ଚତବଃ ପ୍ରିୟଃ ।
ସରଳେ ସାହସରାଗଂ ପରହର ମୁଞ୍ଚ ସରମ୍ଭଂ ।
କୁସୁମଚାପସଖୋ କୀଲ୍କ୍ଷ୍ମସ୍ତତ ସହ ବସନ୍ତସଚବେନ । ଇତି ମାଳତୀମାଧବେ ।

ବେଳେ ବେଳେ ଅନାଇଲେ ଗବାକ୍ଷ ବୋଲନ୍ତେ ।
କ୍ଷାନ୍ତେମ ସେପର ଆଗେ ଗବୟ ଆସନ୍ତେ । ୫୩ ।
ବସନ୍ତ ମଧୁରେ କଞ୍ଚନ ତାଳମ୍ବ ଉତ୍ଫୁଲ୍ଲ ।
ବ୍ୟବସ୍ଥିତେ ପନସଙ୍କୁ କରାଇ ସଫଳ ।୫୪।
ବର୍ଦ୍ଧନକାରକ ପନଶୀଳରେ ସୁଶୀଳ ।
ପ୍ରକାଶି ମହେନ୍ଦ୍ର ଶିଷ୍ୟ ମହେନ୍ଦ୍ରେ ଚପଳ । ୫୫ ।
ବାନ୍ଧବ ସୁଖଦେ ସେ ଦ୍ୱିବିଦ ନାମ ଯେଣୁ ।
ବଳ କଷି ଦାଶରଥି ଶଉରର ଏଣୁ । ୫୬ ।

୫୩ଶ ପଦ—ଗବାକ୍ଷ ( ଏ ଗବାକ୍ଷନାମ ଯୂଥପତି) 'ଏମନ୍ତ' ବୋଲନ୍ତେ 'ସ୍ରମ' [୧]ଗବାକ୍ଷ ( ଜଳାକବାଟୀ ) 'ଆଶଙ୍କାରେ' ବେଳେ[୨] ( ବାରଂବାର ) ଅନାଇଲେ । ଗବୟ ( ଗବୟ ନାମା ଯୂଥପତି ) ଆସନ୍ତେ ସେପର [୨]ଗବୟ (ଗୟୂଳପଣ) ଆଗେ (ଆଗରେ) କ୍ଷାନ୍ତେମ । ୫୩ ।

୫୪ଶ ପଦ—ବସନ୍ତ ( ସ୍ରମଙ୍କ ଦେହରେ ) ମଧୁର ( ରୁଚିର ) ମଧ (ବସନ୍ତ ) ହେଲ ତହିଁରେ ତାଳମ୍ବ ( ସେନାପତି ) ତାଳମ୍ବ ବୃକ୍ଷ ହେଲ । କଞ୍ଚନ (ଯୂଥପତି) କଞ୍ଚନ ବୃକ୍ଷ ହେଲ ସେ ଦୁହେଁ ଉତ୍ଫୁଲ୍ଲ ( ପ୍ରଫୁଲ୍ଲ ) ହେଲେ । 'ସ୍ରମଙ୍କ ବସନ୍ତ ମଧୁ' ବ୍ୟବସ୍ଥିତେ (ବ୍ୟବସ୍ଥିତରେ) ପନସ ( ଯୂଥ) ପନସ ବୃକ୍ଷ, ତାଙ୍କୁ ସଫଳ (ସାର୍ଥ—ଫଳ ସହିତ) କରାଇଲ । ୫୪।

୫୫ଶ ପଦ—ପନଶୀଳ ( ଯୂଥପତି ) ତାଠାରେ ସୁ[୩]ଶୀଳ (ସଦ୍ବୃତ୍ତ) ବର୍ଦ୍ଧନକାରକ 'ହେଲେ' । ମହେନ୍ଦ୍ର (ଯୂଥପତିଠାରେ) ମହେନ୍ଦ୍ର ଶିଷ୍ୟ (ଇନ୍ଦ୍ର ସମ୍ପଦକୁ ) ପ୍ରକାଶି (ପ୍ରକାଶିଲେ) ୫୫ ।

୫୬ଶ ପଦ—ଯେଣୁ ଦ୍ୱିବିଦ ନାମ (ଯୂଥପତି) ସେ 'ତେଣୁ ତାହାର' ବାନ୍ଧବ ସୁଖଦ ହେଲେ । ଯେଣୁ ସେ ଦାଶରଥି ( ଦଶରଥ ପୁତ୍ର ) ତେଣୁ ଶଉରୀ (ଯୂଥପତି) ଶୌରି ( ଶନି ) ହେଲ ତାହାର ବଳ କଷ (କଷିଲେ) 'କାହିଁକି ନା ? ଦଶରଥଂଶନର ବଳ କଷଥିଲେ' । ୫୬ ।

୧ — ବାତାୟନଂ ଗବାକ୍ଷଃ ସ୍ୟାଦତ୍ୟମରଃ ।

୨—ଗବୟସ୍ତୁ ଗବାକୃତି ଇତି ହିଙ୍କାଣ୍ଡଶେଷଃ ।

୩—ଶୀଳଂ ସ୍ୱଭାବେ ସଦ୍ବୃତ୍ତେ ଇତି ବିଶ୍ୱଃ ।

ବର୍ଣ୍ଣ ଗୃହ୍ନୁଁ ମୀଳ ଦେଖି ସେ ନାମ ଉଦିତ ।
ବୋଲନ୍ତୁଁ ନଳ ବୋଇଲେ ଅବଧି ସଂଖ୍ୟାକୃତ । ୫୭ ।
ବଳେକ ଗନ୍ଧମାଦନ ସେହି ବୋଲି ସ୍ମରେ ।
ବିକଶେ କୁମୁଦ ରାମଚନ୍ଦ୍ର ସହଜରେ । ୫୮ ।
ବଚସ୍କର କେଶରୀ ଏହାଙ୍କୁ କେ ସମାନ ।
ବର୍ଣ୍ଣ ବେନି କାଳାଞ୍ଜନୁ ଶୁଣି ମହାସ୍ୱନ । ୫୯ ।
ବୈଲବନେ ପୃଥ୍ୱୀ କପିଯାକ ଦେଲେ ସ୍ଥାନ ।
ବସ୍ତୁ ମାୟାରୁ କରି ସେ ହୋଇଲା ବର୍ଦ୍ଧନ । ୬୦ ।

୫୭ଶ ପଦ—ମୀଳ ( ଯୂଥପତି ) ଦେଖି ବର୍ଣ୍ଣ ଗୃହ୍ନୁ ( ତାହାର ବର୍ଣ୍ଣକୁ ଗ୍ରହଣକରି ) 'ବୋଇଲେ' ସେ ( ମୀଳ ) ନାମ ଉଦିତ ହୋଇଅଛି ! 'ବର୍ଣ୍ଣ ଅନୁସାରେ ନାମ ହୋଇଅଛି ଏହିଭାବ' । ନଳ (ସେନାପତି) ଏ, 'ଏମନ୍ତ' ବୋଲନ୍ତୁଁ (ବୋଲନ୍ତେ) ରାମ ବୋଇଲେ ଅବଧି (ନିଶ୍ଚେ) ଅବଧି (ଅବ୍ଧିସମୁଦ୍ର) ସଂଖ୍ୟା କୃତ (କରିବ) 'ନଳ ଜମିର ଫଳ ସ୍ଥିର କଲପରି ଏ ସମୁଦ୍ରଜଳ ସ୍ଥିର କରିବ ଏହି ଭାବ' । ୫୭ ।

୫୮ଶ ପଦ—ଗନ୍ଧମାଦନ (ଯୂଥପତିକି) ବଳେକ ସେହି ଗନ୍ଧମାଦନଗିରି) ଏ 'ଏମନ୍ତ' ବୋଲି ସ୍ମରେ (ସ୍ମରଣ କଲେ ) । କୁମୁଦ (ଯୂଥପତି) କୁମୁଦ (କଇଁଫୁଲ) ହେଲି 'ତାହାର' ବିକାଶେ ( ପ୍ରକାଶ ବିଷୟରେ ) ସହଜରେ 'ଏତ' ରାମଚନ୍ଦ୍ର ( ରମଣୀୟ ଚନ୍ଦ୍ର ) । 'ଚନ୍ଦ୍ରଉଦୟରେ କଇଁଫୁଟେ ଏହି ଭାବ' । ୫୮ ।

୫୯ଶ ପଦ—କେଶରୀ (ଯୂଥପତି) ଏ 'ଏମନ୍ତ ବୋଲନ୍ତେ' ବଚସ୍କର (ରାମ କହିଲେ ) ଏହାଙ୍କୁ ଏ ( ଏହି କେଶରୀ ସିଂହ ) ସମାନ 'ଆଉ' କେ ସରି ? (କେହି ସରି ନୋହେ) । କାଳାଞ୍ଜନୁଁ ( କାଳାଞ୍ଜନଯୂଥପତିଠାରୁ ) ମହାସ୍ୱନ ଶୁଣି 'ମନେ କଲେ' କାଳାଞ୍ଜନ ଶବ୍ଦର ଆଦ୍ୟ ଦୁଇବର୍ଣ୍ଣ ୧କାଳୀ (ମେଘ) ଏ । ୫୯ ।

୬୦ଶ ପଦ—ବେଲବନେ ( ବିଲ୍ୱବନରେ ) ପୃଥ୍ୱୀ କପିଯାକ ( ସେ

୧—କାଳୀ ମେଘୌହରୌଘୌଷ୍ଟେତି ଶବ୍ଦମାଳା ।

୨　ବ୍ରହ୍ମାଣ୍ଡ ଯାହା ଉଦରେ ପ୍ରଳୟେ ସମ୍ଭାଇ ।
ବୁଲି ମାର୍କଣ୍ଡେୟ ଋଷି ଅନ୍ତ ପାଇ ନାହିଁ ।୭୧।
ବାଷଠିପଦରେ ସୈନ୍ୟଭେଟ ଛାନ୍ଦ ଶେଷ ।
ବୀରବର ଉପେନ୍ଦ୍ର ଭଞ୍ଜ କହେ ରସ ।୭୨।

———

## ଅଷ୍ଟବିଂଶ ଛାନ୍ଦ

ରାଗ-ଘଣ୍ଟାରବ ।

ବିଭୂଷା ଜଟାମୁକୁଟ　ବଜେ ମାଲ୍ୟବନ୍ତ କୂଟ ।
ବେଢ଼ିଛନ୍ତି ଚଉକଟ ଯୂଥପତି କ ଆଜ୍ଞା ଦେବେ ସମ୍ରାଟ୍ ।୧।

---

ସମସ୍ତଙ୍କୁ ରହିବାକୁ) ସ୍ଥାନ ଦେଲେ । ସେ (ବନ) ବସ୍ତୁ, ମାୟାରୂ କର ବର୍ଦ୍ଧନ ହୋଇଲା (ବଢ଼ି ଗଲା) । ୭୦ ।

୭୧ଶ ପଦ—ଯାହା ଉଦରେ (ଯେଉଁ ବସ୍ତୁ ଗର୍ଭରେ) ପ୍ରଳୟେ (ପ୍ରଳୟ କାଳରେ) ବ୍ରହ୍ମାଣ୍ଡ (ସକଳ ବ୍ରହ୍ମାଣ୍ଡ) ସମ୍ଭାଇ 'ଯେଉଁ ଗର୍ଭରେ' ମାର୍କଣ୍ଡେୟ ଋଷି ବୁଲି ଅନ୍ତପାଇ ନାହିଁ 'ସେ ମାୟାର ଅନ୍ତ କେ ପାଇବ' ।

୭୨ଶ ପଦ—ବାଷଠି ପଦରେ ସୈନ୍ୟଭେଟ ଛାନ୍ଦ ଶେଷ ହେଲା । ବୀରବର ଉପେନ୍ଦ୍ରଭଞ୍ଜ 'କବି' ଏ ରସ (ଏ ରସଶ୍ଳୋ) କହେ । ୭୨ ।

———

ଅଷ୍ଟବିଂଶ ଛାନ୍ଦ ।

୧ମ ପଦ—ଜଟା 'ରୂପ' ମୁକୁଟ 'ଦ୍ୱାରା' ²ବିଭୂଷା (ବିଶେଷରେ ଭୂଷଣ ହୋଇ) ମାଲ୍ୟବନ୍ତ କୂଟ (ମାଲ୍ୟବାନ୍ ପର୍ବତ ଶୃଙ୍ଗରେ) ବଜେ 'କରିଛନ୍ତି' । ³ସମ୍ରାଟ୍ (ମଣ୍ଡଳେଶ୍ୱର ରାମ) କ ଆଜ୍ଞା ଦେବେ ! 'ଏମନ୍ତ ଭାଳି' ଚଉକଟ (ତାଙ୍କ ଚାରିପାଖରେ) ଯୂଥପତି ବେଢ଼ିଛନ୍ତି । ୧ ।

---

୧—ମୁକୁଟଂ କପଟଂ ପୁନଂପୁଂସକଂ ।
୨—ଭୂଷା ତୁ ସ୍ୟାଦଳଂ କ୍ରିୟା ଇତ୍ୟମରଃ ।
୩—ଶାସ୍ତି ଯଶ୍ଚାଜ୍ଞୟା ରାଜ୍ଞଃ ସାମ୍ରାଟ୍ ଇତ୍ୟମରଃ ।

ବାରବେନ ଲୋକେ ସାର । ବୀରଧୂ ଖ୍ୟାତ ଯାହାର
ବୋଲନ୍ତ ସୁଗ୍ରୀବେ ପ୍ରିୟା ଖୋଜ ଏବେ ଦଗେ ଦଗେ ଯାନ୍ତୁ ବୀର ।୨
ବିଳ ବନ ଗିରି-ପୁରେ । ବିଳସନ୍ତୁ ଲୋଡ଼ିବାରେ ।
ବିଳମ୍ବ ନ କର ସନ୍ଦେଶ ସମସ୍ତ ଦେଶରୁ ଆଣନ୍ତୁ ଖରେ । ୩ ।
ବଡ଼େ ଯେ ରବିକୁ ବନ୍ଧ । ବୋଲଇ ରାବଣ ସେହି ।
ବନ୍ଦୀ କରିଛି କେ ରମଣୀମଣିକି ସନ୍ମୂଳ ଜାଣିବା ତାହି । ୪ ।
ବସିବା ସ୍ଥାନ ଆହୁରି । ବଣା ହେବ ସେହିପରି ।
ବାସକୁଳଟାର ସ୍ଥିତି ଡାକିନୀର ରକ୍ଷଗ୍ରାମ ଲଙ୍କ ପୁରୀ ।୫।

---

୨ୟ ପଦ—ବାରବେନ ଲୋକେ (ଚଉଦଭୁବନରେ) ସାର (ଶ୍ରେଷ୍ଠ) ବୀରଧୂ (ବୀରବର-ବୀରପଣ) ଖ୍ୟାତ ଯାହାର 'ଏମନ୍ତ ଯେ ରାମ' ସେ ସୁଗ୍ରୀବେ (ସୁଗ୍ରୀବକୁ) ବୋଲନ୍ତ (ବୋଲୁଛନ୍ତି) ଏବେ (ଏଥର) ଦଗେ ଦଗେ (ପ୍ରତିଦଗକୁ) ବୀର ଖୋଜ (ସୀତା ଖୋଜିବାକୁ) ଯାନ୍ତୁ ।୨।

୩ୟ ପଦ—ବିଳ (ଗୁମ୍ଫା, ବିବର, ଗର୍ତ୍ତ,) ବନ ଗିରି ପୁରେ (ଗ୍ରାମ ଓ ନଗରମାନଙ୍କରେ) ଲୋଡ଼ିବାରେ (ସୀତାଙ୍କୁ ଖୋଜିବାରେ) ବିଳସନ୍ତୁ (ବିହରନ୍ତୁ) ବିଳମ୍ବ ନ କର ସମସ୍ତ ଦେଶରୁ ସନ୍ଦେଶ (ବାର୍ତ୍ତା) ଖରେ (ବେଗେ) ଆଣନ୍ତୁ । ୩ ।

୪ର୍ଥ ପଦ—ଯେ (ଯେଉଁଲୋକ) ବଡ଼େ (ବଡ଼କରି) ରବିକୁ (ଧ୍ୱଜକୁ) ବନ୍ଧ (କରଇ) ସେହି ୧ ରାବଣ ବୋଲଇ, 'ପୁଣି ରାବଣ ନାମରେ ରାକ୍ଷସ ଅଛି ଏଣୁ' ମୋର ରମଣୀମଣିକି (କିଏ) ବନ୍ଦୀ କରି ଅଛି ତାହି (ସେହି ରାବଣକୁ) ସନ୍ମୂଳ (ନିଶ୍ଚୟ କରି) ଜାଣିମା ।୪।

୫ମ ପଦ—ସେହିପରି (ସେହି ରାବଣ ଶବ୍ଦପରି) ଆହୁରି (ପୁଣି) ବସିବା ସ୍ଥାନ (ତୁମ୍ଭ ନିବାସ ସ୍ଥାନ) 'ଶାଖା, ସେ ଲଙ୍କ ବୋଲଇ' କୁଳଟାର ବାସ (ବାସକୁ) 'ଲଙ୍କା ବୋଲି', ଡାକିନୀର ସ୍ଥିତି (ରହିବାସ୍ଥାନକୁ 'ଲଙ୍କା ବୋଲି' ଏଥିରେ ଢାଳେ' ବଣାହେବ ? (ନାହିଁ) ନାହିଁକିନା, ରକ୍ଷଗ୍ରାମ

---

୧—ରାବଣୋ ରବବୈଦେହୀ ଚେତି ମେଦନୀ ।
୧— ଲଙ୍କା ରକ୍ଷଃପୁରୀ ଶାଖାଡ଼ାକିନୀକୁଳଟାସୁ ଚେତି ମେଦନୀ ।

ବାଦ କନକନଗରେ । ବହନ୍ତାଇ ବା ବେଗରେ ।
ବବୁଧାଚଳେ କ ସମୁଦ୍ର ସେ କୂଳେ ଯିବାକୁ ସଂଶୟ କରେ ।୬।
ବୈଦେହୀ ସୀତା ମୋ ରାମା । ବୈଦେହୀ ବଣିକବାମା ।
ବଷ୍ଟୁପଙ୍କ ସୀତାଗୁଡ଼କାର ଗୃହସୀତାରେ ନୋହୁ ବଭ୍ରାମା । ୭ ।
ବୁଝିବ ସେହୁ ସହଜେ । ବହେ ଷଡ଼ନାମ ସେ ଯେ ।
ବୈଦେହୀ ଜାନକୀ ମୈଥିଳୀ ପାର୍ଥିବୀ ଯୋଜନଗନ୍ଧା ସୀତା ଯେ ।୮।

---

( ରାକ୍ଷସମାନଙ୍କର ଗ୍ରାମ ) 'ଯେଉଁ' ଲଙ୍କାପୁରୀ 'ତହିଁରେ ସେ ଅଛୁ ଜାଣିମ' ।୫।

୬ଷ୍ଠ ପଦ— କନକନଗରେ ବାଦ ବେଗରେ ବହନ୍ତାଇ ବା ( ଆମ୍ଭେ ବେଗେ ଯାଇ ସୁବର୍ଣ୍ଣପୁରୀ ଲଙ୍କାରେ ବବାଦ କରନ୍ତେ ·ଅବା) 'ସେହୁ କନକ ନଗର' ବବୁଧାଚଳେ ( ମେରୁରେ ) କି ସମୁଦ୍ର ସେ କୂଳେ ( ସମୁଦ୍ରର ସେ କୂଳରେ) 'ଅଛୁ' ତହିଁକି' ଯିବାକୁ ସଂଶୟ କରେ (ସନ୍ଦେହ ଅଛୁଅଛୁ) ।୬।

୭ମ ପଦ—ମୋ ରାମା 'ନାମ' ¹ବୈଦେହୀ, ସୀତା, ବଣିକବାମା (ବଣିକସ୍ତ୍ରୀର) 'ନାମ' ବୈଦେହୀ । ବଷ୍ଟୁପଦୀ ( ଶିଙ୍ଗର ) 'ନାମ' ² ସୀତା । ଗୁଡ଼କାର ଗୃହ ( ଗୁଡ଼ଆଘର ) 'ତହିଁରେ ଥିବା' ସୀତାରେ (ଶର୍କରାରେ) 'ସୀତା ଶବ୍ଦ ଅଛୁ' 'ଏମାନଙ୍କରେ' ବଭ୍ରମା ନୋହୁ (ଭ୍ରମନୋହୁବ) ।୭ ।

୮ମ ପଦ—ସେହୁ ( ମୋ ପ୍ରିୟା ) ଷଡ଼ନାମ ( ଛଅ ନାମ ) ବହେ । 'ଯଥା—ବୈଦେହୀ; ଜାନକୀ, ମୈଥିଳୀ, ପାର୍ଥିବୀ, ଯୋଜନଗନ୍ଧା, ସୀତା । 'ଏହା' ସହଜେ ବୁଝିବେ । ୮ ।

---

୧—ବୈଦେହୀ ପିପ୍ପଳୀ ସୀତା ବଣିକସ୍ତ୍ରୀରୋଚନାସୁ ଚ ଇତି ମେଦିନୀ ।
୨—ସୀତା ଲକ୍ଷ୍ମୀରୂପା ସୀତା ସୀତା ଶସ୍ୟାଧିଦେବତା ।
ସୀତା ଲାଙ୍ଗଲପଦ୍ଧ୍ୟାଂ ଚ ସୀତା ମନ୍ଦାକିନୀ ମତା । ଇତି ଧ୍ୱନିମଞ୍ଜରୀ ।

ବ୍ରହ୍ମାଣ୍ଡେ ନ ଥିଲ ସରି । ବିପାକକର୍ମୁଁ ମୋହରି ।
ବିନନ୍ଦ୍ୟାରେ ନନ୍ଦ୍ୟ ଉପମା ଦେବାକୁ ହୋଇଲ ସମାନ କରି ।୯।
ବିଧାତା ବିଧାନ ନୋହି । ବୁଧ କବି ଥିବେ କହି ।
ବହି ଈରଷା ତା ସର୍ଜନା ଉପମା ଦିଆଇ ବିଚ୍ଛେଦ ବହି । ୧୦।
ବଢ଼ିଣ ଚୂର୍ଣ୍ଣକୁନ୍ତଳ । ବଳିଥିବ ଅର୍ଦ୍ଧଶିଳ ।
ବକ୍ଷୋରୁହେ ମୁଖ ମେଲ କରିଥିବ ଏ, ଦୃଷ୍ଟି କୃତେ ସଫଳ ।୧୧।
ବିଶ୍ୱବିଶ୍ୱ ଅବଶେଷେ । ବିଧୁନ୍ତୁଦ ଅଳୁଗ୍ରାସେ ।
ବାରୁଣୀ ଅଚଳଚୂଳେ ପୂର୍ଣ୍ଣଶଶୀ ପ୍ରଭାହୀନ ଯଥା ଦିଶେ । ୧୨ ।

---

୯ମ ପଦ—'ମୋର ପ୍ରିୟାକୁ' ବ୍ରହ୍ମାଣ୍ଡରେ ସରି (ସମାନ) ନ ଥିଲା । ମୋହରି ବିପାକକର୍ମୁ (ମୋହର ବିପାକ କର୍ମରୁ) ବିନନ୍ଦ୍ୟାରେ (ଅନନ୍ଦ୍ୟା ସୀତାଠାରେ) ନନ୍ଦ୍ୟଉପମା (ନନ୍ଦନୀୟ ଉପମାମାନ) ସମାନ କରି ଦେବାକୁ ହୋଇଲ । ୯ ।

୧୦ମ ପଦ—'ମୋ ପ୍ରିୟା' ବିଧାତା ବିଧାନ (ବିଧିନିର୍ମିତା) ନୋହି (ନୋହେ) 'ଏହା ମୋତେ' ବୁଧ କବି (ପଣ୍ଡିତ କବିମାନେ) କହିଥିଲେ । 'ଏଣୁ ବିଧାତା' ୧ଈରଷା (ଅସୂୟା) ବହି ବିଚ୍ଛେଦ ବହି (କରାଇ) ତା ସର୍ଜନା (ତାହାର ସର୍ଜନାରୂପ) ଉପମା (ଉପମାମାନିଙ୍କୁ ଦିଆଇ) ଦିଆଇଲା ।୧୦।

୧୧ଶ ପଦ—୧ଚୂର୍ଣ୍ଣକୁନ୍ତଳ (ଅଳକା) ବଢ଼ିଣ (ବଢ଼ିକରି) ଅର୍ଦ୍ଧଶିଳ (ଶିଳାର୍ଦ୍ଧକୁ) ବଳିଥିବ । ବକ୍ଷୋରୁହେ (ଉରଜରେ) ମୁଖ ମେଲ କରିଥିବ (ରଖିଥିବ) । 'ଏହାଦ୍ୱାରା ଚନ୍ଦ୍ରା ବଶରୁ ମୁଖପୋଛ ବସିଥିବାର ସୂଚିତ ହେଲା' । ଏ ଦୃଷ୍ଟି କୃତେ (ଏହି ଦୃଷ୍ଟି କରିବାରେ) 'କାର୍ଯ୍ୟ' ସଫଳ 'ହେବ' । ୧୧ ।

୧୨ଶ ପଦ—'ସେ ଦୃଷ୍ଟି କପରି' ? ବିଶ୍ୱବିଶ୍ୱ ଅବଶେଷେ (ପ୍ରଭାତରେ) ବିଧୁନ୍ତୁଦ (ରାହୁ) ଅଳୁଗ୍ରାସେ (ଗ୍ରାସିଥିଲେ) ବାରୁଣୀ ଅଚଳଚୂଳେ

---

୧—ଅକ୍ଷାନ୍ତ୍ୟର୍ଷ୍ୟା ସୂୟା ତୁ ପରବୃଦ୍ଧ୍ୟଦ୍ୱେଷ ଦ୍ୱେଷକୃତ୍ ଇତ୍ୟମରଃ ।
୧—ଅଲକାଶ୍ଚୂର୍ଣ୍ଣକୁନ୍ତଳା ଇତ୍ୟମରଃ ।

ବଳକଶୋଭୀ ରୋମାବଳୀ । ବର୍ଣ୍ଣି କୁଚ ପାଣ୍ଡୁ ଝଳି ।
ବଲ୍ଲକୀ ଉପରେ ଆଉଜାଇ ଶାରଦା ଚନ୍ଦ୍ରା ରାଗ ଗୁଣ ଭଳି । ୧୩ ।
ବିମଳ ନୟନୁ ଜଳ । ବହୁ ପଡ଼ୁଥିବ ତଳ ।
ପ୍ରଜ୍ୱଳିତ ଶଙ୍ଖ ମାଳ ହିଙ୍ଗୁଳରେ ସାୟକୁଁ ଖସେ କି ଫଳ ।୧୪।
ବଙ୍କ ଗୃହାଣି ସନ୍ଧାନ । ବିଫଳୁଁ ନ ଥିବ ଯେନ ।
ବାଣାସନ ଭୀରୁ ଭ୍ରୂରୁର ଅଞ୍ଜନ ସିଞ୍ଜିନୀ ହେବାରୁ ଶୀର୍ଣ୍ଣ । ୧୫ ।

---

(ଅସ୍ତଗିରି ଶିଖରରେ) ପ୍ରତ୍ୟସ୍ତନ (ନଷ୍ଟ ଭ) ପୂର୍ଣ୍ଣଶଶୀ (ପୂର୍ଣ୍ଣଚନ୍ଦ୍ର) ଯଥା (ଯେମନ୍ତ) ଦିଶେ 'ସେହିପରି' । 'ଏହା ଦ୍ୱାରା ନମ୍ରମୁଖ ସୂଚିତ ହେଲା' । ୧୧ ।

୧୩ଶ ପଦ—ବଳଶୋଭୀ (ତ୍ରିବଳୀଶୋଭୀ ସୀତା) ରୋମାବଳୀ (ଲୋମଲତିକା) ବର୍ଣ୍ଣି (ସ୍ୱରୂପ) କୁଚ (ପୟୋଧର ଯୁଗ୍ମ) ପାଣ୍ଡୁ (ପାଣ୍ଡୁରବର୍ଣ୍ଣରେ) ଝଳି ହୋଇଥିବ । 'ଏଣୁ' ଶାରଦା (ସରସ୍ୱତୀ) ଉପରେ (ଗ୍ରନ୍ଥରେ) ବଲ୍ଲକୀ (ବୀଣା) ଆଉଜାଇ ଚନ୍ଦ୍ରାରାଗ ଗୁଣାବଳି (ଚନ୍ଦ୍ରା ରାଗକୁ ଗୁଣିଲଭଳି) ହୋଇଥିବ । 'ଏଠାରେ ତ୍ରିବଳୀ ବୀଣାକାର, ରୋମାବଳୀ ଦଣ୍ଡ, କୁଚ ତୁମ୍ବୀ, ବର୍ଣ୍ଣି ଶୁକ୍ଳ, ଏଣୁ ଶାରଦା ସଙ୍ଗେ ଉପମିତ ହେଲା, * । ୧୩ ।

୧୪ଶ ପଦ—ବିମଳ ନୟନୁଁ (ନିର୍ମଳ ଚକ୍ଷୁରୁ) ଜଳ (ଲୋତକ) ବହୁ ତଳ (ତଳରେ) ପଡ଼ୁଥିବ ୀ ସେ (ଜଳ) ଶଙ୍ଖ ମାଳ ହିଙ୍ଗୁଳ 'ଏ ତିନବର୍ଣ୍ଣରେ' ପ୍ରଜ୍ୱଳିତ (ପ୍ରଦୀପ୍ତ) ସାୟକୁ (ଶରରୁ) ଫଳ (ଫଳକ) ଖସେ କି (ଖସିଲାପରି ଦିଶୁଥିବ) । ୧୪ ।

୧୫ଶ ପଦ—ଭୀରୁ (ଭୟାଳୁ ମୋ ପ୍ରିୟାର) ବଙ୍କ ଗୃହାଣି 'ରୂପ-ଶର' ସନ୍ଧାନ ବିଫଳୁଁ (ବିଫଳ ହେବାରୁ) ପୁଣି ଭ୍ରୂରର (ଭ୍ରୂଲତାରୂପଧନୁରେ ଅଞ୍ଜନ (କଜ୍ଜଳ ରୂପ) ୧ ସିଞ୍ଜିନୀ (ଗୁଣ) ଶୀର୍ଣ୍ଣ ହେବାରୁ 'ତାହାର ଶର ସନ୍ଧାନ' ନ ଥିବ 'ଏମନ୍ତ' ଯେନ । ୧୫ ।

---

*—ଯା କୁନ୍ଦେନ୍ଦୁ ତୁଷାରହାରଧବଳା ଯା ଶ୍ୱେତପଦ୍ମାସନା । ଇତି ।
ଶ୍ୱେତା ବୀଣାଧରୀ ଶୁଭ୍ରା ଚନ୍ଦ୍ରଖଣ୍ଡାବତଂସିନୀ ଇତି ସରସ୍ୱତ୍ୟୋକ୍ତେ ॥
୧—ମୌର୍ବୀ ଜ୍ୟା ସିଞ୍ଜିନୀ ଗୁଣେ ଇତ୍ୟମରଃ ।

ବାଳ ଖରଶ୍ୱାସ ତାର । ବିରଙ୍ଗ ଭଜ ଅଧର ।
ବିମ୍ବଫଳପାଚ ଶୁଖିଗଲ ରୁଚ କରିଥିବ ଅଙ୍ଗୀକାର । ୧୬ ।
ବିଶୀର୍ଣ୍ଣରେ ସୁକୁମାରୀ । ବହୁଥିବ ମଧ୍ୟ-ସରି ।
ବିଗୁରୁଚ୍ଛ ଗୃରୁ ମଧ୍ୟ ଅନ୍ତ ସରୁ ହୋଇଥିବ କାହାପରି । ୧୭ ।
ବୋଲିବ ଯେତେ ଯୁବତ । ବିରହଣୀ ଏହିଗତ ।
ବିଗତ ଚନ୍ଦନେ ପଲ୍ଲବ ଶୟନେ ନ ଥିବ ଯେନ ଏମନ୍ତ । ୧୮ ।
ବାମଦେବବାମା କେତେ । ବିଭ୍ରାନ୍ତି ସମା ଜଗତେ ।
ବନ୍ଧୁ ସଙ୍ଗେତେ ମୋ ସେତ ଅର୍ଦ୍ଧଅଙ୍ଗୀ ବିରହୀ ହେବେ କେମନ୍ତେ ।

---

୧୬ଶ ପଦ--ତାର ( ମୋ ପ୍ରିୟାର ), ଖରଶ୍ୱାସ ( ଖର ନିଶ୍ୱାସ ) ବାଳ 'ନବ' ଅଧର ବିରଙ୍ଗ ଭଜ ବିମ୍ବଫଳ ପାଚ ଶୁଖିଗଲ ରୁଚ ( ଛବିକ ) ଅଙ୍ଗୀକାର କରିଥିବ । 'ବିରହ ତାପରେ ନିଶ୍ୱାସର ଉଷ୍ଣତା ଓ ପ୍ରଖରତା ହୁଏ' * । ୧୬ ।

୧୭ଶ ପଦ--ସୁକୁମାରୀ 'ପ୍ରିୟା', ବିଶୀର୍ଣ୍ଣରେ (ବିଶେଷଶୀର୍ଣ୍ଣ ହେବାରେ) ମଧ୍ୟ ସରି ଅର୍ଣ୍ଣିମାନଙ୍କୁ ) ବହୁଥିବ । ଏଣୁ ମୁଁ' ବିଗୁରୁଚ୍ଛ 'ତାହାର' ମଧ୍ୟ (ଅର୍ଣ୍ଣା) ଗୃରୁ (ମନୋହର) 'ଏବଂ' ଅତି ସରୁ କାହାପରି 'ଶୀର୍ଣ୍ଣ' ହୋଇଥିବ 'ଏହା ଗୋଚର ହେଉ ନାହିଁ' । ୧୭ ।

୧୮ଶ ପଦ—'ତୁମ୍ଭେ ବା' ବୋଲିବ, ବିରହଣୀ ଯେତେ ଯୁବତୀ 'ସେମାନଙ୍କର' ଏହି ଗତି ( ଏ ପ୍ରକାର ସମସ୍ତେ ) । 'ଆମ୍ଭେ କିପରି ଜାଣିବୁ ତୁମ୍ଭର ପ୍ରିୟା ଏ ବୋଲି' ? ନା, 'ତାଙ୍କର ମୋ ପ୍ରିୟାର ପ୍ରଭେଦ ଅଛି' । 'ତାଙ୍କର ଚନ୍ଦନାଦି ଶୀତଳୋପଚାର ଓ ପଲ୍ଲବ ଶୟନ ଏ ଥାଏ' । 'ମୋ ପ୍ରିୟାର' ଚନ୍ଦନେ (ଚନ୍ଦନାଦି ଲେପନ) ବିଗତ 'ହୋଇଥିବ' ( ନ ଥିବ ) । ପଲ୍ଲବ ଶୟନ (ପତ୍ରଶଯ୍ୟା) ନ ଥିବ ଏମନ୍ତି ( ଏ ରୂପେ) ଯେନ । ୧୮ ।

୧୯ଶ ପଦ—ମୋ ବନ୍ଧୁ ସଙ୍ଗତେ ବାମଦେବବାମା ( ପାର୍ବତୀ ) ଜଗତେ ( ଜଗତରେ ) କେତେ ( ଭିନ୍ନତ୍ୱ ଅସମାନ୍ତ୍ର ହୋଇ ) ବିଭ୍ରାନ୍ତି ସମା

---

*—ତଦୁକ୍ତଂ ଗୀତଗେ ବିନ୍ଦେ—
ଶ୍ୱସିତପବନମନୁ ପମପରିଣାହଂ । ମଦନଦହନମିବ ବହତି ସଦାହଂ ।

ବାକ୍ୟ ମନ୍ଦ ହୋଇଥିବ । ବରଷା ପିକ ସ୍ୱଭାବ ।
ବୃକ୍ଷ ହେବ ସେ ଯେ ମୋ କଥା ଶୁଣାଇ ଜମ୍ବୁପାନ କରାଇବ ।୨୦।
ବାରତା ଶୁଣିଲେ ମୋର । ବଦନେ ପ୍ରସନ୍ନ ତାର ।
ବହୁ ଆଣୁଁ ମନେ ଦୃଢ଼ କରି ଶିଳେ କରୁଡ଼ ଦେବ ମୁକୁର ।୨୧।
ବର୍ଦ୍ଧିବାକୁ ଶାତ ରଙ୍ଗେ । ଧୀର ସାତ ସାତ ସଙ୍ଗେ ।
ବସନ୍ତ ପୂର୍ବରେ ପଦ୍ମିନୀଷୀଣକୁ ନାଶ ଅର୍ଥେ ପେଷି ବେଗେ ।୨୨।

---

( ଶୋଭାରେ ସମାନ ) ସେ ( ପାର୍ବତୀ ) ତ ଅର୍ଦ୍ଧଅଙ୍ଗୀ ( ଶିବଙ୍କ ଅର୍ଦ୍ଧାଙ୍ଗୀ ) କେମନ୍ତେ ସାନ୍ଧ୍ୱୀ ହେବେ । 'ଏଣୁ ପାର୍ବତୀଙ୍କି ସୀତା ଜ୍ଞାନ କରିବ ନାହିଁ ଏହୁ ଭାବ' । ୧୯ ।

୨୦ଶ ପଦ—ବରଷା ପିକ ( ବର୍ଷାକାଳ କୋକିଳ ) 'ପ୍ରାପ୍ତ' ସ୍ୱଭାବ ( ସ୍ୱଭାବରେ ) 'ମୋ ପ୍ରିୟାର' ବାକ୍ୟ ( ସ୍ୱର ) ମନ୍ଦ ହୋଇଥିବ । ଯେ ମୋ କଥା ଶୁଣାଇ ( ଶୁଣାଇବ ) ସେ ୧ଜମ୍ବୁ ବୃକ୍ଷ ହେବ । 'ମୋ ବାର୍ତ୍ତା ଶ୍ରବଣରୂପ' ଜମ୍ବୁ 'ଫଳ' ପାନ କରାଇବ ( ଖୁଆଇବ ) 'ବର୍ଷାକାଳରେ ଜାମ୍ବୁକୋଳି ଖାଇ କୋକିଳ ସ୍ୱର ରମଣୀୟ ହୁଏ' ✻ । ୨୦ ।

୨୧ଶ ପଦ—ମୋର ବାରତା ( ବାର୍ତ୍ତା ) ଶୁଣିଲେ ତାର ବଦନେ ( ମୁଖରେ ) ପ୍ରସନ୍ନ ( ପ୍ରଫୁଲ୍ଲତା ) ବହୁ ଅଶ୍ରୁ ( ଆଣନ୍ତେ ) 'ତାହା ଦେଖି' ୧ମୁକୁର ( ଦର୍ପଣକୁ ) ଦୃଢ଼କରି ( ଗାଢ଼େ ) ଶିଳେ ( ପାଷାଣରେ ) କରୁଡ଼ ଦେବ । 'ଦର୍ପଣ କି ସ୍ୱଚ୍ଛ ଏମନ୍ତ ମନେ କରିବ' । ୨୧ ।

୨୨ଶ ପଦ—୧ରଙ୍ଗେ ( ହର୍ଷରେ ) ୨ଶାତ ( ସୁଖ ) ବର୍ଦ୍ଧିବାକୁ 'ଯୂଥପତିଙ୍କ' ସଙ୍ଗେ ସାତ ସାତ 'ଜଣ' ଧୀର ବେଗେ ପେଷି 'ଦେଲେ' ବସନ୍ତ 'ସେନାପତିଙ୍କ' ପୂର୍ବରେ ( ପୂର୍ବଦାରକୁ ) 'ପେଷିଲେ'

---

୧—ଜମ୍ବୂଃ ସ୍ତ୍ରୀ ଜମ୍ବୁ ଜାମ୍ବବମିତ୍ୟମରଃ ।
✻—ତଦୁକ୍ତଂ କ ରାଘବପାଣ୍ଡବୀୟେ—
ବ୍ୟଥିତମପି ଭୃଶଂ ମନୋ ହରନ୍ତ୍ୟ ପରଣତଜମ୍ବୂଫଳୋପଭୋଗମତ୍ତା ।
ପରଭୃତଯୁବତୀସ୍ୱନଂ ବିତେନେ ନବନବଯୋଜିତକଣ୍ଠରାଗରମ୍ୟମିତି ।
୧—ଦର୍ପଣେ ମୁକୁରାଦର୍ଶାବିତ୍ୟମରଃ
୧—ରଙ୍ଗେ ରଙ୍ଗୋ ବଣେ ହର୍ଷେ ଶୃଙ୍ଗାରେ ସୁନ୍ଦରେ ଚ ଧୁଧି ।
୨—ଶର୍ମ ଶାତ ସୁଖାନି ଚ ଇତ୍ୟମରଃ ।

ବିଚ୍ଛେଦନେ ଦୁଃଖରାଶି । ବାରୁଣୀକି ଶୌରି ପେଷି ।
ବର୍ଗେ ଉତ୍ତରେ ଶତବଳୀ ଅବଳା-ବଳଦ ହେବା ମନାସି । ୨୩ ।
ବାଳୀ ଆନନ୍ଦକରଣେ । ବାଳିନନ୍ଦନ ଦକ୍ଷିଣେ ।
ବିଘ୍ନନାହିଁ ଅନୂମାନ ଅନୁମାନ ମାନଘ୍ନ ହେବ ବୀକ୍ଷଣେ । ୨୪ ।
ବାଗ୍ମି କହେ ରାମ ନେଇ । ବନ୍ଧୁ ଦେଖ ସିନ୍ଧୁ ଡେଇଁ ।
ବିଶ୍ୱାସ ନ କଲେ ଆଶ୍ୱାସ କର ତୁ ଏହି ମୁଦ୍ରିକାକୁ ଦେଇ ।୨୫।

---

କାହିଁକି, 'ପୂର୍ବଦିକ୍‌ପତି ବସନ୍ତ ଋତୁ' ପଦ୍ମିନୀ କ୍ଷୀଣକୁ 'ନାଶକରେ' ଅର୍ଥେ (ଏଣୁ) 'ବସନ୍ତ କପି ପଦ୍ମିନୀ ଜାତୀୟା ସୀତାର କ୍ଷୀଣତାକୁ' ନାଶ କରିବ ।୨୨।

୨୩ଶ ପଦ—ଶୌରି 'ସେନାପତି'ଙ୍କୁ ବାରୁଣୀକି ( ପଶ୍ଚିମକୁ ) ପେଷି ( ପେଷିଲେ ) କାହିଁକି ? 'ମୋ ପ୍ରିୟାର' ଦୁଃଖରାଶି ବିଚ୍ଛେଦନେ ( ବିନାଶ କରିବ ଏଥି ନିମନ୍ତେ ) ପଶ୍ଚିମ ଦିକ୍‌ପତି ଶୌରି ( ଶନି ) ଦୁଃଖରାଶି ବିନାଶକାରୀ । ଅଥବା ୧ଶୌରି (ବିଷ୍ଣୁ) 'ଦୁଃଖରାଶି ବିନାଶ କରନ୍ତୁ ଏଥି ପାଇଁ ପେଷିଲେ' । ଶତବଳୀ 'ଯୂଥପତିଙ୍କୁ' ଉତ୍ତରେ ( ଉତ୍ତର ଦିଗକୁ ) ବର୍ଗେ ( ବରଗିଲେ ପଠାଇଲେ ) କାହିଁକି ? 'ମୋ ପ୍ରିୟାର' ଅବଳା ( ବଳହୀନା ) 'ଏ ଶତବଳୀ' 'ତାହାର'୮ ବଳଦ ( ବଳଦାତା ) ହେବା ମନାସି ( ବିଚାରି ) 'ପଠାଇଲେ' । ୨୩ ।

୨୪ଶ ପଦ—ବାଳିନନ୍ଦନ ( ଅଙ୍ଗଦ ) ଦକ୍ଷିଣେ ( ଦକ୍ଷିଣ ଦିଗକୁ ) ବାଳୀ ( ସୀତାର ଆନନ୍ଦ ) କରଣେ ( କରିବାପାଇଁ ) 'ପଠାଇଲେ' ତା ସଙ୍ଗରେ' ହନୂମାନ ( କପି ) ମାନଘ୍ନ ( ଅଭିମାନ ନାଶକ ) ହେବ ଓ ବିଘ୍ନ 'ହେବ' ନାହିଁ 'ଏମନ୍ତ' ଅନୁମାନ 'କରି' ବୀକ୍ଷଣେ 'ତାକୁ ପଠାଇଲେ' ।୨୪।

୨୫ଶ ପଦ—'ବିଶ୍ୱାସ ଯୋଗ୍ୟ ହେବାରୁ ହନୂମାନକୁ ପାଖକୁ ଡାକି' ନେଇ ରାମ ( ରାମଚନ୍ଦ୍ର ) ବାଗ୍ମି କହେ ( କହୁ ଅଛନ୍ତି ) । ସିନ୍ଧୁ ( ସମୁଦ୍ର ) ଡେଇଁ ବନ୍ଧୁ ( ମୋ ପ୍ରିୟାକୁ ) ଦେଖ । 'ସେ ତୋ ପ୍ରତି' ବିଶ୍ୱାସ ନ କଲେ ଏହି ମୁଦ୍ରିକାକୁ ଦେଇ ତୁ ଆଶ୍ୱାସ ( ଆଶ୍ୱାସନା ) କର । ୨୫ ।

ବିଶ୍ୱାସ ଏଣେ ନକଲେ । ବୋଲି ଚନ୍ଦ୍ରକାନ୍ତ ଶୈଳେ ।
ବିଚିତ୍ର ଚିତ୍ରକ ଗଇରିକେ ପତ୍ର ଲେଖିଥିଲେ ତବ ଭାଲେ । ୨୬ ।
ବାଳସୂ ଯେ କାଶଶିଶୁ । ବଡ଼ ଭୟେ କୋଳେ ପଶୁ ।
ବିରାଜ ତୋ ଶତ କାନ୍ତହୃଦେ କାନ୍ତ ତୋ ଭାଲେ ସେ ହୃଦପାଂଶୁ ॥
ବାରୁଣୀ ପ୍ରାଚୀ ମାଧୁରୀ । ବେନି ସ୍ଥାନ ସନ୍ଧ୍ୟାପରି ।
ବିମ୍ବ ସବିତାର ଚନ୍ଦ୍ରକରଣ ତାର କଥା ହେଲେ ସ୍ନେହ ଭରି ।୨୮।
ବଢାଇ ଦେବ ପାବନି । ବଧୂ ମଧୁଶଯ୍ୟା ବେନି ।
ବହ୍ନି ସାକ୍ଷୀ କରି କଲ ନାୟକକୁ ଚତ୍ତେ ଥିବ ଏକା ଘେନି ।୨୯।

୨୬ଶ ପଦ—ଏଣେ ( ଏ ମୂଢରେ ) ବିଶ୍ୱାସ ନ କଲେ ବୋଲି ( କହିବ ) ଚନ୍ଦ୍ରକାନ୍ତ ଶୈଳେ ( ଚନ୍ଦ୍ରକାନ୍ତ ପର୍ବତରେ ) ତବଭାଲେ (ତୁମ ଲଲାଟରେ) ବିଚିତ୍ର (ଆଶ୍ଚର୍ଯ୍ୟ) ଚିତ୍ରକ (ତିଳକ) ଗଇରିକେ ( ଗେରୁରେ) ଲେଖିଥିଲେ ପତ୍ର । ୨୬ ।

୨୭ଶ ପଦ—କାଶଶିଶୁ ( ମାଙ୍କଡ଼ଛୁଆ ) ବାଳସୂ ( ଖେଳୁ ) 'ତୁମ୍ଭେ' ବଡ଼ଭୟେ ( ଭୟପାଇ ) ରାମଙ୍କ କୋଳେ ପଶୁଁ ( ପଶନ୍ତେ ) ତୋ ଶତ ( ତୁମ୍ଭ ଗାଲ ତିଳକ ) କାନ୍ତ ହୃଦେ ବିରାଜ ( ବିରାଜିଲା ) ସେ ହୃଦପାଂଶୁ ( କାନ୍ତହୃଦସ୍ଥ ବିଭୂତି ) ତୋ ଭାଲେ ( ତୁମ୍ଭ ଲଲାଟରେ ) କାନ୍ତ (କମନୀୟ) 'ଦିଶିଲା' । ୨୭ ।

୨୮ଶ ପଦ—ବେନି ସ୍ଥାନ ( କାନ୍ତ ହୃଦସ୍ଥ ଓ ତୁମ୍ଭ ଗାଲ ଓ ଦୁହେଁ ) ସନ୍ଧ୍ୟା ( ସନ୍ଧ୍ୟାକାଳ ) ବାରୁଣୀ ( ପଶ୍ଚିମଦିଗ ), ପ୍ରାଚୀ ( ପୂର୍ବଦିଗ ) 'ଏ ଦୁହିଙ୍କ' ପରି ମାଧୁରୀ ( ମନୋହର ) ହେଲା । ସବିତାର ( ସୂର୍ଯ୍ୟ ) ବିମ୍ବ ( ମଣ୍ଡଳ ) 'ପଶ୍ଚିମରେ', ଚନ୍ଦ୍ର କର ( ଚନ୍ଦ୍ର କିରଣ ) 'ପୂର୍ବରେ' ତାର (ଦୀପ୍ତି ) 'ଯେମନ୍ତ ଦିଶେ ତେମନ୍ତ ଦିଶିଲା' । ସ୍ନେହ ଭରି ( ପୂର୍ଣ୍ଣରେ ) 'ଦୁହେଁ' କଥା ହେଲେ । ଏହା କହିବ । ୨୮ ।

୨୯ଶ ପଦ—ହେ ପାବନି ( ପବନ ନନ୍ଦନ ) ୧ ମଧୁଶଯ୍ୟା ବେନି ( ଦୁହେଁ ) ବଧୂ ( ବର୍ଦ୍ଧନ୍ତେ ) ବହ୍ନି ( ଅଗ୍ନି ) ସାକ୍ଷୀ କରି ନାୟକଙ୍କ

୧—ମଧୁ ରତିମହୋତ୍ସବ ଇତି କୋଷାନ୍ତର ।

ବନ୍ତ ଚତୁର୍ଥୀ ସେ ସତ । ବୋଲନ୍ତେ କିସ କହତ ।
ବୋଲିବ ବୋଲିଛ ଆନ-ଆନନକୁ ନ ଗୃହ୍ଣିବ ଶ୍ରଦ୍ଧାଯୁକ୍ତ । ୩୦ ।

ବହ୍ନି ସ୍ୱରୂପ କନ୍ଦର୍ପ । ବଶୀ କରଣକୁ ଆପ ।
ବସାଇ ଗୃପରେ ଉନ୍ମାଦ ମୋହନ ବେପି ମିଳିଲେ ସମୀପ । ୩୧ ।

ବୋଲିବ ଏଥିକୁ ଯାହା । ବାନ୍ଧ ଗଣ୍ଠି କରି ତାହା ।
ବାଣିଜ୍ୟ କରିବା ସେହି ସୁବର୍ଣ୍ଣରେ ନାଶ ହୋଇବ ଉତ୍ସାହ । ୩୨ ।

ବରଷାଯାଏ ନୋହିବ । ବିଯୋଗ ଭରସା ଦେବ ।
ବଲ୍ଲଭଜାନୁସିଂହାସନାଭିଷେକୀ ଏଥି ଭିତରେ ହୋଇବ । ୩୩ ।

---

'କଣ୍ଠ' 'କଥା' ଏକା ( କେବଳ ) ଛଦ୍ରେ ( ମନରେ ) ଘେନ ( ରଖି ) ଥିବ 'ଏହା' ବଢାଇ ( ଲୁହାଇ ) ଦେବୁ । ୨୯ ।

୩୦ଶ ପଦ—ସେ ( ପ୍ରିୟା ) ବଡ଼ ଚତୁର୍ଥ 'ତୁ ଏହା' ବୋଲନ୍ତେ ସତ 'ବୋଲିବ' ସେ କିସ ( କି କଥା ) କହୁ ଛ, 'ଏମନ୍ତ' ବୋଲନ୍ତେ 'ତୁମ୍ଭେ' ବୋଲିବ 'ତୁମ୍ଭେ' ବୋଲିଛ ଶ୍ରଦ୍ଧାଯୁକ୍ତ 'ହୋଇ' ଆନ ଆନନକୁ ( ଅନ୍ୟ ପୁରୁଷ ମୁଖକୁ ) ନ ଗୃହ୍ଣିବୁ । ୩୦ ।

୩୧ଶ ପଦ—ବଶୀକରଣକୁ (ବଶ କରିବା ) କନ୍ଦର୍ପ ସ୍ୱରୂପ (ନିଜରୂପ) ବହ୍ନି ଆପ ( ଅପେ ) ୧ ଉନ୍ମାଦ ଓ ମୋହନ ୨ ବେପ ( ଶର ) ଗୃପରେ ( ଧନୁରେ ) ବସାଇ ସମୀପ ( ମୋ ସମୀପରେ ) ମିଳିଲେ "ତାକୁ ଗୃହ୍ଣିବ ନାହିଁ ଏମନ୍ତ ନିୟମ କରିଅଛ" । ଅଥବା ବଶୀକରଣକୁ ଆପ (ବଶୀକରଣରେ ଆଚ୍ଛାଦିତ ହୋଇ ଆପେ ) । ୩୧ ।

୩୨ଶ ପଦ—ଏଥିକୁ ( ଏ କଥାକୁ ) 'ସେ' ଯାହା ବୋଲିବ ତାହା ( ସେହି କଥାକୁ ) ଗଣ୍ଠି କରି ବାନ୍ଧ । ସେହି ସୁବର୍ଣ୍ଣ ( ଉତ୍ତମ ଅକ୍ଷରମାନ ) ସୁବର୍ଣ୍ଣ ( ସୁନା ) 'ହେଲା ଚହିଁରେ' ବାଣିଜ୍ୟ କରିବା ଉତ୍ସାହ (ଉଦ୍‌ବେଗ) ନାଶ ହୋଇବ । ୩୨ ।

୩୩ଶ ପଦ – ବରଷାଯାଏ ( ବର୍ଷାକାଳ ପର୍ଯ୍ୟନ୍ତ ) ବିଯୋଗ ବିଚ୍ଛେଦ ନୋହିବ "ଏମନ୍ତ" ଭରସା ଦେବ । ବଲ୍ଲଭ ଜାନୁ ସିଂହାସନାଭିଷେକୀ

---

୧—ଉନ୍ମାଦନଃ ସ୍ତାପନଶ୍ଚ ଶୋଷଣୋ ଦର୍ପଣସ୍ତଥା ।
ସମ୍ମୋହନଶ୍ଚ କାମସ୍ୟ ବାଣାଃ ପଞ୍ଚ ପ୍ରକୀର୍ତ୍ତିତାଃ । ଇତି ।
୨—ପତୀ ବେପ ଇଷୁ ର୍ଦ୍ୱ୍ୟୋଃଶତ୍ୟମରଃ ।

ବୋଲିବ ନ କର ଚନ୍ତା ! ବଧେ ରାବଣର ସୀତା ।
ବିରାଧ-ବଧ ପରଶୁରାମ ଗର୍ବ ଖର୍ବ ତବ ବିଲୋକିତା । ୩୪ ।
ବେଳ ହେଉ ଶୁଭ ସର୍ବ । ବରଦ ଦୁର୍ଗା ମାଧବ ।
ବାରିଧିସୁତା ନରସିଂହ ହୁଅନ୍ତୁ ଠାବକର ବାହୁଡ଼ିବ । ୩୫ ।
ବାହାର ତାରାନନ୍ଦନ । ବାତଜ ଗନ୍ଧମାଦନ ।
ବୈଦ୍ୟ କପିଙ୍କ ତାରାକ୍ଷ୍ୟ ଜାମ୍ବୁବାନ ନଳ ନୀଳ ବିଦ୍ୟମାନ ।୩୬।
ବିହରିଲେ ଦଶେ ଦିଶେ । ବାନରଦୂତେ ରଭସେ ।
ବିଶେଷ କଟକ ଗ୍ରାମ ଘୋଷ ପକ୍କଣାଦି ତହିଁ ବାସେ ବାସେ ।୩୭।

---

(ପଢଙ୍କ କାନୁରୂପ ସିଂହାସନରେ ବସି ଅଭିଚେଙ୍କ) ଏଥି ଭିତରେ (ଶିଖିର-ଠାରୁ ଶୀଷ୍ଣୁ ପର୍ଯ୍ୟନ୍ତ) ହେବ । ୩୩ ।

୩୪ଶ ପଦ—'ପୁଣି' ବୋଲିବ ହେ ସୀତା ! ରାବଣର ବଧେ ଚିନ୍ତା ନ କର, ବିରାଧବଧ ଓ ପରଶୁରାମ ଗର୍ବ ଖର୍ବ ଏହା ତବ (ତୁମ୍ଭର) ବିଲୋକିତା (ତୁମ୍ଭେ ଦେଖିଛ) ରାବଣ ବା କେତେ ମାତ୍ର ।୩୪ ।

୩୫ଶ ପଦ—ବେଳ ସର୍ବ ଶୁଭ ହେଉ, ଦୁର୍ଗା [1]ମାଧବ ବାରିଧିସୁତା (ଲକ୍ଷ୍ମୀ) ନରସିଂହ ଏମାନେ ବରଦ ହୁଅନ୍ତୁ । 'ସୀତା' ଠାବକର ବାହୁଡ଼ନ୍ତୁ । ୩୫ ।

୩୬ଶ ପଦ—ତାରା ନନ୍ଦନ ( ଅଙ୍ଗଦ ) ବାତଜ (ହନୁମାନ) ଗନ୍ଧମାଦନ କପିଙ୍କ ବୈଦ୍ୟ (ସୁଷେଣ) ତାରାକ୍ଷ ଜାମ୍ବୁବାନ୍ ନଳ ନୀଳ ବିଦ୍ୟମାନ (ପ୍ରଧାନ) ଥ.ଠକଣ ବାହାର ହେଲେ ।୩୬।

୩୭ଶ ପଦ—ଦଶେ ଦଶେ ( ପ୍ରତିଦିଗରେ ) ବାନରଦୂତେ ରଭସେ (ବେଗରେ) ବିହରିଲେ । ବିଶେଷ ( ବିଶେଷରେ ) କଟକ ( ରାଜଧାନୀ ) ଗ୍ରାମ [2]ଘୋଷ ( ଆଭୀରପଲ୍ଲୀ ) [3] ପକ୍କଣାଦି ( ଶବରାଳୟ ପ୍ରଭୃତି ) 'ସ୍ଥାନମାନଙ୍କରେ' ବାସେ ବାସେ (ପ୍ରତି ଗୃହରେ) 'ଲୋଡ଼ିଲେ' ।୩୭।

---

[1]—ସ୍ମରନ୍ତୁ ସାଧବେ । ଜତ୍ୟଂ ସର୍ବକାର୍ଯ୍ୟେଷୁ ମାଧବଂ ।

[2]—ଘୋଷ ଆଭୀରପଲ୍ଲୀ ସ୍ୟାତ୍ ।

[3]—ପକ୍କଣଃ ଶବରାଳୟ ଇତ୍ୟମରଃ ।

ବସୁଧାଭୃତେ ନ ଗୁଡ଼ । ବଡ଼ ସାନ ଆଦ ଲୋଡ଼ି ।
ବିବରେ ବିବରେ ଶୃଙ୍ଗେ ଶୃଙ୍ଗେ ରସେ ଖୋଜଗଲେ ଦୁଃଖ ପଡ଼ି ।୩୮।

ବନେ ବନେ ପୁଣି ଲୋଡ଼େ । ବୃକ୍ଷେ ବୃକ୍ଷେ କୋଡ଼େକୋଡ଼େ
ବିଭାକର ଉଦେ ହୋଇବା ସ୍ଥାନରୁ ଯେଉଁ ସ୍ଥାନେ ଯାଇଁ ବୁଡ଼େ ।୩୯।

ବାରିଦ ଶୀତ ବସନ୍ତ । ବିରଚିବା ପ୍ରାଏ ଗନ୍ତ ।
ହାହୁଡ଼େ ବିହିଗ ଦୂତ ମାସପୂର୍ତ୍ତି କାହିଁ ନ ଦେଖିଣ ସତ୍ତା ।୪୦।

ବିଧିପୂର୍ବ କରି ପୂର୍ବ । ବାରତା କଥିତ ସର୍ବ ।
ବହିଲେ ଉତ୍ତର ଉତ୍ତର, କହିଲେ ପ୍ରଶ୍ନଚର ପ୍ରତିଠାବ ।୪୧

---

୩୮ଶ ପଦ – ବସୁଧାଭୃତେ ( ଗୋଟିଏ ପର୍ବତ ) ନ ଗୁଡ଼ ବଡ଼ ସାନ ଆଦ (ପର୍ବତ) ଲୋଡ଼ି ( ଖୋଜି ) ବିବରେ ବିବରେ ( ପ୍ରତିବିବରରେ ) ଶୃଙ୍ଗେ ଶୃଙ୍ଗେ ( ପ୍ରତିଶୃଙ୍ଗରେ ) ରଙ୍ଗେ (ହର୍ଷରେ) ଦୁଃଖ ପଡ଼ି (ସହି) ଖୋଜିଗଲେ । ୩୮ ।

୩୯ଶ ପଦ—"ପୁଣି" ବନେ ବନେ ( ପ୍ରତିବନରେ ) ଲୋଡ଼େ (ଲୋଡ଼ିଲେ) ବୃକ୍ଷେ ବୃକ୍ଷେ (ପ୍ରତିବୃକ୍ଷରେ) କୋଡ଼େ କୋଡ଼େ (ପ୍ରତିକୋଡ଼ରେ) ବିଭାକର ( ସୂର୍ଯ୍ୟ ) ଉଦେ ହୋଇବା ସ୍ଥାନରୁ ଯେଉଁସ୍ଥାନେ ଯାଇଁ 'ସୂର୍ଯ୍ୟ' ବୁଡ଼େ "ସେ ପର୍ଯ୍ୟନ୍ତ ଖୋଜିଗଲେ" 'ଉଦୟାଚଳଠାରୁ ଅସ୍ତାଚଳପର୍ଯ୍ୟନ୍ତ ଏହିଭାବ' । ୩୯ ।

୪୦ଶ ପଦ—ବାରିଦ ମେଘ (ମେଘ) ଶୀତ ୧ବସନ୍ତି ( ହିମାଳୟ ) 'ଉତ୍ତର' ଗତି ବିରଚିବା ଯାଏ "ଗଲେ" । ସତ୍ତା (ସୀତାଙ୍କୁ) କାହିଁ ନ ଦେଖି ମାସପୂର୍ତ୍ତିରେ ( ମାସକ ସମ୍ପୂର୍ଣ୍ଣ ହୁଅନ୍ତେ ) ବିହଗ ( ଭିନ୍ନଦିଗର ) ଦୂତ ହାହୁଡ଼େ (ହାହୁଡ଼ିଲେ) ।୪୦।

୪୧ଶ ପଦ—ପୂର୍ବ (ପୂର୍ବଦିଗର ଦୂତେ) ବିଧିପୂର୍ବ କରି ସର୍ବବାରତା କଥିତ (କହିଲେ) । ଉତ୍ତର ( ଉତ୍ତରଦିଗର ଦୂତେ ) ଉତ୍ତର ବହିଲେ ।

---

୧—ବସନ୍ତି ଃ ସ୍ୟାଦବସ୍ଥାନେ ଯାମିନ୍ୟାଂ ଚ ନିକେତନେ ଇତି ମେଦିନୀ ।

ବୃଷଭ ନାମରେ ରମ୍ୟା । ବେନି ଫୁଲ ଜଳଧାମା ।
ବାଲା-ନେବସ୍ଥିତ ଲତା-ମୁଖ-ଜାତ ଠିକ ମହୀପତି ନାମା । ୪୨ ।
ବପୁ ସାର ଆଦ୍ୟ କରି । ବଲୋକ ବାଣ୍ଟା ପସୃରି ।
ବଳଦାନଘେନା ଏକା ଦେଖି ନାହୁଁ କାହିଁ ନାହିଁ ସୁକୁମାରୀ ।୪୩।

---

(ଲେଉଡ଼ବା ଙ୍କଥା କହିଲେ) । ¹ପ୍ରତୀଚର (ପ୍ରତୀଚଦିଗର ଦୂତେ) ପ୍ରତି ଠାବ 'ଲେଉଡ଼ବା କଥା' କହିଲେ। ୪୧ ।

୪୨।୪୩ଶ ପଦ—¹ବୃଷଭନାମ (ନାଗରଙ୍ଗ—ଐରାବତ) (ଐରାବତ ହସ୍ତୀ) 'ହେଲ' । ତହିଁରେ ରମ୍ୟା ( ରମଣୀଯ଼ା ) ( ପୂର୍ବଦିଗକୁ ) ଜଳଧାମା (ପୁଣ୍ଡରୀକ 'ପଦ୍ମ' କୁମୁଦ) ପୁଣ୍ଡରୀକ ଓ କୁମୁଦ ନାମକ ଗଜଦ୍ୱୟହେଲେ 'ସେ ଦୁଇରେ, ରମ୍ୟା ( ଅଗ୍ନି କୋଣେ ଓ ନୈର୍ଋତ କୋଣକୁ ) ବାଲା ନେବସ୍ଥିତ ( ଅଞ୍ଜନ ) ଅଞ୍ଜନନାମାଗଜ ହେଲ ତହିଁରେ ରମ୍ୟା ( ପଶ୍ଚିମଦିଗକୁ ) ଲତା ମୁଖ (' ଦୁଇରୁ) ଜାତ (ପୁଷ୍ପଦନ୍ତ) ପୁଷ୍ପଦନ୍ତନାମା ( ସାର୍ବଭୌମ ) ସାର୍ବଭୌମନାମା ଗଜ ହେଲ ତହିଁରେ ରମ୍ୟା ଗଜ ହେଲ; ତହିଁରେ ରମ୍ୟା ( ବାଯ଼ବ୍ୟ କୋଣକୁ ) ଠିକ୍ ² ମହୀପତିନାମା ଉତ୍ତରଦିଗକୁ ) ³ ବପୁ ( ପ୍ରତୀକ ଶରୀର ) ସାର ( ସୁଶର୍ଦ୍ଧକୁ ) ଆଦିକରି (ଆଦ୍ୟାରେ ଥିଅନ୍ତେ 'ସୁପ୍ରତୀକ') ସୁପ୍ରତୀକନାମା ଗଜ ହେଲ ତହିଁରେ ରମ୍ୟା । ( ଐଶାନ୍ୟ କୋଣକୁ ) ବିଲୋକ ( ଦେଖି ) ବାଣ୍ଟା ପସୃରି (ପସୃରିଲୁଁ) ସୁକୁମାରୀ ( ସୀତା ) କାହିଁ ନାହିଁ (କେଉଁଠାରେ ନାହିଁ) ଏକା ( କେବଳ ) ବଳଦାନଘେନା ( ବାମନ ) ବାମନନାମା ଗଜ ହେଲ ତହିଁରେ ରମ୍ୟା ( ଦକ୍ଷିଣ ଦିଗକୁ ) ଦେଖି ନାହୁଁ । 'ଆହ୍ଵ ସବୁଦିଗ ଦେଖିଲୁଁ ଏହିସବୁ' । ୪୨।୪୩ ।

---

¹—ପ୍ରାଚ୍ୟବାଚୀ ପ୍ରତୀଚ୍ୟସ୍ତାଃ ପୂର୍ବଦକ୍ଷିଣପଶ୍ଚିମାଃ ।
ଉତ୍ତରଦିଗୁଦୀଚୀ ସ୍ୟାଦିତ୍ୟମରଃ

¹—ଐରାବତେ ନାଗରଙ୍ଗେ ଇତ୍ୟମରଃ ।
ଐରାବତେ ପୁଣ୍ଡରୀକୋ ବାମନଃ କୁମୁଦୋଽଞ୍ଜନଃ ।
ପୁଷ୍ପଦନ୍ତଃ ସାର୍ବଭୌମଃ ସୁପ୍ରତୀକଶ୍ଚ ଦିଗ୍‌ଗଜାଃ । ଇତି ।

²—ଚକ୍ରବର୍ତ୍ତୀ ସାର୍ବଭୌମଃ ।

³—ଅଙ୍ଗ ପ୍ରତୀକୋଽବଯ଼ବ ଇତି ଅମରଃ

ବସୁ ସ୍ନେ ରାମ ନିବାବ । ବୋଲେ ପ୍ଲବଗନାୟକ ।
ବଳାହକ ହୋଇ ଦକ୍ଷିଣ ଦୂତେ ସେ ତୋଷିବେ ଚତ୍ରଗୃହକ ।୪୪।
ବଜ୍ର ଅଙ୍ଗଦ ସମ୍ଭବ । ବଦ୍ୟୁତ୍କରତ ଜାମ୍ବବ ।
ବର୍ଣ୍ଣ ନୀଳ ପବମାନଜାତ ମେଳ ଘନରସ ଉପୁଜିବ ।୪୫ ।
ବୋଧନ୍ତେ ଶ୍ରୀରାମ ହସି । ବିକାଶେ ଶିଶିର ଆସି ।
ବ୍ୟାଘ୍ର ପ୍ରାୟ ଜାଡ଼ ମାଡ଼ନ୍ତସୁଁ ଲୋକେ ମୋଡ଼ି ହୋଇ ଇଷି ଭାଷି ॥

---

୪୪ଶ ପଦ—'ଦୂତଙ୍କ ଏମନ୍ତ ଶୁଣି' ରାମ ବସୁସ୍ନେ (ଧନ) ଉଦ୍ଧୋଇ ନିବାକ ( କୃମା ) ହେଲେ । 'ତାଙ୍କୁ ଦେଖି' ୧ ପ୍ଲବଗନାୟକ (ସୁଗ୍ରୀବ) ସେ ବୋଲେ (ବୋଇଲେ) ଦକ୍ଷିଣଦୂତେ (ଦକ୍ଷିଣଦିଗର ଦୂତମାନେ) ବଳାହକ ( ମେଘପରି ହୋଇ ) ଚତ୍ର 'ରୂପ' ଗୃତକଙ୍କୁ ତୋଷିବେ । 'ତୁମ୍ଭମାନଙ୍କର ଆଶଙ୍କା ନିବାରିବେ ଏହିଭାବ' ।୪୪।

୪୫ଶ ପଦ—୧ବଜ୍ର ( ହୀରକ ) ଅଙ୍ଗଦ ( ଅଙ୍ଗଦନାମକ ) ସମ୍ଭବ ( ବଜ୍ରରୂପେ ସମ୍ଭବ ହୁଏ ) ଜରତ ( ବୃଦ୍ଧ ) ଜାମ୍ବବ ୨ବଦ୍ୟୁତ୍ ( ନଷ୍ଟଭ ) 'ସେ' ବଦ୍ୟୁତ୍ ( ବିଜୁଳି ରୂପରେ ସମ୍ଭବିବ ) । ବର୍ଣ୍ଣ (ବର୍ଣ୍ଣରେ) ନୀଳ (ନୀଳ ସେନାପତି) 'ନୀଳବର୍ଣ୍ଣ ମେଘରୂପରେ ସମ୍ଭବିବ' ପବମାନଜାତ ( ହନୁମାନ ) ୩ପବମାନ ( ପବନରୂପରେ ) ଜାତହେଲେ 'ଏମାନେ' ମେଳ 'ହେବାରୁ' ୪ଘନରସ ( ନିବିଡ଼ରସ ) 'ଜଳହୋଇ' ଉପୁଜିବ (ଜନ୍ମିବ) 'ନଷ୍ଟପ୍ରାୟ ତୁମ୍ଭ ଚାତ୍ର-ଗୃତକ-ଆଶା ପୂର୍ଣ୍ଣ ହେବ ଏହିଭାବ' ।୪୫।

୪୬ଶ ପଦ—'ସୁଗ୍ରୀବ ଏରୂପେ' ବୋଧନ୍ତେ ଶ୍ରୀରାମ ହସି (ହସିଲେ) । 'ଏମନ୍ତ ସମୟରେ ଶିଶିର ( ଋତୁ ) ବିକାଶେ ( ପ୍ରବେଶ ହେଲା ) । ଜାଡ଼ ବ୍ୟାଘ୍ରପରି ମାଡ଼ ବସୁଁ ( ବସନ୍ତେ ) ଲୋକେ ( ଲୋକମାନେ ) ମୋଡ଼ି (ଜାକିଜୁକି) ହୋଇ ଇଷିଭାଷି (ଇଷବୋଲି ବୋଇଲେ) । ୪୬ ।

---

୧—ବଳଂ ସ୍ୟାଦ୍ଧୀରକେ ପବୌ ଇତି ମେଦିନୀ ।
୨- -ବଦ୍ୟୁଦ୍ଦ୍ୱତି ସନ୍ଧ୍ୟାସ୍ତ୍ରୀ ସ୍ତ୍ରିୟାଂ ବିଶ୍ୱୁ ରୁ ନଷ୍ଟଭେଦ-ଇତି ମେଦିନୀ ।
୩—ପବମାନପ୍ରଭଞ୍ଜନା ଇତ୍ୟମରଃ ।
୪—-ରସୋ ଗନ୍ଧରସେ ସ୍ୱାଦେ ତିକ୍ତାଦୌ ବିଷରାଗୟୋଃ ।
ଶୃଙ୍ଗାରଦୌ ଦ୍ରବେ ବୀର୍ଯ୍ୟେ ଦେହଧାତ୍ୱମ୍ବୁପାରଦେ । ଇତି ।

ବାସର ଶିଶୁସମରେ । ବଢ଼ି ଆସଇ କ୍ରମରେ ।
ବାଣୀ ଶୁକପୋତ ରତ ପ୍ରକାଶିତ କଉତୁକ ସୁରମ୍ୟରେ । ୪୭ ।
ବଗତଶଯ୍ୟା ପ୍ରାନ୍ତରେ । ବୁଡ଼କରେ ସାଧୁ ମାନରେ ।
ବୃଜନ ଦୋଷ ନାହିଁ ବୋଲି ଅମୃତ ମାଧବ ନାମ ଉଚ୍ଚାରେ । ୪୮ ।
ବର୍ତ୍ତୁଳ ଲୁଙ୍ଗଲୀଫଳ । ବିଶେଷ ଦେବେ ଉଜ୍ଜ୍ୱଳ ।
ବଚନ ଏରୂପେ ଧରିବା ଦେଖି ପଢ଼ିଲେ କିଶୋରକୁଳ । ୪୯ ।

---

୪୭ଶ ପଦ—ବାସର (ଦିନ) ଶିଶୁସମରେ (ବାଳକ ସମାନରେ) କ୍ରମରେ ବଢ଼ି ଆସଇ । 'ବାଳକ ଯେଉଁରୂପ କ୍ରମେ କ୍ରମେ ବଢ଼ି ବଡ଼ ହୁଏ ତଦ୍ରୂପ ଏହି ଦିବସ' । ୧ଶୁକ ୨ପୋତ (ଶୁଆଛୁଆ) ରତ (ଧ୍ୱନି) ବାଣୀ (ବଚନ ରୂପରେ) କଉତୁକ 'ହେବା' ସୁରମ୍ୟରେ (ସୁମଧୁରରେ) ପ୍ରକାଶିତ (ପ୍ରକାଶିଲେ) । ୪୭ ।

୪୮ଶ ପଦ—ପ୍ରାନ୍ତରେ (ଶେଷରେ) ବଗତଶଯ୍ୟା (ଶଯ୍ୟାତ୍ୟାଗକାଳ) ସାଧୁ (ସାଧୁଜନେ) ମାନରେ (ଜଳରେ) ବୁଡ଼ କରେ (ସ୍ନାନ କରୁଥାନ୍ତି) ଆମ୍ଭର ବୃଜନ (ପାତକ) ଦୋଷ ନାହିଁ ବୋଲି ୧ମାଧବ (ବିଷ୍ଣୁ) ନାମ ଉଚ୍ଚାରେ(ଉଚ୍ଚାରିଲେ) । 'ମାଘସ୍ନାନ କରି ନିଷ୍ପାପ ହେବା ସାଧାରଣଙ୍କୁ ଦେଖାଇଲେ ଏହି ଭାବ' । ୪୮ ।

୪୯ଶ ପଦ—ବିଶେଷ (ଆଶ୍ଚର୍ଯ୍ୟ) ଦେବେ (ଦେବରେ) ଉଜ୍ଜ୍ୱଳ ବର୍ତ୍ତୁଳ (ଗୋଲ) ଲୁଙ୍ଗଲୀଫଳ (ନଡ଼ିଆକୁ) କିଶୋର କୁଳ ୨(ଦେଖି ବର୍ଷିଷ୍ଠ ବାଳକମାନେ) ବଚନ (ଗୁରୁଙ୍କ କହିବା ପାଠ) ଏରୂପେ ଧରିବା ବସ୍ତୁ ବୁଝିଲେ । 'ଶ୍ରୀପଞ୍ଚମୀପୂଜା ଏହି ତାତ୍ପର୍ଯ୍ୟାର୍ଥ ।' 'କେହି କେହି ବଶୋକ ପଢ଼ନ୍ତି ଇତର ଅର୍ଥ କରନ୍ତି କିନ୍ତୁ କବିଙ୍କର ଏରୂପ ପ୍ରୟୋଗ ପର ବୋଧ ହେଉନାହିଁ କେହି ରସିକ ଏରୂପ ପ୍ରୟୋଗ କରିଅଛନ୍ତି' । ୪୯ ।

---

୧—କୀରଶୁକୌ ସମାବତ୍ୟମରଃ ।

୨—ପୋତଃ ପାକୋଽର୍ଭକୋ ଡିମ୍ଭଃ ପୃଥୁକଃ ଶାବକଃ ଶିଶୁରିତ୍ୟମରଃ ।

୧—ସ୍ମରନ୍ତି ସାଧବୋ ନିତ୍ୟଂ ସର୍ବକାର୍ଯ୍ୟେଷୁ ମାଧବଂ ।

ତଦୁକ୍ତଂ—କୌମାରଂ ପଞ୍ଚମାବ୍ଦଂ ତୁ ପୌଗଣ୍ଡଂ ଦଶମାବଧି ।
କିଶୋରମାପଞ୍ଚଦଶାଦ୍ ଯୌବନଂ ତୁ ତତଃପରଂ ଇତି

ବାଲ୍ୟଅବସ୍ଥା ସେବନ୍ତୀ । ବସର୍ଜି କ ପୁଷ୍ପବନ୍ତୀ ।
ବନ୍ଧେ ବନ୍ଧ ଅତି ତରୁଣ ଧାତୁକୀ ଅନୁସରଣ ବେଗତି । ୫୦ ।
ବରସ୍ତ୍ରୀ ସୁମନା ହତେ । ବନ୍ଧ ମଧୁଲିଟବ୍ରାତେ ।
ବ୍ୟଥିତ ତେଜ ସମତେ ରସେ ମଜ୍ଜି ଅନବରତରେ ମାତେ ।୫୧।
ବହରୁଁ ଦକ୍ଷିଣେଶ୍ୱରେ । ବାଟେ ଏକ ମହାସୁରେ ।
ବରୋଧୁଁ କେଶ ଭୂଜ ପାଦ ଧରି ଣ ମାରେ କଫୋଣିପ୍ରହାରେ ।୫୨।
ବୁଲି ବୁଲି ଶ୍ରମ ପାଇ । ବଳେକ ଭେଟିଲେ ଯାଇ ।
ବ୍ୟାଳ ସାହସ ଗୁମ୍ଫାମାଳା ସଦୃଶ ପ୍ରବେଶ ତହିଁ ହୋଇ । ୫୩ ।

---

୫୦ଶ ପଦ—ସେବନ୍ତୀ 'ଲତା' ବାଲ୍ୟ ଅବସ୍ଥା ( ବାଲ୍ୟାବସ୍ଥାକୁ ) ବସର୍ଜି ( ତ୍ୟାଗକରି ) ପୁଷ୍ପବନ୍ତୀ 'ହେଲା' । 'ତା ଦେଖି' ତରୁଣ ( ଯୁବାପୁରୁଷପରି) ଧାତୁକୀ 'ବୃକ୍ଷ' ବେଗତି (ବେଗରେ) ଅନୁସରଣ (ଅନୁସରଣ କରି) ବନ୍ଧ ( ପ୍ରେମାରୂପ ବନ୍ଧକୁ ) ଅତି ( ଅତିଶୟରେ ) ବନ୍ଧେ ( ବନ୍ଧିଲା ) କି ? । 'ସେବନ୍ତୀ ଫୁଲ ଓ ଧାତୁକୀଫୁଲ ଫୁଟିଲ ଏହିଭାବ' । ୫୦ ।

୫୧ଶ ପଦ—ସୁମନା ( ମାଳତୀ ) ସୁମନା ( ସ୍ତ୍ରୀ ) 'ହେଲା' । 'ସେ' ହତେ ( ହତହେବାତେ ) ବନ୍ଧୁ ମଧୁଲିଟବ୍ରାତେ ( ଭ୍ରମର ସମୂହ ) ୧ବନ୍ଧ 'ପୁରୁଷ ପ୍ରାପ୍ତ' ବ୍ୟଥିତ ( ବ୍ୟଥା ) ତେଜ ( ଗୁଡ଼ି ) ସମତେ (ସଙ୍ଗହୋଇ) ରସ ( ପୁଷ୍ପରସ ରୂପ ଶୃଙ୍ଗାର ରସରେ ) ମଜ୍ଜି ଅନବରତରେ ( ସର୍ବଦା ) ମାତେ ( ମତ୍ତଲେ ) । ୫୧ ।

୫୨ଶ ପଦ—ଦକ୍ଷିଣେଶ୍ୱରେ ( ଦକ୍ଷିଣଦିଗ ଗ୍ରହମାନେ ) ବହରୁ ( ବହରନ୍ତେ ) ବାଟେ ଏକ ମହାସୁରେ ( ପ୍ରଧାନଅସୁର ) ବରୋଧୁଁ ( ବରୋଧ କରନ୍ତେ ) 'ତାହାର' କେଶ ଭୂଜ ପାଦ ଧରି ୨କଫୋଣି ( କହୁଣି ) ପ୍ରହାରେ ( ପ୍ରହାରକରି ) ମାରେ ( ମାଇଲେ ) । ୫୨ ।

୫୩ଶ ପଦ—'ସେହି ଦୂତମାନେ' ବୁଲି ବୁଲି ଶ୍ରମପାଇ ଯାଇ ବଳେକ ( ଏକାବେଳେ ) ଭେଟିଲେ, ବ୍ୟାଳ ( ସର୍ପ ପ୍ରାପ୍ତ ) ସାହସ (ସାହସକରି) ଗୁମ୍ଫା

---

୧—ବନ୍ଧୋଽଦ୍ୱୌ ଲବଣେ ଶିତ୍ ଖେ ମୂର୍ଛିତୋ ଖଦିରେଽପି ତେନ ମେଦସ୍କ
୨—ସ୍ୟାତ୍ କଫୋଣିସ୍ତୁ କୂର୍ପର ଇତ୍ୟମରଃ ।

ତବୈକୁଣ୍ଠ ଖର୍ବଟ ପରି । ବଲୋକିତ ଏକ ପୁଷ୍ଟ ।
ବସିଛି ଗ୍ରାମାଏ ଲାବଣ୍ୟଧାମାଏ ନାନାରତ୍ନକୂଟ ସରି । ୫୪ ।
ବାଳ ଅଳକା ରୋମାଳୀ । ବକ୍ରଡୋଳା ଭ୍ରୂବଲ୍ଲୀ ।
ବାର ବାର ନୀଳମଣି ମରକତଶ୍ରେଣୀରୁ ଦମଇ ଝଳି । ୫୫
ବନ୍ଧୂକ ଓଷ୍ଠ ନେତ୍ରାନ୍ତ । ବନଜ ଚରଣ ହସ୍ତ ।
ବିଦ୍ରୁମ ମାଣିକ୍ୟ ଅମୂଲ୍ୟ ଛବିରେ ଚିତ୍ତ ହୁଏ ଅନୁରକ୍ତ । ୫୬ ।

---

ମାଳା ସଦୃଶ (ମୌକ୍ତିକ ପଙ୍କ୍ତିରେ ଗୋଟିଏ ଲେଖାଏଁ ) ତହିଁ (ସେହି ବଳରେ) ଝୁସାଇ ( ବଳାତ୍କାରେ ) ପ୍ରବେଶ "କଲେ" । ୫୩ ।

୫୪ଶ ପଦ—'ସେ ଗଡ଼ିଭିତରେ' ବୈକୁଣ୍ଠ ( ବୈକୁଣ୍ଠପୁରର ) ୧ଖର୍ବଟ ( ଉପଗ୍ରାମ ପର ) ଏକ ପୁଷ୍ଟ ବଳୋକିତ ( ଦେଖିଲେ ) । 'ତା ମଧ୍ୟରେ' ଲାବଣ୍ୟ ଧାମାଏ ( ଲାବଣ୍ୟର ସ୍ଥାନ ) ନାନାରତ୍ନ ୨କୂଟସରି ( ନାନାରତ୍ନ ପୁଞ୍ଜତୁଲ୍ୟ ) ଗ୍ରାମାଏ ( ଏକଗ୍ରାମ ) ବସିଛି । ୫୪ ।

୫୫ଶ ପଦ—'ତାହାର' ବାଳ ( କେଶ ) ଅଳକା ( ଚୂର୍ଣ୍ଣକୁନ୍ତଳ ) ରୋମାଳୀ ( ରୋମାବଳୀ ) ବକ୍ରଡୋଳା ଭ୍ରୂବଲ୍ଲୀ ( ଭ୍ରୂଲତା ) ବାର ବାର ( ପୁନଃ ପୁନଃ ) ନୀଳମଣି ମରକତ ଶ୍ରେଣୀରୁ ଝଳି ( ଉଜ୍ଜ୍ୱଳ ) ଦମଇ । ୫୫ ।

୫୬ଶ ପଦ—'ତାହାର' ଓଷ୍ଠ ଓ ନେତ୍ରାନ୍ତ (ଓଷ୍ଠ ଓ ନେତ୍ରପ୍ରାନ୍ତ ) ବନଜ ଚରଣ ହସ୍ତ ( ପାଦପଦ୍ମ ଓ ହସ୍ତପଦ୍ମ ) ବିଦ୍ରୁମ ( ପୋହଳା ) 'ଏବଂ' ମାଣିକ୍ୟ ( ମାଣିକ୍ୟର ) ୩ ବନ୍ଧୂକେ ( ସଦୃଶ ) ଅମୂଲ୍ୟ ଛବିରେ ଶୋଭିଲେ ଚିତ୍ତ ଅନୁରକ୍ତ ( ବଶୀଭୂତ ) ହୁଏ । ୫୬ ।

---

୧—ଖର୍ବଟ ଲକ୍ଷଣ ଯଥା—
ଗ୍ରାମାନ୍ତରଗତଦ୍ରବ୍ୟଂ ନ୍ୟସ୍ତଂ ଯସ୍ମିନ୍ କୈନ୍ଦ୍ରିତଂ ।
ପତ୍ତନଂ ତୁଚ୍ଛଗିରଂ ସ୍ୟାତ୍ସ୍ମୋର୍ମିନ୍ତ୍ରଂ ତୁ ଖର୍ବଟଂ । ଇତି
୨—କୂଟୋଽସ୍ତ୍ରୀ ନିଶ୍ଚଳେ ରାଶୌ ଲୋହ ମୁଦ୍ଗର ଦମ୍ଭଯୋ ଶଠ ମେଘଯୋ
୩—ବନ୍ଧୂକଶବ୍ଦଃ ସଦୃଶ ବାଚକଃ ।

ବିକାଶ ହାସ ଦଶନେ । ବିଘଟେ ନଖ ପ୍ରସନ୍ନେ ।
ବଜ୍ରମଣି ମୋତିପନ୍ତି ଅପଘନ-କାଞ୍ଚନେ ଜଡ଼ି ଯତନେ । ୫୭
ବୋଲେ କେ ନୋହେ ଏ ରାମା । ବିଧାତା ପୂଜାପ୍ରତିମା ।
ବାଞ୍ଛିତ ତ୍ରିପୁରମୋହେ ତିନିପୁଷ୍ପ ଦେଇ କରନ୍ତି ସୁଷମା । ୫୮ ।
ବାସୁଅଛି ମନ୍ଦମନ୍ଦ । ବଦନ ସରସୀରୁହ ।
ବିରଳ ଅଙ୍ଗୁଳି ନିଷ୍ଟେ ଚମ୍ପାକଳୀ ଶିରୀଷ କୋମଳଦେହ । ୫୯
ବୋଲେ କେ ମନ୍ତ୍ରେ ସଜୀବ । ବ୍ୟର୍ଥ ନୁହଇ ଏ ଧ୍ରୁବ ।
ବୟସ ସ୍ଥାନେ ସ୍ଥାନେ ଖଞ୍ଜନ ମକ୍ଷିକା ଚକ୍ରବାକ ଅସମ୍ଭବ । ୬୦ ।

---

୫୭ଶ ପଦ—'ତାହାର' ବିକାଶ (ପ୍ରକାଶିତ) ହାସ ଦଶନେ (ହସ ଆନ୍ଦୋଳନରେ) ନଖ ପ୍ରସନ୍ନେ (ନଖ ନିର୍ମଳରେ) ବିଘଟେ (ବିଶେଷରେ ଏଥି ବୃଷ୍ଟି ଘଟୁଅଛି)। ବଜ୍ରମଣି (ହୀରକମଣି) ମୋତିପନ୍ତି (ମୋତି ସମୂହ) ଅପଘନ (ଅଙ୍ଗରୂପ) କାଞ୍ଚନେ (କାଞ୍ଚନରେ) ଯତନେ (ଯତ୍ନପୂର୍ବକ) ଜଡ଼ି 'ଅଛି'। ୫୭।

୫୮ଶ ପଦ—'ସେ ରମାକୁ ଦେଖି' କେ (କେହୁ) ବୋଲେ ଏ ରାମା ନୋହେ ବିଧାତା ପୂଜା ପ୍ରତିମା (ଏ ବିଧାତାର ପୂଜାକରିବା ପ୍ରତିମା)। 'ବିଧାତା' ତ୍ରିପୁରମୋହେ (ତିନିପୁର ମୋହିବା) ବାଞ୍ଛିତ (କାମନାକରି) ତିନି ପୁଷ୍ପ। (ତିନିଗୋଟି ଫଳ) ଦେଇ [1]ସୁଷମା (ପରମଶୋଭିବନ୍ତି) କରନ୍ତି। ୫୮।

୫୯ଶ ପଦ—ମନ୍ଦ ମନ୍ଦ ବାସୁଅଛି (ମନ୍ଦ ମନ୍ଦ ବାସୁଥିବା) ବଦନ (ମୁଖ) ସରସୀରୁହ (ପଦ୍ମ), ବିରଳ ଅଙ୍ଗୁଳି ନିଷ୍ଟେ ଚମ୍ପାକଳୀ (ଚମ୍ପାକଳି), କୋମଳ ଦେହ ଶିରୀଷ 'ପୁଷ୍ପ', 'ଏହିରୂପେ ବିଧାତା ତିନୋଟି ଫୂଲ ଦେଇଅଛି ଏହି ଭାବ'। ୫୯।

୬୦ଶ ପଦ—ପୁଣି କେ (କେହୁ) ବୋଲେ 'ଏ ପୂଜାପ୍ରତିମା' ମନ୍ତ୍ରେ (ମନ୍ତ୍ରଦ୍ୱାରା) ସଜୀବ 'ହୋଇଅଛି' ଏ ବ୍ୟର୍ଥ ନୁହଇ ଧ୍ରୁବ (ନିଶ୍ଚୟ) କାହିଁକନା, ସ୍ଥାନେ ସ୍ଥାନେ ଖଞ୍ଜନ ମକ୍ଷିକା ଚକ୍ରବାକ ଅସମ୍ଭବ 'ହୋଇ' ବସେ

---

[1] ସୁଷମା ପରମାଶୋଭା ଇତ୍ୟମରଃ ।

ବସ୍ତୁରୁଁ ବୋଇଲେ ବାଳୀ । ବାନରେ କାହିଁର ମିଳ ।
ଭିବାଇଲେ ଶ୍ରୀରାମ ଦୂତ ଆମ୍ଭେ ଖୋଜୁଅଛୁଁ ବନେ ମଇଥିଳୀ ।୭୧।
ବଡ଼ ତୃଷାର୍ତ୍ତୀ ହୋଇଲୁଁ । ବିବରକୁ ଗୃହିଁ ଦେଲୁଁ ।
ପକ୍ଷିରେ ମାରେ ଜରଜର ତହିଁରୁ ବାହାରେ ଆମ୍ଭେ ପଶିଲୁଁ ।୭୨।
ବିନାଶ ହେବ ତୃଷା କ୍ଷୁଧା । ବନରେ ବୋଇଲ ମୁଗ୍ଧା ।
ଭୁଜ ନେଇ ଯାଅ ଅଦୃଶ୍ୟପୁରରୁ ସ୍ୱୟଂପ୍ରଭ ମୁହିଁ ସିଦ୍ଧା ।୭୩।
ବଂଶଭୁଜପୁରେ ନେଇ । ବନ୍ଦୀ କରିଛି ବୈଦେହୀ ।
ବୋଲକୁ ତାହାରି ଆଚରଣ କରି ବନ୍ଧ୍ୟଗିରିପରେ ଶୋଭି ।୭୪।

---

( ମୂଳରେ ନେଇରୂପ ଖଞ୍ଜନ ପକ୍ଷୀ, ଉରରେ ମହୁମାଛି ଓ ସ୍ତନରୂପ ଚକ୍ରବାକ ପକ୍ଷୀ ବସି ଥିବାରୁ ଅସମ୍ଭବ ହୋଇଅଛି) । ୭୦

୭୧ଶ ପଦ—ବସ୍ତୁରୁଁ (ଦୂତମାନେ ଏମନ୍ତ ବସ୍ତୁରନ୍ତେ) ବାଳୀ(ସେବିମା) ବୋଇଲେ କାହିଁର ବାନରେ 'ଏଠାରେ ଆସି' ମିଳ ( ମିଳାଳ ) । ବୋଲୁଁ ( ଏମନ୍ତ ବୋଲନ୍ତେ ) ବୋଇଲେ ( ସେମାନେ କହିଲେ ) ଆମ୍ଭେ ଶ୍ରୀରାମ ଦୂତ ମଇଥିଳୀ ( ସୀତାଙ୍କୁ ) ଖୋଜୁଅଛୁଁ । ୭୧ ।

୭୨ଶ ପଦ—'ଆମ୍ଭେ ଅନେକ ବୁଲିବାରୁ' ବଡ ତୃଷାର୍ତ୍ତୀ ( ତୃଷାତୁର ) ହୋଇଲୁଁ । ବିବରକୁ ( ଏ ବିଲକୁ ) ଗୃହିଁ ଦେଲୁଁ । ନୀରେ ( ଜଳରେ ) ଜର ଜର 'ହୋଇ' ପକ୍ଷିରେ ( ପକ୍ଷୀ ଦେଖିଏ ) ତହିଁରୁ ( ଏହି ବିବରୁ ) ବାହାରେ ( ବାହାର ଆସିବାରୁ ) ଆମ୍ଭେ 'ଜଳଥିବା ଆଶଙ୍କାରେ,' ପଶିଲୁଁ । ୭୨ ।

୭୩ଶ ପଦ—୧ ମୁଗ୍ଧା ( ସେ ସୁନ୍ଦରୀ ) ବୋଇଲ ହେ ( ବାନରେ ) ୨ବନରେ ( କାନନ ଜଳରେ ) କ୍ଷୁଧା ତୃଷ୍ଣା ବିନାଶ । ନେଇ ଭୁଜ ଅଦୃଶ୍ୟ ପୁରରୁ ( ଏ ଅଦୃଶ୍ୟ ପୁରରୁ ) ଯାଅ, ମୁଁ ସିଦ୍ଧା ( ତପସ୍ୱିନୀ ), 'ମୋ ନାମ' ସ୍ୱୟଂପ୍ରଭା । ୭୩ ।

୭୪ଶ ପଦ—'ପୁଣି ସେ ସ୍ୱୟଂପ୍ରଭା କହିଲେ' ବଂଶଭୁଜ ( ରାବଣ ) ନେଇ ବୈଦେହୀ ( ସୀତାକୁ ) ପୁରେ (ଆପଣାପୁରରେ) ବନ୍ଦୀ କରିଛି । ସେ

---

୧—ମୁଗ୍ଧଃ ସୁନ୍ଦରମୂଢ଼ୟୋରିତ୍ୟମରଃ ।

୨—ବନଂ ନୀରକାନନୟୋ ରିତି ଶବ୍ଦମଳା

'ବିଦୃଶ୍ୟନ୍ତେ ତହିଁ ଦଶ । ବହିଲେ ଦୀର୍ଘନିଶ୍ୱାସ ।
ବନ୍ଧୁ କୁଶଶଯ୍ୟା ଅଙ୍ଗଦ ସମ୍ପାତି ପାଇଲି କରିବ ଗ୍ରାସ ।୭୫।
ବଦୁ ସେ ଆତ୍ମମାନଙ୍କୁ । ବାର୍ତ୍ତା କହ ଶ୍ରୀରାମଙ୍କୁ ।
ବିନାଶ ତାହାଙ୍କ କାର୍ଯ୍ୟରେ ଜଟାୟୁ ଲଭେ ପରମଧାମକୁ ।୭୭।
ବିହଗ ପଗ୍ଭରେ ତାଙ୍କୁ । ବଧିଲି କେ ଜଟାୟୁକୁ ।
ବ୍ୟବସ୍ଥିତେ ସର୍ବ କହୁ ବୋଲେ ନେକ ନିଅ ହେ ମୋତେସ୍ଥାନକୁ ॥

( ଦୂତମାନେ ) ତାହାର ( ସେହି ସ୍ୱୟଂପ୍ରଭାର ) ବୋଲନ୍ତି ଆଚରଣ କରି 'ଅକ୍ଷିରୁଜ ବାହାରନ୍ତେ' ବନ୍ଧ୍ୟ ଗିରି ପରେ ( ବିନ୍ଧ୍ୟ ପର୍ବତ ଉପରେ ) ଶୋହି ( ଶୋଭା ପାଇଲେ ) । ୭୪ ।

୭୫ଶ ପଦ—ତହିଁ (ସେହି ବିନ୍ଧ୍ୟପର୍ବତରେ) ଦଶ (ଦିଗ) ବିଦୃଶ୍ୟନ୍ତେ ( ଦେଖାଯାନ୍ତେ ) 'ସମସ୍ତେ ଆପଦେରୁ ତରିଲୁ ବୋଲି' ଦୀର୍ଘ ନିଶ୍ୱାସ ( ଖର-ନିଶ୍ୱାସ ) ବହିଲେ ( ଛାଡ଼ିଲେ ) । କେହି କେହି 'ବିଦୃଶ୍ୟ ଦଶ କାଦୃଶ' 'ବିଦୃଶ୍ୟ ତେଜ କାଦୃଶ' ଏମନ୍ତ ପଢନ୍ତି ( ବିନ୍ଧ୍ୟ ପର୍ବତରେ ଦଶ ବିଶେଷରେ ଦୃଶ୍ୟ ହେବାରୁ କି କଥା ଦେଖିଲେ ଭାବି ଦୀର୍ଘ ନିଶ୍ୱାସ ଛାଡ଼ିଲେ ।— ସୂର୍ଯ୍ୟତେଜ ବିଶେଷରେ ଦେଖାଯିବାରୁ କି କଥା ଦେଖିଲେ ଭାବି ଦୀର୍ଘ-ନିଶ୍ୱାସ ଛାଡ଼ିଲେ) ଅଙ୍ଗଦ 'ପ୍ରାଣବିସର୍ଜିବା ଅର୍ଥେ' କୁଶଶଯ୍ୟା ବନ୍ଧୁ (କରନ୍ତେ) ସମ୍ପାତି (ଗରୁଡ଼ ପୁତ୍ର ଦେଖି ) ପାଇଲି 'ଏହାଙ୍କୁ' ଗ୍ରାସ କରିବି । ୭୫ ।

୭୬-୭୭ଶ ପଦ—ସେ ( ଅଙ୍ଗଦ ) ଆତ୍ମମାନଙ୍କୁ 'କହିଲ ତୁମ୍ଭେ' ଶ୍ରୀରାମଙ୍କୁ ବାର୍ତ୍ତା କହ; ତାହାଙ୍କ କାର୍ଯ୍ୟରେ ଜଟାୟୁ ବିନାଶ 'ହୋଇ' ପରମ ଧାମକୁ (ବୈକୁଣ୍ଠକୁ ) ଲଭେ ( ଲଭିଲ ) । 'ସେହିପରି ମୁଁ ବିନାଶ ହେଲେ ପରମଧାମକୁ ପାଇବି ଏମନ୍ତ' ବଦୁ ( କହନ୍ତେ ) ବିହଗ ( ସମ୍ପାତି ) ତାଙ୍କୁ ପଗ୍ଭରେ କେ ( କେଉଁଲୋକ ) ଜଟାୟୁକୁ ବଧିଲେ ? ବ୍ୟବସ୍ଥିତେ ( ଆମୂଳ-ଚୂଳ ) ସର୍ବ ( ସମସ୍ତ ) କହୁ ( କହନ୍ତେ ) ବୋଲେ ( ସମ୍ପାତି କହେ ) ହେ 'ତୁମ୍ଭେମାନେ' ! ମୋତେ ନେଇ ସ୍ଥାନକୁ ନିଅ । ୭୬ ।୭୭ ।

ବାଜ ପଲ୍ଲବଲ୍ ତାର । ବାଙ୍କେଣେ ଛୁଇଁ ସେ ବୀର ।
ବସାଇ ପୃଷ୍ଠରେ ଲଙ୍କା ଦେଖାଇଲ ସୁମରୁଁ ଆସି କୁମର । ୬୮ ।
ବେନି ଗଲେ ହିମାଳୟେ । ବଞ୍ଚେ ଅଷ୍ଟ କଷ୍ଟମୟେ ।
ବନାଦ୍ରେ ରଜନୀ ନେଲେ ଉଦ୍ଧୁପନ୍ତ ଶୀତାର୍ତ୍ତେ ସୀତାର୍ଥେ ଲୟେ ।୬୯।
ବପୁ ଏକେ ଥରଥର । ବାଜେ ପଞ୍ଚଶର ଶର ।
ବଳବନ୍ତକୁ ଏତେଦୂର କରଇ କ ନୋହିବ ଅବଳାର । ୭୦ ।
ବେନି ବେନି ମେଳ ହୋଇ । ବାନ୍ଧେ କେ ପାଶ ନ ଥାଇ ।
ବନ୍ଧେ କେ ଦେହ ବର୍ମନେ କ୍ଷତ ବନା ହୃଦୟମଧେ ଭେଦଇ ।୭୧।

---

୬୮ଶ ପଦ—ସେ ବୀର ( ଜାମ୍ବବ ପ୍ରଭୃତି ବୀରମାନେ ) ଛୁଇଁ ( ତାଙ୍କୁ ଛୁଅନ୍ତେ ) ବାଙ୍କେଣେ ( ଅଙ୍କେଣରେ ) ତାର ( ସେହି ହନୁମାନଙ୍କର ) ବାଜ ( ଡେଣା ) ପଲ୍ଲବଲ ( ଜାଅଁଳିଲା ) 'ତେଣୁ ସେ' କୁମର ( ଯୁବକଙ୍କୁ ) ସୁମରୁଁ ( ସ୍ମରଣ କରନ୍ତେ ) 'ସେ' ଆସି 'ବାପ କଥାରେ' ପୃଷ୍ଠରେ ( ଏ ଆଠବୀରଙ୍କୁ ପିଠିରେ ) ଲଙ୍କା ଦେଖାଇଲ । । ୬୮ ।

୬୯ଶ ପଦ—'ତହୁଁ', ବେନି ( ସୀତା ପୁଅ ) ହିମାଳୟ ( ହିମାଳୟ ପର୍ବତକୁ ) ଗଲେ । ଅଷ୍ଟ 'ବୀରେ' କଷ୍ଟମୟେ ( ଅତି କଷ୍ଟରେ ) ବଞ୍ଚେ ( ବଞ୍ଚିଲେ ) । 'ସେକାଳରେ' ଉଡୁପତ୍ତ ( ବ୍ରହ୍ମ ) ଶୀତାର୍ତ୍ତେ ( ଶୀତରେ ପୀଡ଼ିତ ହୋଇ ) ସୀତାର୍ଥେ (ସୀତା କପଡ଼ ଏ ଶୀତରେ ବଞ୍ଚୁଥିବ ) ଲୟେ ( ଏହି ଭାବନାରେ ) ବନାଦ୍ରେ ( ଉଦ୍ୟାନରେ ) ଯାମିନୀ ନେଲେ ( ରାତି କଟାଇଲେ ) । ୬୯ ।

୭୦ଶ ପଦ— ଏକେ ( ଏକେତ ) ବପୁ ( ଦେହ ) 'ଶୀତରେ' ଥର ଥର । 'ତହିଁରେ ପୁଣି' ପଞ୍ଚଶର ( କନ୍ଦର୍ପର ) ଶର ବାଜେ ( ବାଜଇ), ବଳବନ୍ତକୁ ( ବଳିଷ୍ଠ ମୁଁ ମୋତେତ') ଏତେଦୂର ( ଏତେ କଷ୍ଟ ) କରଇ ( ଦଉଇ ) ଅବଳାର ( ବଳହୀନା ସୀତାଙ୍କୁ ) କ ନୋହିବ ( କି ନ କରୁଥିବ ) । 'ଅଧିକ କଷ୍ଟ ଦେଉଥିବ ଏହି ଭାବ' ।୭୦।

୭୧ଶ ପଦ— ବେନି ( ସ୍ତ୍ରୀ ପୁରୁଷଠାରେ ) ବେନି ( ଚିତ୍ତିର କନ୍ଦର୍ପ ମେଳ ହୋଇ କେ ( କିଏ ) ପାଶ (ବନ୍ଧନ) ନ ଥାଇ ବାନ୍ଧେ ( ବାନ୍ଧୁଅଛି) । କେ( କନ୍ଦର୍ପ ) ଦେହ ବର୍ମନେ ( ଦେହ ଶୂନ୍ୟ ହୋଇ ) ବନ୍ଧେ

ବର୍ଣ୍ଣିଲେ ରାମଚନ୍ଦ୍ର । ବାସ୍ତପଦେ ଏ ଛାନ୍ଦ ।
ବୋଲେ ଉପେନ୍ଦ୍ର, ମାସ ଲେଖି କୃଶ ବୈଦେହୀ ଶୋକରେ ଧାନ୍ଦ୍ର ।୨୨।

—(୧✳୪)—

## ଚତୁସ୍ତ୍ରିଂଶ ଛାନ୍ଦ ।

ରାଗ—ବସନ୍ତ ।

ବସନ୍ତ ସମୟ ଅତି ରସମୟ ଋତୁପ ପ୍ରବେଶ ଆସି ଯେ ।
ବଦ୍ରୁମ ନବ ସ୍ତବ୍ରୁମଲତା ଖାବ ପଲ୍ଲବେ ସରାଗ ଦିଶି ଯେ ।

---

( ବାଣ ବିନ୍ଧଇ ) । 'ସେ ବାଣ' ଷଡ ବ୍ରକା ( ଷଡ ନଂଳର ) ହୃଦୟ ମଧ୍ୟେ ( ମର୍ମରେ ) ଭେଦଇ ।୨୧।

୨୨ଶ ପଦ—ରାମଚନ୍ଦ୍ର 'ଏପଣ' ବର୍ଣ୍ଣିଲେ 'ତେଣେ' ବୈଦେହୀ ( ସୀତା ) କୃଶ ( ସରୁ ) ହୋଇ ଯାଇ' ମାସ ଲେଖି ( ବିଚ୍ଛେଦ କେତେ ମାସ ହେଲା ଗଣନା କରି ) ଶୋକରେ ସନ୍ଧ ହେଲେ । ବାସ୍ତଣ ପଦ ( ବାସ୍ତଣପଦରେ ) ଏ ଛାନ୍ଦ ଉପେନ୍ଦ୍ର ( ଭଞ୍ଜ କବି ) ବୋଲେ । ୨୨ ।

---

ଚତୁସ୍ତ୍ରିଂଶ ଛାନ୍ଦ ।

୧ମ ପଦ—ଅତି ରସମୟ ( ଅତ୍ୟନ୍ତ ଶୃଙ୍ଗାରରସ ପ୍ରଧାନ ) ବସନ୍ତ ସମୟ ( ବସନ୍ତ ଋତୁ ) ଋତୁପ ( ବେଗରେ ) ଆସି ପ୍ରବେଶ 'ହେଲା' । 'ତେଣୁ' ସ୍ତବ୍ରୁମ (ହିଙ୍ଗୁଳ ଚନ୍ଦନାଦି ବୃକ୍ଷମାନେ ) ଲତା (ବିଭିନ୍ନ ପ୍ରକାର ଲତାମାନେ ) ୧ବଦ୍ରୁମ ( ପୋଦ୍ଦଲା ) ଛବ ( ବାନ୍ଧୁକ ) ଖାବ ( ଖଦିରାଦି ) ୨ପଲ୍ଲବରେ ( ନୂଆ କଅଁଳ ପତ୍ରରେ ) ସରାଗ ( ରଙ୍ଗବର୍ଣ୍ଣ ବା ଅନୁରାଗଯୁକ୍ତ ହୋଇ ଦେଖାଗଲେ ) ଦିଶି ( ଦିଶିଲେ ) ✳ଏ ଗମ୍ୟାପେକ୍ଷା । ସୁମନମାନ ( ପୁଷ୍ପମାନେ ) ବିକଶି ବିକଶି ( ଅତିଶୟରେ ବିକାଶ ହୋଇବାରୁ ) 'ଲତାମାନେ' ଜଡ (ବେଗରେ) ନବପୁଷ୍ପବତୀ ବୋଲାଇଲେ । 'ନବପୁଷ୍ପବତୀ ସ୍ତ୍ରୀ'

---

୧—ବିଦ୍ରୁମୋ ରକ୍ତବୃକ୍ଷୋଽପି ପ୍ରବାଳେ ପଲ୍ଲବେଽପି ଚ ଇତି ମେଦିନୀ ।
୨—ପଲ୍ଲବୋ ସ୍ତ୍ରୀ କିଶଳୟ ଇତ୍ୟମରଃ ।
✳—ଇବାଦିକପଦାଭାବେ ଗମ୍ୟାପେକ୍ଷା ପ୍ରତୀୟତେ ।

ବଙ୍ଗଶ୍ରୀ । ବଙ୍ଗଶ୍ରୀ ସୁମନମାନ ଯେ ।
ଙ୍ଗବାଳକଳେ ଜବ ନବପୁଷ୍ପବନ୍ତ ଭବ ରସ କଲେ ଦାନ ଯେ ।୧।
ବାସନ୍ତୀ ମଲ୍ଲୀ ନଆଳୀ କୁରଅନା ଯହିଁ ହେଲେ ଇଚ୍ଛାବନ୍ତ ଯେ ।
ବାସକୁ ଆସି ଭ୍ରମର ଜାରେ ରସି ମଧମାଦକରେ ମାନ୍ତ ଯେ ।
ବସନ୍ତ । ବାତ ବାସ ହରେ ଏକା ଯେ ।
ବଢାଇ ନ ଦଏ ପାଶେ ମଧୁପକୁ କେତକୀ ସନ୍ତି-ନାୟିକା ଯେ ।୨।

---

୩ଭବ (ଶିବରେ) ୪ରସ (ଶୃଙ୍ଗାର ରସ) ଦାନ କରନ୍ତି । 'ଏ ଲତାମାନେ' ଭବ ( ସୁନ୍ଦରରେ ) ରସ ( ମକରନ୍ଦ ) ଦାନ କଲେ । 'ଏ ପଦ ସଭଙ୍ଗ ଶ୍ଳେଷ ହୋଇଛି' । ୧

୨ୟ ପଦ – ଯହିଁ ( ଯେଉଁ ବସନ୍ତକାଳରେ) ବାସନ୍ତୀ ( ମାଧବୀଲତା ) ମଲ୍ଲୀ (ମଲ୍ଲୀଗଛ) ନଆଳୀ 'ଗଛ' କୁରଅନା 'ଗଛ' 'ଏମାନେ' ୧ ଇଚ୍ଛାବନ୍ତ ( କାମୁକା ସ୍ତ୍ରୀ ପ୍ରାୟ ) ହେଲେ । 'ଯେଣୁ' ଭ୍ରମରଜାରେ (-ଭ୍ରମରମାନେ ଜାରପୁରୁଷଙ୍କ ପରି) ୬ବାସକୁ ( ବାସନାରୂପ ଗନ୍ଧକୁ ) ଆସି 'ତାଙ୍କ ସଙ୍ଗେ' ରସି ମଧୁ ମାଦକରେ ( ପୁଷ୍ପରସରୂପ ମଦ୍ୟମାଦକରେ ) ମାନ୍ତ (ମାତିଲେ) 'ଅସତୀ କାମୁକାର ଗୃହକୁ ଜାରପୁରୁଷ ଆସି ଶୃଙ୍ଗାର ରସରେ ରସି ମଦ୍ୟପାନରେ ମତ୍ତଳପ୍ରାୟ ଭ୍ରମରମାନେ ଅସତୀ କାମୁକା ତୁଲ୍ୟ ଏହି ପୁଷ୍ପମାନଙ୍କ ମକରନ୍ଦପାନରେ ମତ୍ତହୋଇ ମାତିଲେ ଏହି ସରଳାର୍ଥ । ୨ ଏକା (କେବଳ) କେତକୀ ସତୀ ନାୟିକା 'ପରି' ମଧୁପକୁ ( ଭ୍ରମରକୁ ) ପାଶେ (ପାଖରେ) ବସାଇ ନ ଦଏ । ବସନ୍ତ ବାତ (ପବନ) ବାସ (ବାସନା) ହରେ । 'ଉତ୍ତମ ସ୍ତ୍ରୀ ଯଦ୍ୟପି ଜାରପୁରୁଷକୁ ପାଖରେ ବସାଇ ନ ଦଏ କେବଳ ତାହାର ପଚ୍ଛ ହରିବାକୁ ସମର୍ଥ ହୁଏ ସେହିପରି କେତକୀ ଫୁଲ ଜାର ଭ୍ରମରକୁ ପାଖରେ ବସାଇ ନ ଦଏ ସୁପନ୍ଥ ବସନ୍ତ ପବନ କେବଳ ତାହାର ବାସନା ହରଣ କରେ ଏହି ସରଳାର୍ଥ । ଭ୍ରମର କେତକୀରଜରେ ଅନ୍ଧଭୂତ ଓ ଛିନ୍ନପକ୍ଷ ହୁଏ ଏହିଭଳି' ।୨।

---

୩—ଭବଃ ସୁନ୍ଦରବାଚ୍ୟପ୍ରାୟ ଇତ୍ୟମରଃ ।

୪—ଶୃଙ୍ଗାରାଦୌ ଜଳେ ବୀର୍ଯ୍ୟେ ଗୁଣୋରାଗୋ ଦ୍ରବେ ରସଃ ।

୧—ଇଚ୍ଛାବତୀ କାମୁକା ସ୍ୟାଦିତ୍ୟମରଃ ।

୬ – ବାସୋ ଗୃହେ ସୌରଭେ ଚେତି ଶବ୍ଦମାଳା ।

ବର୍ଣ୍ଣିନୀଙ୍କ ପରି ଫୁଲମାଳାଧରି କେବଳ କିଂଶୁକ ଥାଇ ଯେ ।
ବେଶ୍ୟା ପରି ଚୂତ କୋଳେ ପରଭୃତ ବସାଇ ଗୀତ ଗୁଆଁଇ ଯେ
ବନ୍ଧୁତ । ବନ୍ଧି ପୁନ୍ନାଗ ସୁନାଗ ଯେ ।
ବିଦେଶବାହୁଡ଼ା ସମୟେ ବସନ୍ତେ ପୁଳକ ଯାଇ ସଞ୍ଚରି ଯେ ।୩ ।
ବଞ୍ଜୁଳବନେ ମଞ୍ଜୁଳବର୍ଣ୍ଣ ସୀତା ଏ କାଳ ଅବସ୍ଥା ଧରି ଯେ ।
ବିକାଶିଲେ ମଲ୍ଲୀ ଫୁଟେ ତନୁ ଚମ୍ପା ମଦନଶରେ ଟରି ଯେ ।

୩ୟ ପଦ—୧କିଂଶୁକ (ପଳାଶବୃକ୍ଷ) ୨ବର୍ଣ୍ଣିନୀପରି ( ସ୍ୱୟମ୍ବର ସ୍ତ୍ରୀ ପ୍ରାୟ) କେବଳ 'ବରଣ କରିବାପାଇଁ ହସ୍ତରେ' ୩ଫୁଲ ୪ମାଳା ଧରିଥାଇ । 'ଯେମନ୍ତ ଫୁଟିଲ ଏହାଭବ' । ବେଶ୍ୟାପରି (ବେଶ୍ୟାକୁ ନାଗରପୁରୁଷ କୋଳରେ ବସାଇ ଗୀତ ଶୁଣାଇଲା ପରି ) ଚୂତ (ଆମ୍ରବୃକ୍ଷ) ପରଭୃତ ( କୋକିଳକୁ ) କୋଳେ (କୋଡ଼ରେ) ବସାଇ ଗୀତ ଗୁଆଇ (ଗୁଆଇଲା) । 'ଚୂତ ବୃକ୍ଷରେ ବସି କୋକିଲ ଧ୍ୱନି କଲ ଏହାଭବ' । ବନ୍ଧୁ ( ବାନ୍ଧିଥା ) ପୁନ୍ନାଗ 'ବୃକ୍ଷ' ସୁନାଙ୍ଗ 'ବୃକ୍ଷ' 'ଏ ଦୁହିଙ୍କି' ୫ପୁନ୍ନାଗ (ପୁରୁଷଶ୍ରେଷ୍ଠ) ସୁନାଗ ( ଉତ୍ତମନାଗ) 'କରିଅଛି' । ବସନ୍ତେ (ବସନ୍ତକାଳରେ) ବିଦେଶ ବାହୁଡ଼ା ସମୟେ 'ତାଙ୍କର' ପୁଳକ (ରୋମୋଦ୍‌ଗମ ରୂପଅଙ୍କୁର) ସଞ୍ଚରି ଯାଇ (ସଂଚରିଲା) । ୩ ।

୪ର୍ଥ ପଦ—ବଞ୍ଜୁଳବନେ ( ଅଶୋକବନରେ ) ମଞ୍ଜୁଳବର୍ଣ୍ଣ (ମନୋଜ୍ଞବର୍ଣ୍ଣ—ମନୋହରୀ) ସୀତା ଏକାଳ ( ଏ ବସନ୍ତକାଳର) ଅବସ୍ଥା ଧରି ମଲ୍ଲି 'ବୋଲି' ବିକାଶିଲେ ( ପ୍ରକାଶିଲେ ) । ତାଙ୍କ ୧ ମଦନ-ଶରରେ ( କାମବାଣରେ ) ପୂରି ତନୁ ଚମ୍ପା ଫୁଟେ ( ଫୁଟିଲା ) 'ଏଣୁ' ବିଧୁମୁଖ ( ଚନ୍ଦ୍ରମୁଖରେ ) ଧୂଳି ( ଧୂଳି ପଡ଼ିବାରୁ ) ମ୍ଳାନ ( ମଳିନତାକୁ )

୧ – ପଳାଶଃ କିଂଶୁକଃ ପର୍ଣ୍ଣୋ ବାତପୋତ ଇତ୍ୟମରଃ ।
୨—ପତିମ୍ବରା ଚ ବର୍ଣ୍ଣ୍ୟା ଚ ଇତି ।
୩— ଫୁଲ୍ଲଃ ସ୍ଫୁଟେଚ ପୁଷ୍ପିତ ଇତି କୋଷାନ୍ତରଂ ।
୪—ମାଲା ସ୍ରକ୍ ପଂକ୍ତି କାନନେ ଇତି ଶବ୍ଦମାଳା
୫— ପୁନ୍ନାଗେ ପୁରୁଷସ୍ତୁଙ୍ଗ ବୃତମାଳଦୁବର୍ଣ୍ଣକ ଇତି ସ୍ମୃତେଃ
୧—ସ୍ମରଃ ଶମ୍ବରଃ ସରଃ ଶର ଇତି ଦ୍ୱିରୂପକୋଷଃ ।

ବଧୂତ । ବିଧୁମୁଖଧୂଳି ମ୍ଳାନ ଯେ ।
ବୃଦ୍ଧି ହୋଇ ଦନଶ୍ରାବ ଅତିଶୟ ସଂଯୋଗ ପାଣି ନଳିନ ଯେ ।୪।
ବୋଇଲେ ମଧୁ ତୁ ମୋତେ ତରାଉଛୁ ରମ୍ୟାପଦ୍ମେଁ ରମାଯେନି ଯେ ।
ବସୁଧାଭୃତ ନୁହଇ ହୃଦୟଜ ସ୍ଥାପୁ ତୁ ବଡ଼ବାଅଗ୍ନି ଯେ ।

---

ବଧୂତ (ଧଇଲେ) । 'ତାଙ୍କର' ୨ଦାନଶ୍ରବ (ଦୁଃଖଶ୍ରବ) ଅତିଶୟ ବୃଦ୍ଧ (ବଢ଼ିଲା) । 'ଶଣ୍ଡଦେଶରେ' ୩ ପଣିନଳିନ (ହସ୍ତପଦ୍ମକୁ) ସଂଯୋଗ କଲେ । 'ବସନ୍ତକାଳର ଅବସ୍ଥା କପର ? ୪ମଲ୍ଲୀ 'ଫୁଲସବୁ' ବକାଶିଲେ (ଫୁଟିଲେ), ତନୁ (ବସ୍ତ୍ରତ ରୂପରେ) ଚମ୍ପା 'ଫୁଲ' ଫୁଟେ (ଫୁଟିଲା) ୫ମଦନ (ମଦ୍ଧିଣେଗଛ ଦା ଦୁଦୁସବଗଛ) ରସରେ ପୂର (ପୂରଲ) 'କମ୍ପା' ୬ବସନ୍ତକାଳ' ମଦନ ରସରେ (କାମରସରେ) ପୂରଲ । ବିଧୁ ('ଚନ୍ଦ୍ରର)' ମୁଖ ଧୂଳି (ଧୂଳିରେ) ମ୍ଳାନ (ମଳିନତାକୁ) ବଧୂତ (ଧଇଲା) । ନଳିନ (ପଦ) ପାଣି (ଜଳରେ) ସଂଯୋଗ 'ହେଲ' (ଫୁଟିଲା) । 'ଏପଦ ସଭଙ୍ଗ ଶ୍ଳେଷ' । ୪ ।

୫ମ ପଦ—ବସନ୍ତ କାଳ ଦେଖି 'ସୀତା' ବୋଇଲେ ହେ ୧ ମଧୁ (ବସନ୍ତ) ତୁ ମଧୁ (ମଧୁଦୈତ୍ୟ ପ୍ରାୟ୍ୟ) ରମ୍ୟା ପଦ୍ମେଁ (ରମ୍ୟା ଏନ୍ଦ୍ରପଦକୁ) ରମା (ଲକ୍ଷ୍ମୀ) ଯେନ (ମନେକରି) ମୋତେ ତରାଉଛୁ ' ମୁଁ ରମା ନୁହେଁ 'ପୁଣି' ମଧୁ (ଚୈତ୍ର ପ୍ରାପ୍ତ) ତୁ 'ମୋ' ୨ହୃଦୟଜ (ବକ୍ଷୋଯକୁ) ବସୁଧାଭୃତ (ପର୍ବତ ବସ୍ତ୍ରର) ବଡ଼ବା ଅଗ୍ନି (ବାଡ଼ବାନଳକୁ) ସ୍ଥାପୁ 'ଅଛୁ' 'ମୁଁ ତାହା' ନୁହଇ । ବୁଧେ (ପଣ୍ଡିତମାନେ) 'ତିହିଁରେ' ଶ୍ଳେଷ ଉପମା

---

୨—ଦାନଂ ସ୍ୟାଦ୍‌ବାସରେ ଦୁଃଖେ ଇତି ରଭସଃ ।
୩—ପଞ୍ଚଶାଖଃ ଶୟଃ ପାଣିଶଚ୍ଚମରଃ ।
୪—ତ୍ରୈଣ ନ୍ୟଂ ତୁ ମଲ୍ଲିକା ଇତ୍ୟମରଃ ।
—ମଦନଃ ସ୍ମରଧୂର୍ତ୍ତ ବକପିତ୍ଥକଣିକାଦ୍ରୁଷ୍ଟୁ ।
୬—ବସନ୍ତଚୈତସ୍ୟୋଃ ପୁଂସୀତି କୁମୁଦକରଃ ।
୧—ମଧୁଦୈତ୍ୟେ ମଧୁଶ୍ଚୈତ୍ରେ ମଧୁକୋଽପି ମଧୁର୍ମତଃ ।
ବସନ୍ତେଽପି ମଧୁ ଜ୍ଞେୟ ମଦ୍ୟେ ପୁଷ୍ପରସେ ମଧୁରତ ଧରଣୀଃ ।
୨—ଭରସ୍ୟପିଚ ବୁକ୍‌କସ୍ୟାଂ ହୃଦୟଂ ମାନସେଽପଚେତି ହିକାଣ୍ଡଶେଷଃ ।

ବୁଝିଥ ଯେ । ବିହନ୍ତି ଶଙ୍ଖ ଉପମା ଯେ ।
ବିକାଶ ଚନ୍ଦ୍ରାର୍ଦ୍ଧ ବିପାକକର୍ମରୁ ହୋଇବୁ କପାଇଁ ଭ୍ରମା ଯେ ।୫।
ବସିଣ ରସାଳେ ସଂଯୋଗୀ ରସାଳେ ପଞ୍ଚମ ସ୍ୱରକୁ ତହିଁ ଯେ ।
ବିହନ୍ତେ କୋକିଳ ଅଶ୍ରୁରେ ପଙ୍କିଲ ଗଣ୍ଡ କରି ବଇଦେହୀ ଯେ ।
ବୋଲନ୍ତି । ବୋଲଉ ମନ୍ଦତନୟ ଯେ ।
ବିଶେଷରେ ମନ୍ଦ ତନୟ ନ କରି ପରଭୃତ ନାମୋଦୟ ଯେ ।୬।
ବନେ ଅଇଲେ ତିନି ବେନି ରହିଲେ ଏକ ଗଲେ ଏକା ହୋଇ ଯେ ।
ବୋଲିବାକୁ ଆହା କେହି ନାହିଁ ସାହା ଯେ ଜନ ବଞ୍ଚିବ କେହି ଯେ

---

*ହୁଅନ୍ତି; 'ମୋର' ବିପାକ କର୍ମରୁ ( ମନ୍ଦଭାଗ୍ୟରୁ ) ଚନ୍ଦ୍ରାର୍ଦ୍ଧ ( ନଖଚନ୍ଦ୍ର ) ବିକାଶ 'ହୋଇଅଛୁ' 'ଏଣୁ ତୁ' ଭ୍ରମା (ଭ୍ରମ) କପାଇଁ (କାହିଁକି) ହୋଇବୁ । 'ଭ୍ରମ ହେବାର କାରଣ ନାହିଁ' ।୫।

୬ଷ୍ଠ ପଦ—'ସୀତା ଏମନ୍ତ ବୋଲିବା ସମୟରେ, ରସାଳେ (ଆମ୍ରବୃକ୍ଷରେ) ବସିଣ (ବସି) ରସାଳେ (ରସାଳରେ) ସଂଯୋଗୀ (ସଂଯୋଗୀ ହୋଇ) କୋକିଳ ପଞ୍ଚମ ସ୍ୱରକୁ ତହିଁ ବିହନ୍ତେ ବଇଦେହୀ (ସୀତା) ଅଶ୍ରୁରେ (ଲୋତକରେ) ଗଣ୍ଡ ( ଗଣ୍ଡସ୍ଥଳକୁ ) ପଙ୍କିଲ କରି ବୋଲନ୍ତି ତୁ ମନ୍ଦ ତନୟ (କାକ ପୁତ୍ର) ବୋଲାଉ । ବିଶେଷରେ ମନ୍ଦ ତ (ଭଲ ନୋହୁ ) 'କେଣ୍ଟ' ମନ୍ଦନୟ (ମନ୍ଦବିଗ୍ରହ) ନକରି 'ପୁଣି ଲୋକ'[୧] ପରଭୃତ (ପରପୁଷ୍ଟକରି) ନାମୋଦୟ ( ନାମ ଉଦୟ ) 'ହୋଇଅଛୁ' ତୁ ସେହି କୋକିଳ ଗୁଣକୁ 'ପ୍ରକାଶ କରି, ପର 'ଯେ ମୁଁ ତୋହର' ଭୃତ (ଭୃତ୍ୟ ହୁଅ) 'ଦୂତ ରୂପରେ ପୁଷ୍ଟକର ହୁଅ ଏହିଭାବ' ।୬।

୭ମ ପଦ—ବନେ (ବନକୁ) ତିନି 'ଜଣ' ଅଇଲେ ବେନି (ଦୁଇଜଣ) ରହିଲେ 'ତାମଧ୍ୟରୁ' ଏକା ହୋଇ ଏକ[୨] (ଜଣେ ଅବଳା) ଗଲେ ଯେ ଜନ (ଜଣକ) କେହି (କେମନ୍ତେ) ବଞ୍ଚିବ, ତାକୁ ଆହା ବୋଲିବାକୁ ସାହା

---

* — ଭ୍ରାନ୍ତିମଦ୍ଦନଂଜଙ୍ଘେୟ । ଜତାନ୍ତେୟଂ ବେଣୀତି ଉଦାହରଂ ।

୧ — ପରଂ ବର୍ଦ୍ଧି — ପୁଷ୍ଟାଖିତ ପରଭୃତ୍ତ ।

ବନପିୟଃ ପରଭୃତଃ କୋକିଳ ଇତ୍ୟମରଃ ।

ବଲ୍ଲଭେ । ବନପ୍ରିୟ କହ ଏତେ ଯେ ।
ବ୍ରହ୍ମାଣ୍ଡନାଥ-ହାତ ଧରି ଅନାଥ କ ଶୁଭୁଅଛୁ ଜଗତେ ଯେ । ୭ ।
ବୋଲିବେ ଅବା ସେ ଗୁଡ଼ିଗଲ ସିନା ଆୟୁତ୍ତେ ମୁଁ ଆସି ନାହିଁ ଯେ
ବେନି ପିଣ୍ଡ ଏକ ଜୀବନ ବିଚ୍ଛେଦ ପାଇ ବାନ୍ଧିଥିଲି ବାନ୍ଧି ଯେ ।
ବଲ୍ଲଭେ । ବନପ୍ରିୟ କହ ଏତେ ଯେ ।
ବିଗୁଣ ସେବକାରେ ପ୍ରଭୁ ଘେନିଲେ ସେଭଲ ହେବ କେମନ୍ତେ ଯେ ।
ବଂଶ ତପି କୋପାନଳେ ଦଗ୍ଧ ଜାଣି ଯେ କୁଳଜାତ ନୃପତି ଯେ ।
ବୁହାଇ ଗଙ୍ଗା ବିଷ୍ଣୁ ପଦୁଁ ବହୁତ କ୍ଳେଶ କରିଲେ ଶାନ୍ତି ଯେ ।୮।

କେହି ନାହିଁ; ହେ ବନପ୍ରିୟ ( କୋକିଳ ) ବଲ୍ଲଭେ ( କାନ୍ତଙ୍କୁ ) ଏତେ ( ଏତିକ ଯାଇଁ ) କହ ( କହିବୁ ) । ବ୍ରହ୍ମାଣ୍ଡନାଥ ହାତଧରି ଅନାଥ 'ହେଲି' ଜଗତେ 'ଏ କଥା' କିରୂପେ ଶୁଭୁଅଛୁ । 'ଏ କାହା କଥା କିଣ- ତୁମ୍ଭଙ୍କୁ ଶୁଭୁନାହିଁ' । ୭ ।

୮ମ ପଦ—'ଏମନ୍ତ' ଅବା ବୋଲିବେ ସେ ସିନା ଗୁଡ଼ିଗଲେ 'ମୁଁ ଛ ତାକୁ ଗୁଡ଼ି ନାହିଁ' 'କହିବ' ମୁଁ 'ମୋ' ଆୟୁତ୍ତେ ( ଆୟୁତ୍ତରେ ) ଆସି ନାହିଁ । 'ମୋତେ ବଳ ପୂର୍ବକ କର୍ଣେ ଧରି ଅଣିଲ ମୋର ଦୋଷ ନାହିଁ' । 'ତାଙ୍କର ମୋହର' ଏକ ଜୀବନ, ବିଚ୍ଛେଦ 'କରିବା' ପାଇଁ ବାନ୍ଧି ( ବାଧାତା ) ବେନି ପିଣ୍ଡ 'କରି' ବାନ୍ଧିଥିଲ । ହେ ବନପ୍ରିୟ ! ବଲ୍ଲଭେ ( କାନ୍ତଙ୍କୁ ) ଏତେ ( ଏତିକ ) କହ ( କହିବ ) । ସେବକାରେ ( ଦାସୀଠାରେ ) ପ୍ରଭୁ ( ସ୍ୱାମୀ ) ବିଗୁଣ ( ଦୁର୍ଗୁଣ ) ଧରିଲେ ( ଘେନିଲେ ) ସେ 'କଥା' କେମନ୍ତେ ଭଲ ହେବ * ( ଭଲ ହେବ ନାହିଁ ) । ୮ ।

୯ମ ପଦ—ତପି ( କପିଳମୁନି ) କୋପାନଳେ ( କୋପାଗ୍ନିରେ ) ବଂଶ ଦଗ୍ଧ 'ହେବାର' ଜାଣି ଯେ ( ଯେଉଁ ) କୁଳ ( କୁଳରେ ) ଜାତ ନୃପତି ( ଭଗୀରଥ ) ବହୁତ କ୍ଳେଶ ( କ୍ଳେଶରେ ) ବିଷ୍ଣୁ ପଦୁଁ ( ବିଷ୍ଣୁଙ୍କ ପାଦରୁ ) ଗଙ୍ଗା ( ଗଙ୍ଗାଙ୍କୁ ) ବୁହାଇ 'ଆଣି' ଶାନ୍ତି କରିଲେ । ହେ ବନପ୍ରିୟ !

*—ନୈବାଶ୍ରିତେଷୁ ମହତାଂ ଗୁଣଦୋଷଚିନ୍ତା । ଅନ୍ୟଚ—
ତ୍ୟଜ୍ୟତେ ଯର୍ଣ ଦୋଷେଣ ଗୁଣେନ ପରିଗୃହ୍ୟତେ ।
ଏଷ ସାଧାରଣଃ ପନ୍ଥା ଆଶ୍ରୟସ୍ୟ କୁତଃ ସୁଖଂ ।

ବଲ୍ଲଭେ । ବନପ୍ରିୟ କହ ଏତେ ଯେ ।
ବିରହତାପାନଳେ ପ୍ରିୟା ଦଗଧ ଶାନ୍ତ ନ ବିଗ୍ରହ ଚିତ୍ତେ ଯେ ।୯।
ବନେ ଆସିଲ ଦିନୁ ମନେ ବିଗ୍ରହ ପଲଙ୍କଶୟନା ଏହି ଯେ ।
ବକ୍ଷବିସ୍ଥାନର ନବପଲ୍ଲବର ଶେଯେ ନ ଦିଅ ଶୁଆଇ ଯେ ।
ବଲ୍ଲଭେ । ବନପ୍ରିୟ କହ ଏତେ ଯେ ।
ବସୁମତୀ ଧୂଳି ଏବେ କର ତୂଳୀ ନିଦ୍ରା କେସ ଯିବ କେମନ୍ତେ ଯେ ॥
ବସନ୍ତଦୂତ ଏମନ୍ତ କହୁଁ ଗତ ଭାଳିଲେ ସେ କହିଗଲି ଯେ ।
ବିନ୍ଧ୍ୟେ ଥିଲି ସେନା ବିମନା ଅଙ୍ଗଦ ପ୍ରାଣ ବିସର୍ଜିବା କଲି ଯେ ।

---

ବଲ୍ଲଭେ ( କାନ୍ତଙ୍କୁ ) ଏତେ ( ଏତିକି ) କହ ( କହିବ ) ବିରହତାପାନଳେ ( ବିଚ୍ଛେଦତାପାନଳରେ ) ପ୍ରିୟା ଦଗଧ (ଦଗ୍ଧ) ହେଉଅଛୁ ଚିତ୍ତେ ଶାନ୍ତ ନ ବିଗ୍ରହ ( ଚିତ୍ତରେ ଶାନ୍ତିକି ବିଗ୍ରହ ନାହିଁ ) ।୯ ।

୧୦ମ ପଦ—ବନେ ( ବନକୁ ) ଆସିଲା ଦିନୁ ( ଅଇଲା ଦିନରୁ ) ଏହି ଯେ ( ପ୍ରିୟା ) ପଲଙ୍କ ଶୟନା ଏ, ମନେ ( ମନମଧ୍ୟରେ ) 'ଏମନ୍ତ' ବିଗ୍ରହ ବକ୍ଷ ବିସ୍ଥାନର ( ବକ୍ଷସ୍ଥଳରୂପ ) ନବପଲ୍ଲବର ଶେଯେ ( ନବପଲ୍ଲବ ଶଯ୍ୟାରେ ) ଶୁଆଇ ନ ଦିଅ * । ହେ ବନପ୍ରିୟ ! ବଲ୍ଲଭେ ଏତେ କହ ( କାନ୍ତଙ୍କୁ ଏତିକି କହିବ ) । ଏବେ ବସୁମତୀ ଧୂଳି ( ପୃଥିବୀର ଧୂଳିକି ) ତୂଳୀ ( ଶଯ୍ୟା ) କରି କେମନ୍ତ ସେ ( ପ୍ରିୟା ) ନିଦ୍ରା ଯିବ । ୧୦ ।

୧୧ଶ ପଦ—ଏମନ୍ତ କହୁଁ ( ସୀତା କହନ୍ତେ ) ବସନ୍ତଦୂତ (କୋକିଳ) ଗତ ( ଉଡିଗଲା ) । ସେ ( ସୀତା ) ଭାଳିଲେ ( ମନେ ବିଚାରିଲେ ) କହି ଗଲା ( ମୋ କହିବା କଥା କହିବାକୁ ଗଲା ) † । 'ଏହି କାଳରେ' ବିନ୍ଧ୍ୟେ ( ବିନ୍ଧ୍ୟପର୍ବତରେ ) ଥିଲେ ସେନା (ଥିବା ସେନାଙ୍କ ମଧ୍ୟରେ) ଅଙ୍ଗଦ ବିମନା ହୋଇ ପ୍ରାଣ ବିସର୍ଜିବା କଲା ( ପ୍ରଭୁ କାର୍ଯ୍ୟ ନୋହିବାରୁ ପ୍ରାଣ

---

*—ନବପଲ୍ଲବସଂସ୍ତରେଽପି ତେ ମୃଦୁ ଦୂୟେତ ଯଦଙ୍ଗମର୍ପିତଂ । ଇତି ରଘୁବଂଶେ ।

†—ଗତ, ଗଲା; ଏହା ପୁନରୁକ୍ତ ହେଲା—ତତ୍ପରିହାର ଯଥା—
ବିଷାଦେ ବିସ୍ମୟେ ହର୍ଷେ ପୁନରୁକ୍ତ ନବିଦ୍ୟତେ । ଇତି ।

ବୋଲଇଲେ । ବାଉଳାବ ନୋହୁ ସର୍ବେ ଯେ ।
ବାହୁ ପ୍ଲବନରେ କେତେଦୂର ଯିବା ଅନ୍ତ ନାହିଁ ଅର୍ଣ୍ଣବେ ଯେ ॥୧୧
ବାହୁଡ଼ରେ ପରାକ୍ରମ ହାନ ଲଜ ଘନଗର୍ଜନ ନ ସହୁ ଯେ ।
ବନ୍ଦମି ଜଳେ ଡେଇଁ ପଡ଼ ବୁଡ଼ିବା ଶରଭ ପରାସ୍ତ ହୋଇ ଯେ ;
ବୁଦ୍ଧିକ । ଶୁଣି ବୋଲେ ହନୁମନ୍ତ ଯେ ।
ବସ୍ତ୍ରରଇ ମୁହିଁ ଯିବ ଚନ୍ଦ୍ରମୁଖୀ ଠାରୁ ଆଣିମି ଉଦନ୍ତ ଯେ । ୧୨ ।
ବୋଲେ ଜାମ୍ବବ ତୋହରେ କାର୍ଯ୍ୟ ହେବ ବସ୍ତ୍ରର ରଘୁନନ୍ଦନ ଯେ
ବେଦନା ଛେଦନ କର ସଙ୍କେତ ସମର୍ପି ଅଛନ୍ତି ପୁନ ଯେ ।

---

ଗୁଡ଼ିବା କଥା ସ୍ଥିର କଲ ) । ବୋଲନ୍ତି ଆମ୍ଭେ ସର୍ବେ ( ସମସ୍ତେ ) ବାଉଳାବ ( ଜନଜନ୍ତୁ ) ନୋହୁ ( ନୋହୁ ), ବାହୁ ପ୍ଲବନରେ ( ବାହୁରେ ଉହୁଁଣ ) କେତେ ଦୂର ଯିବା 'ଏତ' ଅର୍ଣ୍ଣବ ( ସମୁଦ୍ର ) 'ଏହାର' ଅନ୍ତ ନାହିଁ ॥୧୧॥

୧୨ଶ ପଦ—ବାହୁଡ଼ିଲେ ( ଆମ୍ଭେମାନେ ବାହୁଡ଼ିଗଲେ ) ପରାକ୍ରମହାନ ( ହୀନବଳ ) ପଣ ଚସ୍ତରେ 'ଆମ୍ଭଙ୍କୁ' ଲଜ 'ହେବ' । "ଏଣୁ" ଘନଗର୍ଜନ ( ମେଘ ଗର୍ଜନ ) ନ ସହୁ ( ସହି ନ ପାର ) ଶରଭ ( ଅଠପାଦିଆ ମୃଗ ) ଜଳେ ( ଜଳରେ ) ଡେଇ ବୁଡ଼ିବା ପରାସ୍ତ ହୋଇ ( ପଡ଼ି ବୁଡ଼ି ମଲାପରି ପ୍ରାୟ ) 'ଆମ୍ଭେମାନେ' ବନ୍ଦମି ( ଡେଇଁ ପଡ଼ି ) (ବୁଡ଼ି ମରିବା) । 'କାହାକାହାଂ ଅସମ୍ଭବ ଏହାବୋଧ" । ବୁଦ୍ଧିକ (ହେମ ନଙ୍କର ଏହି ବସ୍ତ୍ରଙ୍କୁ ) ଶୁଣି ହନୁମନ୍ତ ବୋଲେ ( ହନମାନ୍ କହିଲେ ) ମୁହିଁ ବସ୍ତ୍ରରଇ ( ମୁଁ ବସ୍ତ୍ରରୁଛି ) ଯିବା । ଚନ୍ଦ୍ରମୁଖୀ ଠାରୁ ( ଚନ୍ଦ୍ର ମୁଖୀ ) ସୀତାଠାରୁ ଉଦନ୍ତ ( ବାର୍ତ୍ତା ) ଆଣିମି ॥୧୨॥

୧୩ଶ ପଦ—ଏମନ୍ତ ହନୁମାନ୍ଙ୍କ କହିବାରଂ ଶୁଣି, ଜାମ୍ବବ ବୋଲେ ( ଜାମ୍ବବାନ୍ ମନ୍ତ୍ରୀ ବୋଇଲେ ) ତୋହରେ ( ତୋହ ଦ୍ୱାରା ) ଏ କାର୍ଯ୍ୟ ହେବ, ରଘୁନନ୍ଦନ ( ରାମ ) ବସ୍ତ୍ରର ବେଦନା ( ବିରହବେଦନା ) ଛେଦନ କର ( କହୁ ) ପୁନ ( ପୁଣି ) ସଙ୍କେତ ( ମୁଦି ) ସମର୍ପି ଅଛନ୍ତି । "ଏଣୁ" ବେଗରେ ସିନ୍ଧୁ ଲଙ୍ଘନ କର ( ସମୁଦ୍ର ଲଙ୍ଘି ଯାଅ ) ଶୀଘ୍ରତ

---

୧—ବୈଶିକ ଭାବରେ ମୁଖରୁ ମୁହିଁ ବୋଲନ୍ତି ।

ବେଗରେ । ବିଲଙ୍ଘନ କର ସିନ୍ଧୁ ଯେ ।

ବିଯ୍ଯତମାର୍ଗରେ ଯାବତ ପ୍ରକାରେ ମଙ୍ଗଳ କରନ୍ତୁ ବିଧୁ ହେ ॥

ବୃକ୍ଷ ବିଦ୍ଧ ସ୍ଥିତ ଗିରି ଅଧୋଗତ ଭକ୍ଷଣେ ଉଦର ଫାଟି ଯେ

ବୀର ହନୂମାନ କରନ୍ତେ ଗମନ ବିଷମ ସମାସ୍ୟା ଘଟି ଯେ ।

ବାହୁର । ବାୟୁରେ ତରୁ ସଙ୍ଗିର ଯେ ।

ବିଶ୍ରାମୁ ମୈନାକ ବୁଡ଼ି ଭକ୍ଷୁ ଦାରି ଉଦରକୁ ସିଂହିକାର ଯେ ।୧୪।

ବଚନେ ଦେବଙ୍କ ରଚନେ ବିଘ୍ନକୁ କଦ୍ରୁ ଗଲେ ବାଟ ଗ୍ଳୁଡ଼ି ଯେ

ବିଳୁଁ ବାହାର ନା ସର୍ପଙ୍କୁ ତିଆରି ପଡ଼ନ୍ତି ବିଷମ ଧାଡ଼ି ନେ ।

---

ମାର୍ଗରେ (ଆକାଶ ପଥରେ) ୧ ବିଧୁ (ବିଷ୍ଣୁ) ଯାବତ ପ୍ରକାରେ (ଚୋନ୍ଦର ପ୍ରକାର ପ୍ରକାର) ମଙ୍ଗଳ କରନ୍ତୁ । ୧୩ ।

୧୪ଶ ପଦ—ବୀର ହନୂମାନ୍ ଗମନ କରନ୍ତେ ✽ ବିଷମ ୧ ସମାସ୍ୟା ଘଟି (ଘଟିଲା) । ବୃକ୍ଷ (ବୃକ୍ଷମାନେ) ବିଦ୍ଧ (ଆକାଶରେ) ସ୍ଥିତି (ରହିଲେ) ; ଗିରି (ପର୍ବତମାନେ) ଅଧୋ (ପାତାଳକୁ) ଗତି (ଗଲେ) । ଭକ୍ଷଣେ (ଖାଇବା ଲୋକର) ଉଦର (ପେଟ) ଫାଟିଲା । "ଏ ବିଷମ ସମାସ୍ୟା ଅଳଙ୍କାର" । ବାହୁର ବାୟୁରେ (ବାହୁ ପବନରେ) ତରୁ ସଙ୍ଗିର (ବୃକ୍ଷମାନେ ଉଡ଼ିଲେ) । ମୈନାକ (ମୈନାକ ପର୍ବତରେ) ବିଶ୍ରାମୁ (ବିଶ୍ରାମ କରନ୍ତେ) ବୁଡ଼ି "ପର୍ବତ ତଳକୁ ଗଲା" । ସିଂହିକା (ରାହୁମାତା) ଭକ୍ଷୁଁ (ହନୁମାନକୁ ଭକ୍ଷନ୍ତେ) ଉଦର ଦାରି (ତା ଉଦରକୁ ବିଦାରିଲେ) "ଏମନ୍ତେ ବିଷମ ସମାସ୍ୟା ପୂରଣ ହେଲା" । ୧୪ ।

୧୫ଶ ପଦ—ଦେବଙ୍କ ବଚନେ (ଦେବତାଙ୍କ ବଚନରେ) କଦ୍ରୁ (ନାଗମାତା) ବିଘ୍ନରୁ ରଚନେ (ରଚନା କରି) 'ନ ପାରିବାରୁ' ବାଟ ଗ୍ଳୁଡ଼ିଗଲେ । ସର୍ପଙ୍କୁ (ଆପଣା ପୁତ୍ରଙ୍କୁ) ବିଳୁଁ (ଗର୍ତ୍ତରୁ) ବାହାର ନା (ବାହାରନ୍ତୁଅ ନାହିଁ) 'କହି' ତିଆରି (ତିଆରିଲେ) । ବିଷମ ଧାଡ଼ି ପଡ଼ନ୍ତି (ବିଷମ

---

୧—ବିଧୁର୍ବିଷ୍ଣୌ ଚନ୍ଦ୍ର ମସୀତି ।

✽—କା ଶମ୍ଭୁକାନ୍ତା କମୁ ଚନ୍ଦ୍ରକାନ୍ତଃ କାନ୍ତାନନେ କଂ କୁରୁତେଭ୍ରୂକଙ୍ଗଃ କଃ ଶ୍ରୀପତିଃ କା ବିଷମାସମାସ୍ୟା ଗୌରୀମୁଖଂ ଚୁମ୍ବତି ବାସୁଦେବଃ ।

୨—ସମାସ୍ୟା ତୁ ସମାସାର୍ଥା ଇତ୍ୟମରଃ ।

ବସ୍ତୁ ଯେ । ବହୁଛନ୍ତି ରାମମୂର୍ତ୍ତି ଯେ ।
ବିଶିଖ ଧନୁ କରି ଚକ୍ର ଗଦାକୁ ଧରି ଏ କୃତ ବପଢ଼ ଯେ ।୧୫।
ବାୟୁବସୁ ପରି ଗଗନେ ସଞ୍ଚରି ତାରାଏ ଖସିଲା ପରି ଯେ ।
ବପଡ଼ିଲ ଯେ ପଞ୍ଚତନାହୁଦୂତ ସୁବେଳେ ସୁବେଳଗିରି ଯେ ।
ବିଲୋକି । ବରଣ ଶୋଭା ଲଙ୍କାର ଯେ ।
ବରଣ କଲ ମନେ ମର୍ତ୍ତ୍ୟଭୁବନେ ସବପୁର ଅଳଙ୍କାର ଯେ ।୧୬।
ବଳୟୁ ଏକ ଦ୍ୱିଅର୍ଥ ତୋଷା କ ପାଇଁ କେଉଁ କୁଣ୍ଡଳୀ ନାମିଣି ଯେ ।
ବୋଲଇ ଏଥିକ କନକକଣ୍ଠକ ଏଠାରୁ ଢ଼ୋଲଲ ଜାଣି ଯେ ।

---

ରାମସ୍ତୁ ଦଶିନ୍ତୁ), ବସ୍ତୁ ରାମ ମୂର୍ତ୍ତି ବହୁଛନ୍ତି । ଚକ୍ରଗଦା (ଏ ଦୁଇ ଆୟୁଧକୁ) ବିଶିଖ ଧନୁ ( ଧନୁଶର ) କରି ବପଢ଼ ( ଘରୁଡ଼ଲୁ ) ଏ (ସେରୁପେ) ଧରି (ମାଣ୍ଡି) କୃତ (କରିଅଛନ୍ତି) । ୧୫ ।

୧୬ଶ ପଦ—ପଞ୍ଚତିସାଧ୍ୱ ଦୂତ (ହନୁମାନ) ବାୟୁବସୁ ( ସୂର୍ଯ୍ୟ ପରି ତେଜସ୍ୱୀରୂପେ ) ଗଗନେ ( ଆକାଶରେ ) ସଞ୍ଚରି ( ଗମନ କରି ) ତାରାଏ (ଯେଉଁ ଏ ତାରା) ଖସିଲାପରି 'ଖସି' ସୁବେଳେ (ଶୁଭବେଳରେ) ସୁବେଳଗିରି ( ସୁବେଳ ପର୍ବତରେ ) ବପଢ଼ିଲ (ପ୍ରବେଶ ହେଲେ) । ଲଙ୍କାର [2]ବରଣ ( ଲଙ୍କାଗଡ଼ ପ୍ରାଚୀର ) ଶୋଭା ବିଲୋକି (ଦେଖି) ମନେ ବରଣ କଲ । (ବିଚାରିଲ) ମର୍ତ୍ତ୍ୟଭୁବନେ ( ମର୍ତ୍ତ୍ୟଭୁବନରେ ) ସବପୁର (ସମସ୍ତ ପୁରର) [3]ଅଳଙ୍କାର (ଭୂଷଣସ୍ୱରୂପ) । ୧୬ ।

୧୭ଶ ପଦ—କେଉଁ [1]କୁଣ୍ଡଳୀ (କେଉଁ କୁଣ୍ଡଳାନର ବା କେଉଁ ସୁନାରୀ

---

୧—ପାତ୍ରନ ମନେକାର୍ଟରୁ ,–ଉପସର୍ଗେଣ ଧାତୁ ଥା ବଲାଦନ୍ୟତ୍ର ନୀୟତେ ପହାପଢ଼ ସଥୋହାରବୀ ପଚ୍ଛନ୍ତ ଇତି ପ୍ରୟୋଗଃ ।

୨—ପ୍ରାକାରେ ବରଣଃ ଶାଳ ଇତ୍ୟମରଃ ।

୩—ଅଲଂ ଚିରୋଶାଳି ଅଲଂକାରଃ ।

୧—କୁଣ୍ଡଳଂ—ସୁବର୍ଣ୍ଣଂ ବଦ୍ୟତେ ଯସ୍ୟ କୁଣ୍ଡଳୀ-ସୁବର୍ଣ୍ଣବାନ ଜନଃ ବଣିକ୍ ଇତ୍ୟର୍ଥଃ ।

କୁଣ୍ଡଳଂ ନିର୍ଲସ୍ତୋ ପାଶେ କୁଣ୍ଡଳଂ କର୍ଣ୍ଣଭୂଷଣେ ।
ମଣ୍ଡଳେ କଙ୍କଣେ ଚୈବ ବ୍ୟାପୀତି କୁମୁଦାଦୟଃ ।

ବନ୍ଧାଣି । ହସ୍ତାରି ମୁଖକବାଟୀ ଯେ ।
ବାଦ୍ୟ-ନାଦ ଛଳେ ବୋଲେ ଲଗା ଲଗା ଆଜ ପଟେ କାହିଁ ହରି ଯେ
ବିରୋଧାଭାସ ଉଦୟେ ଏ ସମୟେ ଦିନ ଅବସାନ ହୋଇ ଯେ ।
ବଳାରାତି ନାକ ବିହାରକୁ ମତି ସୁର ତ୍ୱରିତେ ପଳାଇ ଯେ ।

---

ବଣିଅ) ପୃଥୀଦେବୀ ପାଇଁ କି ( କଣ ) ଏକ [1]ବଳୟ (କଙ୍କଣ) ନିର୍ମାଣି (ଗଢ଼ିଛୁ) ଏଥିକି ( ଏଥିପାଇଁ କାଏ ) କନକ କଟକ ବୋଲଇ, ଏଠାରୁ ଜାଣି ହୋଇନ୍ତି ( ଲୋକେ ଏହାକୁ ପୃଷ୍ଠ ଲଗା ବୋଲନ୍ତି )। ବନ୍ଧାଣୀ (କାରିଗର) ମୁଖକବାଟୀ ଦ୍ୱାରା ( ଙ୍କଙ୍କରେ ମୁଖ କବାଟିଟି ମେଲ୍ଲକରି ) ବାଦ୍ୟନାଦ ଛଳେ ( ବାଦ୍ୟଧ୍ୱନି ଛଳରେ ) ବୋଲେ ( ବୋଲୁଛି ) ଲଗା ଲଗା (ହେ ପୃଥ୍ୱୀ ଏ କଙ୍କଣକୁ ହସ୍ତରେ ଲଗାଅ) ଆଜ ପଟେ 'କଙ୍କଣ' କାହିଁ 'ଏମନ୍ତ ବୋଲି' 'ପୃଥ୍ୱୀଦେବୀ' ହରି 'ରହିଅଛି' 'ପଟେ ଯେଉଁଠାରେ ଲଜମାତ୍ରିବ ଏହ୍ରୁଭ୍ରବ' । ୧୭ ।

୧୮ଶ ପଦ—ଏ ସମୟେ ଦିନ ଅବସାନ (ଶେଷ) ହୋଇ ବିରୋଧାଭାସ (ବିରୋଧାଭାସରୂପ ଅଳଙ୍କାରକୁ ) ଉଦୟେ ( ଉଦୟ କଲା ) । ବିରୋଧ-[2]ବଳାରାତି ( ଇନ୍ଦ୍ର ) ନାକ ( ସ୍ୱର୍ଗ ) ବିହାରକୁ ମତି (ମନ) 'କରନ୍ତେ' ସୁର (ଦେବତା ମାନେ) ତ୍ୱରିତେ ( ଶୀଘ୍ର ) ପଳାଇ 'ଗଲେ' । ଭୀତ୍ର ( ଭୟଙ୍କ ) ବହନ ( ବେଗରେ ) ନିଡ଼ରେ (ନିଶ୍ଚିତ ଭୟରେ ବା ନିର୍ଭୟରେ) ବିଳସେ ( ବିଳସିଲେ ) ବରୁଣ (ବୃକ୍ଷ) ରକ୍ତମୟ (ରଙ୍ଗବର୍ଣ୍ଣ) ଦଶି (ଦଶନ୍ତେ) ଶୁକବ ( ଶୁକପକ୍ଷୀ ) ତୁଣ୍ଡ ( ମୁଖ ) ସତ୍ୱରେ (ଶୀଘ୍ର) ଆଉଁସି (ଆଉଁସିଲେ) । ତତ୍ପରେ—[1]ଦୋଷା (ପ୍ରଦୋଷା) ହରି (ରଜନୀ)

---

[1]—କଟକଂ ବଳୟୋଽସ୍ତ୍ରିୟାମିତ୍ୟମରଃ ।
କଟକୋଽସ୍ତ୍ରୀ ନିତମ୍ବୋଽଦ୍ରେ ର୍ବଳୟନାଂ ଦନ୍ତମଣ୍ଡଳେ ।
ସମୁଦ୍ରଲବଣେ ରାଜଧାନୀ ବଳୟସ୍ୟୋରଗ୍ରୀତି ମେଦିନୀ ।
[2]—ବଳାରାତି ଶଚୀପତି ଓତ୍ୟମରଃ ।
[1]—ବଳଂ ଗନ୍ଧରସେ ରୂପେ ସ୍ଥାମନି ସ୍ଥୌଲ୍ୟ ସୈନ୍ୟୟୋଃ ।
ପୁମାନ ହଳାୟୁଧେ ଦୈତ୍ୟପ୍ରଭେଦେ ବାଧ୍ୟପେଽପି ଚେତି ମେଦିନୀ ।

ବଳସେ । ବନ୍ଧନ ଐନ୍ଦ୍ର ମାଡ଼ରେ ଯେ ।
ବରୁଣଦଶି ରକ୍ତମସ୍ତ ଆଜ୍ଞିସି ଶୁକବ ଚୁଣ୍ଡ ସଦ୍ମରେ ଯେ ।୧୮।
ବସଜେ ଅନନ୍ତ ଚକ୍ରପାଣି ରଙ୍ଗ ତମ ବାହୁଡ଼ାକୁ ଡର ଯେ ।
ବଧାସୂକ ଦରଧ୍ୱନିକ ପଞ୍ଚାସ୍ୟ ସଦ୍ମେ ପ୍ରଦୀପକ କରି ଯେ ।
ବନ୍ଧମେ । ବନ୍ଦିତ ନୋଖ୍ୱ ମାରୁତି ଯେ ।
ବନ୍ଧ-ଧେନୁ ସଙ୍ଗେ ପୁଣ୍ୟଜନପତି ଦନ୍ତୁଁ ପୁଣ୍ୟଜନପତି ଯେ ।୧୯।

---

ଅଥବା ବଳାବୃତ୍ତି ( ପେଚ୍ଚ ) ୩ନାକ ( ଆକାଶ ) ବିହାରଙ୍କୁ ମତି (ମନ) 'କରନ୍ତେ' ସୁରୁ (ସୂର୍ଯ୍ୟ) ତ୍ୱରତେ (ଶୀଘ୍ର) ପଳାଇ (ପଳାଇଲେ) । ବନ୍ଧନ (ସତ୍ୱର) ୪ଐନ୍ଦ୍ର (କାକମାନେ) ୫ମାଡ଼ରେ (ବସାରେ) ବଳସେ (ବଳିଥିଲେ) । ବରୁଣ ଦଶି ( ପଶ୍ଚିମଦଗ • ) ରକ୍ତମସ୍ତ ( ରଙ୍ଗବର୍ଣ୍ଣ ହୁଅନ୍ତେ ) ସୂକବ ( ଉତ୍ତମ କବ ବା ପଣ୍ଡିତମାନେ ) ଚୁଣ୍ଡ ( ବଦନକୁ ) ଆଚ୍ଛିଁ (ପ୍ରଦୋଷ ହେବାରୁ କବତା ଓ ପାଠପଠନରୁ ନିବର୍ତ୍ତିଲେ । ୧୮ ।

୧୯-୨୦ଶ ପଦ—ବିବୋଧ-ଅନନ୍ତ ( ଭଗବାନ୍ ) ୧ତମ ( ରାହୁ ) ବାହୁଡ଼ାକୁ ( ବାହୁଡ଼ିବାର ) 'ଦେଖି', ଚକ୍ର ( ସୁଦର୍ଶନଚକ୍ରକୁ ) ପାଣି (ହସ୍ତରେ) "ଧରି" ଡର ( ଭୟଙ୍କର ) ରଙ୍ଗ ( ବିହାରକୁ ) ବସଜେ ( ଗ୍ରହଣଲେ) । ଅଥବା ତମ ବାହୁଡ଼ାକୁ ( ରାହୁର ବାହୁଡ଼ା ବଜାସ୍ଥକୁ) ଡର ଚକ୍ର ( ସୁଦର୍ଶନଚକ୍ର ) ଅନନ୍ତ (• ବିଷ୍ଣୁଙ୍କର ) ପାଣିରଙ୍ଗ [ହସ୍ତକ୍ରୀଡ଼ାକୁ] ବସଜେ ( ଗ୍ରହିଲ ) ପରିହାର—ତମ ( ଅନ୍ଧକାରର ) ବାହୁଡ଼ାକୁ – (ବାହୁଡ଼ିବା) ଦେଖି "ବିଚ୍ଛେଦକୁ" ଡର ଚକ୍ର ( ଚକ୍ରବାକପକ୍ଷୀ) ଅନନ୍ତ ପାଣି ( ଆକାଶ ଜଳ ) ରଙ୍ଗ ( ବିହାର ) ବସଜେ (ଗ୍ରହିଲା) । ବିରୋଧ—ପଞ୍ଚାସ୍ୟ ( ସିଂହ ) ସଦ୍ମେ ( ଗୃହରେ ) ଦରଧ୍ୱନିକ (କାତର ଧ୍ୱନିକ) ପ୍ରଦୀପକ କର ( ପ୍ରକାଶ କରି ) ବଧାସୂକ ( ବିଧାନ କଲା )

---

୩ — ଅକାଶେ ବିହବେ ନାକ ଇତ୍ୟମରଃ ।
୪ — ଐନ୍ଦ୍ରଃ କାକେ ଜୟନ୍ତେ ନା ଇତି ମେଦନୀ ।
୫ — କୁଲାୟୋ ନୀଡ଼ସସ୍ତ୍ରିୟା ମିତ୍ୟମରଃ ।
୧ — ତମୋ ଧ୍ୱାନ୍ତେଗୁଣେ ଶୋକେ କ୍ଳୀବଂ ଵା ନା ବିଧୁନ୍ତୁଦେ ।
ଇତି ମେଦନୀ ।

ବଞ୍ଚକ ବିଡ଼ାଳ ଶ୍ୱାନ ଏହି ସ୍ୱନ କେ ଗଲ କେ ଗଲ ବହି ଯେ
ବଳିମୁଖ ପର ମୁଖତ ଦଶିଲ କପାଟ କଲଲେ କହି ଯେ ।
ବାୟୁଜ । ବିଗୃରଇ ତାର ମତି ଯେ ।
ବାସୁକବିଷ କାଳିନ୍ଦୀଜଳ ଭ୍ରମେ ପିଇ ବାଞ୍ଛା କରେ ଶାନ୍ତ ଯେ ୨୦

---

ଅଥବା ପଞ୍ଚାସ୍ୟ ସଦ୍ମେ (ସିଂହଘରେ) କଷ୍ଟ ( ହସ୍ତୀ ) ଦରଧ୍ୱନ ପ୍ରଦୀପକ ( କାତର ଶବ୍ଦ ପ୍ରକାଶର ) ବିଧାସ୍ୱନ (ବିଧ ନ କଲ) ପଶଦ୍ୱାର—ପଞ୍ଚାସ୍ୟ ସଦ୍ମେ ( ଶିବାଳୟରେ ) 'ସେବକମାନେ' ଦରଧ୍ୱନ (ଶଙ୍ଖଶବ୍ଦ) ପ୍ରଦୀପକ (ପ୍ରକାଶ) କର ବିଧାସ୍ୱନ ( ବିଧାନ କଲେ ) । 'ଏମନ୍ତ ସନ୍ଧ୍ୟା ସମୟରେ' ବୈଦେହୀ ଖୋଜି (ସୀତା ଖୋଜିବାକୁ) ମାରୁତି ( ହନୁମାନ ) ବିଦିତ ନୋହି ( ଛଦ୍ମ ବେଶରେ ) ବତ୍ସା ( ବାଛୁରି ) ଧେନୁ (ଗୋରୁ) ସଙ୍ଗେ ୨ ଦୁଣ୍ୟଜନ ପତି ଦୃଗୁଁ (ଦ୍ୱାର ନିକଟରୁ) ବିଜେ (ବାହାରିଲେ) । ପୁଣ୍ୟଜନପତି ( ଦ୍ୱାରପାଳ ରାକ୍ଷସମାନେ ) ୩ବଞ୍ଚକ (ବିଲୁଆ) ୪ବିଡ଼ାଳ (ବିରାଡ଼ି) ଶ୍ୱାନ ( କୁକୁର ) 'ଏ ତିନି ଜାତି ମଧ୍ୟରୁ' କେ ଗଲ କେ ଗଲ ଏମନ୍ତ ସ୍ୱନ ( ଧ୍ୱନି ) ବହିଲେ ( କଲେ ) । ୫ବଳିମୁଖ (ବାନର) ପର ମୁଖ ତ ଦଶିଗଲା । ଏରୂପେ ବଳି (ଚନ୍ଦ୍ରାକର) କବାଟ କଲଲେ ! 'ଏହା ଦେଖି' ବାୟୁଜ ( ହନୁମାନ ) ତା ମତିରେ (ତା ମନ ମଧ୍ୟରେ) ବିଗୃରେ । ବାସୁକି ବିଷ ( ବାସୁକି ନାଗ'ର ବିଷକୁ ) କାଳିନ୍ଦୀ ଜଳ ଭ୍ରମେ (କାଳିନ୍ଦୀ ହ୍ରଦ ଜଳ ମନେ କରି) ପିଇ ବାଞ୍ଛା ଶାନ୍ତ କରେ (କଲେ)· 'କାଳିନ୍ଦୀ ଜଳ ମନେ କରି ବିଷପାନି କରି ପ୍ରାଣୀ ମଲା ପରି ଏ ମୋତେ ଦ୍ୱାର ଛାଡ଼ିଦେଇ ନାଶ ଯିବେ ଏହିଭାବ' । ୧୯ । ୨୦ ।

---

୨—ଅଥ ପୁଣ୍ୟଜନୋ ଯକ୍ଷେ ରକ୍ଷସେ ସଜ୍ଜନେଽପି ଚ ଇତି ମେଦିନୀ ।
୩—ବଞ୍ଚକସ୍ତୁ ଋଲେ ଧୂର୍ତ୍ତେ ଗୃହଜନ୍ତୌ ତ ଜମ୍ବୁକେ ଇତି ମେଦିନୀ ।
୩—ଓତୁର୍ବିଡ଼ାଲୋ ମାର୍ଜାର ଇତି ।
୪ – ଶାଖାମୃଗବଳୀମୁଖା ଇତ୍ୟମରଃ ।

ବିଶ୍ୱ ପ୍ରଳୟ କଜ୍ଜ୍ୱଳଜଳେ ହେଲ ପ୍ରାୟ ଧ୍ୱାନ୍ତ ନାଶା ଘୋଟି ଯେ ।
ବାଜଇ କିଙ୍କିଣୀ ଭ୍ରମଇ ଲଙ୍କିମା ବାଟେ ହନୂମାନ ଭେଟି ଯେ ।
ବୋଇଲ । ବାନର ତୁ ଯାଉ କେଉଁଣେ ରେ ।
ବିଧା ବିଧାନେ ଅରକ୍ଷିତ ପର୍ବପ୍ରେ ମୂର୍ଚ୍ଛିତ ହୋଇଲ କ୍ଷଣେ ଯେ ।୨୧।
ବହି ଚେତା କହି ଗ୍ରାମଦେବା ମୁହିଁ ତୋ ତରେ ହେଲି ପରାଭବା ଯେ ।
ବେଧା କହୁଛି ଦଶମୂର୍ଦ୍ଧ୍ୱା ଅଶୁଭସୂଚକ ଲେଉଡ଼ ପାର୍ଥିବା ଯେ ।
ବାୟୁଜ । ବଣିକମାନଙ୍କୁ ଗୃହିଁ ଯେ ।
ବିଗୃହରେ କୁବେରର ନବନଧି ଯେଉଁ ଠାବେ ଠାବେ ଅଛି ରହି ଯେ ॥୨୨

---

୨୧ଶ ପଦ—ବିଶ୍ୱ (ସଂସାର) କଜ୍ଜ୍ୱଳ ଜଳରେ (କଳାପାଣିରେ) ପ୍ରଳୟ ହେଲ ପ୍ରାୟ ଧ୍ୱାନ୍ତ ନଶା ( ଅନ୍ଧାର ରାତ୍ର ) ଘୋଟି ( ଘୋଟିଲ ) । କିଙ୍କିଣୀ (କ୍ଷୁଦ୍ର ଘଣ୍ଟି) ବାଜଇ (ବାଜୁଥିବା) ଲଙ୍କିମା (ଲଙ୍କାଦେବୀ) ଭ୍ରମଇ ( ଘୂରିବାରେ ଭ୍ରମନ୍ତେ) ବାଟେ 'ଯାଇ' ହନୂମାନ୍ ଭେଟି (ଭେଟିଲ) । 'ସେ ଲଙ୍କାଦେବୀ' ବୋଇଲ ରେ ବାନର ! ତୁ କେଉଁଣେ ଯାଉ ( କୁଆଡ଼େ ଯାଉଛ ) ? 'ଏମନ୍ତ ପଚାରିବାରୁ' 'ହନୂମାନ୍ ବିଧା ( ବିଧାଏ ) ବିଧାନେ ( ମାରନ୍ତେ ) ସେ (ଲଙ୍କାଦେବୀ) ଅରକ୍ଷିତ ପର୍ବପ୍ରେ (ଅରକ୍ଷଣ ପ୍ରାପ୍ତ) କ୍ଷଣେ (କ୍ଷଣମାତ୍ର) ମୂର୍ଚ୍ଛିତ ହୋଇଲ । ୨୧ ।

୨୨ଶ ପଦ—ଚେତା ( ଚେତନା ) ବହି ( ପାଇ ) କହି (କହିଲ), ମୁହିଁ ଗ୍ରାମଦେବୀ ( ଲଙ୍କା ଗ୍ରାମ ଦେବୀ) ତୋ ତରେ ( ଏବେ ତୋହ ଦ୍ୱାରା ) ପରାଭବା ହେଲ ( ପରାଭବ ପାଇଲି ) । ବେଧା ( ବିଧ ତା ) କହୁଛି ( କହିଥିଲେ କହୁଅଛି) 'ଯେଉଁଦିନ ତୋତେ ବାନର ପରାଭବ କରିବ ସେହି ଦିନଠାରୁ ଦଶମୂର୍ଦ୍ଧ୍ୱା ( ରାବଣର ) ଅଶୁଭ ସୂଚକ 'ଜାଣିବ' । 'ଏବେ ଯା' ପାର୍ଥିବା (ସୀତାଙ୍କୁ) ଲେଉଡ଼ ( ଖୋଜ ) । 'ତଦନ୍ତେ' ବାୟୁଜ (ହନୂମାନ୍) ବଣିକମାନଙ୍କ ଗୃହିଁ ବିଗୃହରେ କୁବେରର ନବନଧି ( ପଦ୍ମାଦି ନବସଂଖ୍ୟକ ନଧି ) ଯେଉଁ ଠାବେ ଠାବେ (ସ୍ଥାନେ ସ୍ଥାନେ ) ରହିଅଛି । ୨୨ ।

ବିପଣି ଗୃହ୍ନଁ ପୁଣି ପୁଣି ଭାଳଇ କପାଁ ସିନ୍ଧୁ ରତ୍ନାକର ହେ ।
ବେଦାଧ୍ୟାନ ଶୁଣି ମନେ ମନେ ଗୁଣି ଏହି ମୂର୍ଖ ବିଧାତାର ଯେ
ବଡ଼ଭୀ । ବିଲୋକି ଭ୍ରମ ଉପୁଜେ ଯେ ।
ବିବୁଧପର୍ବତ ଶତଶତ ସତ ନାନା ରତ୍ନଶୃଙ୍ଗେ ରାଜେ ହେ ।୨୩।
ବୃଥା ଅଶ୍ୱକୁ ହୟଚୟ ହ୍ରେଂସାରେ ପ୍ରଶଂସା ହିଁ ନକରନ୍ତି ଯେ ।
ବାରଣଗଣ ଅନୁକ୍ଷଣ ଦନ୍ତରେ ଦିଗଦନ୍ତିଙ୍କି ହସନ୍ତି ଯେ ।

---

୨୩ଶ ପଦ—ବିପଣି (ବଜାରକୁ) ଗୃହ୍ନି ପୁଣି ପୁଣି ଭାବଇ ସିନ୍ଧୁ (ସମୁଦ୍ର) କପାଁ ରତ୍ନାକର ବୋଲାଉଛି । 'ଏହି ବିପଣିତ ରତ୍ନାକର (ରତ୍ନଖଣି)' ବେଦାଧ୍ୟାନ (ବେଦପାଠ) ଶୁଣି ମନେ ମନେ ଗୁଣି ହୋଇଁ ବୋଇଲା ଏହି ବିଧାତାର ମୂର୍ଖ । ୧ବଡ଼ଭୀ ( ଚନ୍ଦ୍ରଶାଳା ପୁରକୁ ) ବିଲୋକି ( ଦେଖି ) ୨ଭ୍ରମ ଉପୁଜେ (ଭ୍ରାନ୍ତ ଜାତ ହେଲା) । ବିବୁଧ ପର୍ବତ ( ମେରୁ ) 'ପବନରେ ଉଡ଼ି ଆସି ଏଠାରେ ପଡ଼ିଛି' 'ଏକଥା' ସତ, ମେରୁ ଶତ ଶତ 'ନାନା ପ୍ରକାର' ରତ୍ନ ଶୃଙ୍ଗେ (ଶୃଙ୍ଗରେ) ରାଜେ ( ଶୋଭୁଥାଏ ) 'ଏ ବଡ଼ଭୀ ସବୁ ସେହି ମେରୁର ନାନାପ୍ରକାର ଶତ ଶତ ରତ୍ନଶୃଙ୍ଗ ଏହିରୂପ ଭ୍ରମ ଉପୁଜିଲା ଏହି ଭାବ' । ୨୩ ।

୨୪ଶ ପଦ—ହୟଚୟ ( ଅଶ୍ୱସମୂହ ) ବୃଥା ଅଶ୍ୱକୁ ('ଉଚ୍ଚୈଃଶ୍ରବାକୁ') ୧ହ୍ରେଂସାରେ (ଶ୍ରେଷ୍ଠ ହିଁ ଶବ୍ଦରେ—ହ୍ରେଷାରବରେ) କିମ୍ବା ହିଂସାରେ (ହିଂସାବଶ୍ୟ) ପ୍ରଶଂସା ନ କରନ୍ତି ହି (ନିଶ୍ଚୟ) 'ଆମ୍ଭଠାରୁ ଅଧିକ ବୋଲି ବୋଲନ୍ତି ନାହିଁ ଏହିଭାବ' । ବାରଣଗଣ (ଗଜସମୂହ) ଦନ୍ତରେ (ଦନ୍ତଦେଖାଇ) ଦିଗଦନ୍ତିଙ୍କି (ଦିଗହସ୍ତିଙ୍କୁ) ହସନ୍ତି (ଉପହାସ କରନ୍ତି) । 'ଆମ୍ଭଦନ୍ତରୁ ତାଙ୍କ ଦନ୍ତ ସୁନ୍ଦର ନୋହେ ବୋଲି ହସୁଛନ୍ତି ଏହିଭାବ' । ବିମାନ (ବିମାନ ସବୁ ଦେଖି) ବାଞ୍ଛା ତ-

---

୧—ବଡ଼ଭୀଚନ୍ଦ୍ରଶାଳିକା ଇତି ତ୍ରିକାଣ୍ଡଶେଷଃ ।
୨—ଭ୍ରାନ୍ତି ମିଥ୍ୟା ମତିଭ୍ରମ ଇତ୍ୟମରଃ ।
୩—ହସ୍ତିନ୍ତର୍ଥେ ମୁଣ୍ଡିତମୁଣ୍ଡଂ-ଯସ୍ମିନ୍ ଙ୍ଗଢେ ହ୍ରେଂ ହ୍ରୁଁ ତୁଣ୍ଡଂ । ଇତି କାଳିଦାସ କଥା । ହେଷା ହ୍ରେଷା ଚ ନିସ୍ୱନଂ ଇତ୍ୟମରଃ ।

ବିମାନ । ବାନ୍ଧିଲେ ସ୍ୱର୍ଗମଣ୍ଡପ ଯେ ।
ବଇଜୟନ୍ତ ଅସମ କହେ ଚହଚଳନେ ରଥକଳାପ ଯେ ।୨୪ ।
ବିସୁଦ୍‌ଗଙ୍ଗା ବାଚ ରୁଚିକି ଧରିବା ପାଇଁ ଚିରାଳ ବଳସି ଯେ ।
ବିଶାଳ କକୁଦ ଉଷ୍ଟ୍ରଙ୍କର ଗୃହୁଁ ଶୈଳୁଁ ଗଣ୍ଡଶୈଳ ଖସି ଯେ ।
ବାୟୁଜ । ବାସେ ବାସେ ପଶି ଖୋଜି ଯେ ।
ବୂଲ ଆସେ ପାବ ସାନ୍ତ୍ୱନ୍ତ ଉଆସ ସୀତାଆଶେ ଚିତ୍ତ ମଜ୍ଜି ଯେ ।୨୫ ।

(ବାନ୍ଧିଲେ) ୨କ ସ୍ୱର୍ଗମଣ୍ଡପ (ସ୍ୱର୍ଗମଣ୍ଡପ କୁତ୍ସିତ) । ସ୍ୱର୍ଗମଣ୍ଡପଠାରୁ ବିମାନସବୁ ଅଧିକ ଶୋଭା ଧଶେ ଏହିଭାବ । ଚହଚଳନେ (ଚକର ଶବ୍ଦ ଦ୍ୱାରା) ରଥକଳାପ (ରଥସମୂହ) କହେ (କହନ୍ତି) ୩ବଇଜୟନ୍ତ (ବୈଜୟନ୍ତ—ଇନ୍ଦ୍ରଙ୍କ ପ୍ରାସାଦ) ଅସମ (ଆମ୍ଭଙ୍କୁ ସମାନ ନୁହେଁ) । ୨୪ ।

୨୫ଶ ପଦ—୧ବିସୁଦ୍‌ଗଙ୍ଗା (ଆକାଶଗଙ୍ଗା) ବାଚରୁଚିକି (କିହ୍ୱଗ୍ରୀଛବିକି) ଧରିବା ପାଇଁ (ମନେକରି) ଚିରାଳ ( ପତାକାମାନେ ) ବଳସି (ଉଡ଼ୁଛନ୍ତି) ଉଷ୍ଟ୍ରଙ୍କର (ଓଟଙ୍କର) ବିଶାଳ (ବଡ଼) କକୁଦ ( କୁଜକୁ ) ଗୃହୁଁ 'ବିଗୃହକୁ' ଶୈଳୁଁ (ପର୍ବତରୁ) ୨ଗଣ୍ଡଶୈଳ (ପ୍ରସ୍ତରଖଣ୍ଡମାନେ) ଖସି "ଅଛନ୍ତି କି" ୮ବାୟୁଜ (ହନୁମାନ) 'ଏରୂପେ ଦେଖି ଦେଖି' ବାସେ ବାସେ (ଘରେ ଘରେ) ପଶି ଖୋଜି (ଖୋଜିଲେ) ସୀତାଆଶେ ( ସୀତାଙ୍କୁ ଦେଖିବା ଆଶାରେ )

୨—କୁତ୍ସିତୋ ନୃପଃ କିଂ ନୃପଃ—ତଦୁକ୍ତଂ ଭାରବୌ-
ସ କିଂ ସଖା ସାଧୁ ନ ଶାସ୍ତି ଯୋଽଧିପଂ ହିତାନ୍ନ ଯଃ
ସଂଶୃଣୁତେ ସ କିଂ ପ୍ରଭୁଃ । ଇତି ।
୩—ସ୍ୟାତ୍ ପ୍ରାସାଦୋ ବୈଜୟନ୍ତ ଇତ୍ୟମରଃ ।
୧—ମନ୍ଦାକିନୀ ବିୟଦ୍‌ଗଙ୍ଗା ଇତ୍ୟମରଃ ।
୨—ଗଣ୍ଡଶୈଳାସ୍ତୁ ଚ୍ୟୁତାଃ ସ୍ଥୂଲୋପଳାଦିରେ ଶତ୍ୟମରଃ ।
୩-ଏଠାରେ ଉତ୍ପ୍ରେକ୍ଷାଗମ୍ୟୋତ୍ପ୍ରେକ୍ଷା ।-ଇବାଦିକ ପଦାଭାବେଗମ୍ୟୋତ୍ପ୍ରେକ୍ଷା ।
ପ୍ରତୀୟତେ ଇତ୍ୟଲଂକାରେ ।
୩--ସାମନ୍ତଃ ସ୍ୟାଦଧୀଶ୍ୱର ଇତ୍ୟମରଃ ।

ବଲ୍ଲିକା ପାଦପ ଜଡ଼ିତ ସ୍ୱରୂପ ଭଲ୍ଲୀଭାବ ଜାସ୍ୱାପତ୍ତି ହେଲେ ।
ବିଭୂଷିତ ପୁଷ୍ପଗୁଚ୍ଛେ ହୋଇଥିଲେ ମଧ୍ୟ ଗର୍ଭରେ ଧାପତି ଯେ ।
ବାୟୁଜ । ବିଳମ୍ବ ନ କର ଧାଇ ଯେ ।
ବାତ ଯେମନ୍ତ ସୂରଭି ଦେଇ ମନ୍ଦଗତିକ ପ୍ରଗୃହଥାଇ ଯେ ।୨୭।
ବାସବଜିତ କୁମ୍ଭକର୍ଣ୍ଣ ଇତ୍ୟାଦି ବାସବରେ ଭ୍ରମି ଗଲି ଯେ ।
ବାସରମୁଖ ଯୋ ଶୋଭ ରତନପ୍ରଦୀପରେ ସେ ହୋଇଥିଲି ଯେ ।

---

ତେଣୁ ମଣ୍ଡି 'ଥିବାରୁ' ଏମାନଙ୍କ ହୃଆସ (ଧାଆନ୍ତେ ଉଆସରେ) ବୁଲିଆସେ ।୨୫

୨୬ଶ ପଦ—ବଲ୍ଲିକା (ଲତା) ପାଦପ (ବୃକ୍ଷ) ଜଡ଼ିତ 'ହେଲ' ସ୍ୱରୂପ ¹ଜାସ୍ୱାପତ୍ତି (ପନ୍ନଟନୀ) ଲତା ଭଳି 'ହୋଇ ଦେଖା ଯାଇଥିଲେ । 'ଲତା ପାଦପ ଯେରୂପ' ମଧ୍ୟ ଗର୍ଭରେ (ମକରନ୍ଦ ପୂର୍ଣ୍ଣ) ²ପୁଷ୍ପଗୁଚ୍ଛେ (ପୁଷ୍ପସ୍ତବକରେ) ଧାପନ୍ତି (ପ୍ରାପ୍ତି ପାଇ) ବିଭୂଷିତ ହୋଇଛନ୍ତି 'ପତିପତ୍ନୀ ସେରୂପ' ମଧ୍ୟ ଗର୍ଭରେ (ମଦ୍ୟପାନ କରି) ଧାପ୍ତି ପାଇ ³ପୁଷ୍ପଗୁଚ୍ଛେ (ଫୁଲପେଣ୍ଡାରେ ଓ ମୁକ୍ତାମାଳରେ) ବିଭୂଷିତ ହୋଇଅଛନ୍ତି । ବାୟୁଜ (ହନୁମାନ୍) 'ଏରୂପରେ ଖୋଜ ଖୋଜ' ବାତ (ପବନ) ଯେମନ୍ତ (ଯେରୂପ) ସୁରଭି (ସୁବାସିତ) ଦେଇ ମନ୍ଦଗତିକି ପ୍ରଗୃହ ଦେଇ (ହଅତ) 'ତେମନ୍ତ' ବିଳମ୍ବ ନକରି 'ଆସ ଆସ', ଯାଇ(ଯାଏ)।୨୭।

୨୮ଶ ପଦ—ବାସବଜିତ (ଇନ୍ଦ୍ରଜିତ) କୁମ୍ଭକର୍ଣ୍ଣ ଇତ୍ୟାଦି (ପ୍ରଭୃତିଙ୍କ) ବାସବରେ (ପ୍ରଧାନ ଗୃହମାନଙ୍କରେ) ଭ୍ରମି (ଖୋଜି) ଗଲେ । ସେ (ଗୃହସବୁ) ରତନ ପ୍ରଦୀପରେ ( ରତ୍ନାଲୋକରେ ) ⁴ବାସରମୁଖ (ପ୍ରଭାତର) ଯୋଖ (ସମାନ) ଶୋଭା ହୋଇଥିଲ । 'ଉଦ୍ଧୃଁ ଥିବା' ବାଲା-

---

¹—ଦମ୍ପତୀ ଜମ୍ପତୀ ଜମ୍ପତୀ ଜାୟାପତୀ ଭର୍ତ୍ତାରୌ ଚ ତୌ ଇତ୍ୟମରଃ ।
²—ସ୍ୟାଦ୍‌ଗୁଚ୍ଛକସ୍ତୁ ସ୍ତବକ ଇତ୍ୟମରଃ ।
³—ହାରଭେଦା ଯଷ୍ଟିଭେଦା ଗୁଚ୍ଛଗୁଚ୍ଛାର୍ଦ୍ଧ ଗୋସ୍ତନାଃ ଇତ୍ୟମରଃ ।
ଦ୍ୱାତ୍ରିଂଶ ଯଷ୍ଟିକୋ ଗୁଚ୍ଛ ଇତି ।
⁴—ପ୍ରତ୍ୟୁଷୋଽହର୍ମୁଖଂ କଲ୍ୟ ମିତ୍ୟମରଃ ।

ବାୟୁଜ । ବଳାଧିମାଙ୍କ ଲୋକନେ ଯେ ।
ବିବେକ ଏ ସ୍ୱର୍ଗେ ନ ଥିବେ ନୋହିବେ ରାମବଲ୍ଲଭା ସମାନେ ଯେ ।୧୭
ବାସେ ମୂର୍ଚ୍ଛିଜାଣ୍ଠ ମାଳଣ୍ଠ ସେବଣ୍ଠ କେତକୀ ଭୁଲେ କି ସର ଯେ ।
ବାସନ୍ତାକରେ ଅତ୍ୟନ୍ତ ମନୋହରେ ଯେମନ୍ତ ପ୍ରକାରେ ଜଳ ଯେ ।
ବାୟୁଜ । ବଳ୍ଗୁମାଳୀ ପୁରେ ମିଳ ଯେ ।
ବିରଚନ ଶଯ୍ୟାମାନ ସ୍ଥାନେ ସ୍ଥାନେ ଶୋଇଛନ୍ତି ଧବ୍ୟବାଳୀ ଯେ ।୧୮
ବାରଣ ପଦ୍ମାବନ ନ୍ଦିହୁଁ କି ଶେଷସବେବରେ ଆସି ଯେ ।
ବାଳ ନୀଳିମାଳ ଅସ୍ତ ବ୍ୟସ୍ତ ଜଘନ ପୁଳିନ ଅଳପ ଦିଶି ଯେ ।

---

ସିମାଙ୍କ ଲୋକନେ ( ବଳାସ୍ୱବଣ୍ଠ ସ୍ତ୍ରୀମାନଙ୍କୁ ଦେଖି ) ବାୟୁଜ ( ହନୁମାନ ) ବିବେକ ( ବିଚାର ) 'କଲେ' ଏ ( ଏପରି ସ୍ତ୍ରୀ ) ସ୍ୱର୍ଗେ ( ସ୍ୱର୍ଗପୁରରେ ) ହିଁ ଥିବେ । 'କେବଳ' ରାମବଲ୍ଲଭା ( ସୀତାଙ୍କ ) ସମାନେ ନୋହିବେ ।୧୭।

୧୮ଶ ପଦ—କାଣ୍ଠ ( କାଞ୍ଚି ) ମାଳଣ୍ଠ ସେବଣ୍ଠ 'ଏ ଫୁଲସବୁ' ବାସେ ( ବାସନାରେ ) ମୂର୍ଚ୍ଛି 'ହୋଇ ମଧୁ' କେତକୀ ଭୁଲେ ସରେ କି ? ( ଅମାନୁ-ନୁହନ୍ତି ) । ବାସନ୍ତାକରେ ( ବସନ୍ତଋତୁ ମଧ୍ୟରେ ) ଜଳ ( ଜଳବସ୍ତୁ ) ଯେମନ୍ତ ପ୍ରକାରେ ( ଯେଉଁପରି ) ମନୋହରେ ( ମନକୁ ହରଣ କରେ 'ସେମନ୍ତ ଅନ୍ୟାନ୍ୟ ନୁହେଁ' । 'ସେହିପରି ସୀତା ସୌନ୍ଦର୍ଯ୍ୟକୁ ଲଙ୍କା ବଳାସିନୀ ସବୁ ନ ହେବେ ଏମନ୍ତ ବିଚାରି' ବାୟୁଜ ( ହନୁମାନ ) ବଳ୍ଗୁମାଳୀ-ପୁରେ ( ଗୃହପୁରେ ) ମିଳ 'ଦେଖିଲେ' ସ୍ଥାନେ ସ୍ଥାନେ ଶଯ୍ୟାମାନ ବିରଚନ କରି ଧବ୍ୟବାଳୀ ( ଧବ୍ୟସ୍ତ୍ରୀମାନେ ) ଶୋଇଛନ୍ତି । ୧୮ ।

୧୯ଶ ପଦ—'ସେ ସ୍ତ୍ରୀମାନଙ୍କୁ ଦେଖି ନିତ୍ରପ୍ରେକ୍ଷା କରୁଅଛୁ' ଶେଷ ସବେବରେ ( ଶଯ୍ୟାରୂପ ପୋଖରୀରେ ) 'ଜ ଟିଥିବା' ପଦ୍ମାବନ (ପଦ୍ମିନୀ-ସ୍ତ୍ରୀରୂପ ପଦ୍ମବନକୁ ) ବାରଣ 'ତୁଲ୍ୟବାରଣ' ଆସି ମନ୍ଥିଛି କି ? । 'ବାଳ-କନା' ବାଳନୀଳିମାଳ ( କେଶରୂପ ଶିଉଳୀ ) ଅସ୍ତବ୍ୟସ୍ତ ( ଇତସ୍ତତଃ ହୋଇଥିବା ) ଜଘନ ପୁଳିନ ଅଳପ ( କମ୍ପିତରେ ) ଦିଶି ( ଦିଶୁଛି ) ; ତାହାଯୁ ମଧ ( ସ୍ତ୍ରନମଣ୍ଡ କସ୍ତୁରୀ ) 'ଖାଳରେ' କର୍ଦ୍ଦମ ( କାଦୁଅ ) 'ହୋଇ' ବ୍ୟାପ୍ତ ( ବିଶେଷରେ ବ୍ୟାପ୍ତ ହୋଇଅଛି ) । ବିଚ୍ଛିନ୍ନ ( ଛିଡ଼ିଥିବା ( ମୁକୁତା

ବର୍ଣ୍ଣ । ବାତାସୁଂମନ୍ଦ କନ୍ଦର୍ପ ଯେ ।
ବହୁଟନ୍ତ ହାରମୁକ୍ତା ହସୁଅଛି କଳୀ କହ୍ଲାର କୁସୁମ ଯେ ।୨୯।
ବାହୁ ଟେକ ହସ୍ତ ଛନ୍ଦକେ ଅଳସେ ଅବଶେ ସେ ଯେବେ ଶୋହେ ଯେ
ବାଟେ ଉପୁଡ଼ି ସନାଳପଦ୍ମ ଦଶେ କୁଚ ପୃଥୁ କନ୍ଦ ଦୁଇ ଯେ ।
ବାମା କେ । ବଜୃମ୍ଭିତ ହୋଇ ବସେ ଯେ ।
ବିକସି ଆସିଲ କୋକନଦ ଛବ ଅଙ୍ଗୀକାର କରି ଆସେ ଯେ ।୩୦।
ବନିତା କେ ରତିଶ୍ରମେ ଖରଶ୍ୱାସ ମୁଞ୍ଚିବାରେ ନାସା ଫୁଲ ଯେ ।
ବଳିଖି ଯନ୍ତ୍ର ତାଉଛି କ କାମର ଲୋହଶର ଗଡ଼ା ଭଲି ଯେ ।

---

୧ହାର (ମୁକ୍ତାମଳା) କହ୍ଲାର କୁସୁମକଳୀ (କଇଁଫୁଲ କଢ଼ିକି) ହସୁଅଛି । ୨୯ ।

୩୦ଶ ପଦ—କେ (କେଉଁ ସ୍ତ୍ରୀ) ଅଳସେ (ଅଳସରେ) ଅବଶ (ଅବଶ-ହୋଇ) ବାହୁ ଟେକ ହସ୍ତ ଛନ୍ଦି (ଛନ୍ଦକେ) ସେ ଯେବେ (ସେହିରୂପରେ) ଶୋଭି (ଶୋଭା ପାଉଅଛି) । 'ତା ଦେଖି ବଚୃରିଲ' ସନାଳ (ନାଡ଼ସହିତ) ପଦ୍ମ ବାଟେ (ପବନରେ) ଉପୁଡ଼ି (ଉପୁଡ଼ିଯିବାରୁ) ପୃଥୁ (ପୃଥୁଳ) କୁଚ କନ୍ଦ (ପଦ୍ମମୂଳପରି) ଦଶେ (ଦଶିଲା) । କେ ବାମା (କେଉଁ ସ୍ତ୍ରୀ) ବିଜୃମ୍ଭିତ ହୋଇ (ହାଇମାରି) ବସେ । 'ସେତେବେଳେ ତା' ମୁଖ' ବିକସି ଆସିଲ (ଫୁଟିଆସୁଥିବା) କୋକନଦ (ରକ୍ତପଦ୍ମ) ଛବ (ଛବିକି) ଆସେ (ମୁଖରେ) ଅଙ୍ଗୀକାର କରି (ସ୍ୱୀକାର କଲପରି) । ୩୦ ।

୩୧ଶ ପଦ—କେ ବନିତା (କେଉଁ ସ୍ତ୍ରୀ) ରତିଶ୍ରମେ ଖରଶ୍ୱାସ ମୁଞ୍ଚିବାରେ (ଛାଡ଼ିବାରେ) ନାସା (ନାକପୁଡ଼ା) ଫୁଲ 'ଯାଉଛି' । 'ତା ଦେଖି ଏମନ୍ତ ଉତ୍ପ୍ରେକ୍ଷା କଲେ' କାମର (କନ୍ଦର୍ପର) ଲୋହଶର ଗଢ଼ା-ହେବ ଭଳି ବଳିଖି (ସେ ସ୍ତ୍ରୀର ଯନ୍ତ୍ର ନାକପୁଡ଼ା ଫୁଲରୂପ ଯନ୍ତ୍ରରେ) ତାଉଛି କି ? । ପୟୋଧରେ (ପୟୋଧରରେ) ନଖ ଚିହ୍ନ ବୃଦ୍ଧି ବଢ଼ି (ବଢ଼ିବାରୁ) ବଉଳୀରେ (ଅଞ୍ଚଳରେ) ରୂଙ୍ଗ ସୂଚରକେତୁ

---

୧— ହାରେ ମୁକ୍ତାବଳୀ ଦେବଚ୍ଛନ୍ଦୋଽସୌ ଶତୟଷ୍ଟିକ ଇତ୍ୟମରଃ ।

ବକ୍ଷୋଜେ । ବସି ନଖଚନ୍ଦ୍ର ଗୃହଁ ଯେ ।
ବନ୍ତଖଣ୍ଡରେ ରଙ୍ଗ ସ୍ଥିତର କେତୁ କି ରୁଚ ଶୃଙ୍ଖଳ ନ ବନ୍ଧେ ଯେ ।୩୧
ବନ୍ଧଭେଦ ନ କଳ୍ପ ପ୍ରାପ୍ତ କେଉଁ କେଉଁ-ଶେଯ ସୁରଞ୍ଜନ ଯେ
ବରବର୍ଣ୍ଣିନୀସଙ୍ଖ୍ୟା ଲାକ୍ଷା ଅଙ୍କିତ ଘନସାର ସୁଅଞ୍ଜନ ଯେ ।
ବ୍ୟକ୍ତକେ । ବ୍ୟକ୍ତକେ ଭ୍ରମାଏ ତହିଁ ଯେ ।
ବଣ୍ଣ୍ୟପୂକ ଚନ୍ଦକାର ହୋଇଛି କି ଭାବଣ ବନକେ ଲନ୍ଧ ଯେ ।୩୨।
ବର୍ଣ୍ଣେ ଶ୍ୟାମା ହୋଇ ସମସ୍ତେ ଗୋଟିଏ ନାହିଁତ ଆଣିଛି ବାଛି ଯେ
ବସୁଧା ସ୍ୱର୍ଗରେ ଥୋଇ ସ୍ୱର୍ଗ ଯୋଷାମାନଙ୍କୁ କରଛି ଛିଛି ଯେ ।

---

(ରଙ୍ଗପାଟପତାକା) କି ? ଏଣୁ ରୁଚ ଶୃଙ୍ଖଳ ( ରୁଚର ଚଞ୍ଚଳତାକୁ ) ନ ବନ୍ଧେ (ବନ୍ଧୁନାହିଁ) । "ପତାକାର ରୁଚ ଚରକାଳ ନ ଥାଏ ଓ ବର୍ଷାଦରେ ଚଞ୍ଚଳତା ନ ରହେ । ପୟୋଧର ରୂପ ଅଙ୍କାଳକାରେ ନଖ ଚନ୍ଦ୍ର ରୂପ ରଙ୍ଗ ପତାକାର ରୁଚି ସ୍ଥିରଭାବରେ ରହିଅଛି ଏହି ତାତ୍ପର୍ଯ୍ୟ" । ୩୧ ।

୩୨ଶ ପଦ—ବନ୍ଧଭେଦ ( ବନ୍ଧଭେଦରେ ) ଚନ୍ଦ କଳ୍ପପ୍ରାପ୍ତ କେଉଁ କେଉ ଶେଯ ( ଶଯ୍ୟା ) ସୁରଞ୍ଜନ ( ସୁନ୍ଦର ) "ହୋଇଅଛି" । ବରବର୍ଣ୍ଣିନୀ (ସ୍ତ୍ରୀଲୋକ) ସଙ୍ଖ୍ୟା ଓ ଲାକ୍ଷା ( ଅଳତାରେ ) ଅଙ୍କିତ "ହେବାରୁ" "ପୁଣି" ଘନସାର (କର୍ପୂର) ବିଦ୍ୟମାନ "ହେବାରୁ" ତହିଁ (ସେହି ଶଯ୍ୟାରେ) ବ୍ୟକ୍ତକେ ( ଜଣେ ଜଣେ ) ଭ୍ରମାଏ (ଭ୍ରମମାନେ) 'ଏରୂପେ ହୋଇଥିବାରୁ ଏମନ୍ତ ଉତ୍ପ୍ରେକ୍ଷା କଲେ' । ବଣ୍ଣ୍ୟପୂକ ( ବଧାତା ) ଚନ୍ଦକାର "ହୋଇ" ଭାବଣ ବନକେ ( ଭାବେଣ ଉଆସରେ ) ଲନ୍ଧ ( ଲେଖି ) 'ଏରୂପେ ଚନ୍ଦ' କରିଛି କି ? ୩୨ ।

୩୩ଶ ପଦ—ବିରୋଧ--ବର୍ଣ୍ଣେ ( ବର୍ଣ୍ଣରେ ) ସମସ୍ତ ଶ୍ୟାମ ହୋଇ 'ଅଛନ୍ତି' । ଗୋଟିଏ ବର୍ଣ୍ଣରେ ଶ୍ୟାମା ହୋଇନାହିଁ । ପରିହାର—ବର୍ଣ୍ଣେ (ବର୍ଣ୍ଣରେ) ସମସ୍ତେ ( ସବୁ ସ୍ତ୍ରୀମାନେ ) ଶ୍ୟାମା (ତପ୍ତକାଞ୍ଚନ ବର୍ଣ୍ଣା) ହୋଇ 'ଅଛନ୍ତି' । ବର୍ଣ୍ଣେ ( ବର୍ଣ୍ଣରେ ) ଗୋଟିଏ ( ସ୍ତ୍ରୀ ) ଶ୍ୟାମା (ଶ୍ୟାମଳବର୍ଣ୍ଣା) ହୋଇ ନାହିଁତ । କାହିଁକି ନା ? 'ଧନପୂରରୁ' ବାଛି ଆଣିଛି । ବସୁଧା ସ୍ୱର୍ଗରେ ( ପୃଥିବୀରେ ସ୍ୱର୍ଗରୂପ ଲଙ୍କାପୁରରେ ) ଥୋଇ ସ୍ୱର୍ଗ ଯୋଷାମାନଙ୍କୁ

ବାସୁଜ । ବିସ୍ମରେ କି ଭାଗ୍ୟବନ୍ତ ଯେ ।
ବୃନ୍ଦକଧେନୁରେ ଏକଷଣ୍ଡ ପରି ବିଭୋଗେ ହୋଇଛନ୍ତି ମତ୍ତ ଯେ ।୩୩।
ବିଜଣି ଗୃମର ପାଣିରେ ଚରଣେ କରଣ କରନ୍ତି ନ୍ୟାସ ଯେ ।
ବୋଲେ ଚନ୍ଦନ ଦଳେ ଘନସାରକୁ ଘୃପିତ କରେ ସ୍ନେହାଶ ଯେ ।
ବାମାଏ । ବିଚେତନ ନିଦ୍ରାବିଶେ ଯେ ।
ବାର ପରବାଗ ବାରଜଗନ୍ଧାଙ୍କୁ ହସ୍ତିନୀ କରି ମାନସେ ଯେ ।୩୪।
ବାଢ଼େ ବାଢ଼େ ଲେଖା ମଧୁସୂଦନ ସେ ଦାଶରଥି ରାମ ଯେହୁ ଯେ ।
ବିଦେହରାଜନ ପାଳିତା ଜ୍ୟାପୁତା ସୀତା ଶ୍ରେଷ୍ଠା ବିନା କେହୁ ଯେ ।

(ସ୍ବର୍ଗ ସ୍ତ୍ରୀମାନଙ୍କୁ) ତୁଚ୍ଛ କରନ୍ତି । 'ଏମନ୍ତ ଦେଖି' ବାସୁଜ ( ହନୁମାନ ) ବିସ୍ମରେ 'ଏ ରାବଣ' କି ଭାଗ୍ୟବନ୍ତ (କି କପାଳିଆ) ବୃନ୍ଦକ ( ବୃନ୍ଦସଂଖ୍ୟକ ) ଧେନୁରେ ଏକ ବୃଷପରି ବିଭୋଗେ (ସମ୍ଭୋଗରେ) ମତ୍ତ ହୋଇଛି ।୩୩।

୪୩ଣ ପଦ—ପରବାଗ ( ପରବାଗମାନେ ) 'ସେବାରେ ନିଯୁକ୍ତ ହୋଇଛନ୍ତି' କିରୂପେ ? 'କେହୁ କେହୁ' ପାଣିରେ ( ହସ୍ତରେ ) ବିଜଣି ଗୃମର 'ଧରି ଅଛନ୍ତି' । 'କେହୁ କେହୁ' ଚରଣରେ କରନ୍ତି ନ୍ୟାସ କରଣ 'ଅଛନ୍ତି' (ପାଦ ମକୁଳୁଅଛନ୍ତି) । 'କେହୁ କେହୁ' ଚନ୍ଦନ ଦେଇ 'ଅଛନ୍ତି' । 'କେହୁ କେହୁ' ୧ଘନସାରକୁ ( କର୍ପୂର ) ଦେଇ 'ଅଛନ୍ତି' । 'କେହୁ କେହୁ' ୨ସ୍ନେହାଶ (ଦୀପ) ଦୀପିତ କରେ (ଜଳାଉଛନ୍ତି) । 'ଏହି ବ୍ୟାପାରରେ' ବାମାଏ (ପ୍ରଧାନ ବାମାମାନେ) ନିଦ୍ରାବଶେ ବିଚେତନ (ଅଚେତନ) 'ହୋଇଅଛନ୍ତି' । 'ଏମନ୍ତ ଦେଖି ହନୁମାନ' ବାରଜଗନ୍ଧାଙ୍କୁ (ପଦ୍ମିନୀମାନଙ୍କୁ) ୩ହସ୍ତିନୀ କରି ମାନସେ (ମନରେ) ବାର (ବିଚାରିଲେ) ।୩୪।

୩୫ଶ—ପଦ—ଯେହି ଦାଶରଥି (ଦଶରଥ ପୁତ୍ର) ରାମ ସେ ମଧୁସୂଦନ ବିଦେହ ରାଜନ ( ଜନକ ) ପାଳିତା ଜ୍ୟାସୁତା ( ମହୀଜା ) ସୀତାଶ୍ରେଷ୍ଠା ବିନା ମୋ ବଧେ (ମୋତେ ମାରିବାକୁ) ବ୍ରହ୍ମାଣ୍ଡେ (ବ୍ରହ୍ମାଣ୍ଡମଧ୍ୟରେ) କେହି

୧—ଘନସାରଶ୍ଚନ୍ଦ୍ରସଂଜ୍ଞା ଶିତାଭ୍ର ଇତ୍ୟମରଃ ।
୨—ଦଶେନ୍ଦନୋଗୃହମଣିଃ ସ୍ନେହାଶଃ କଜ୍ଜଲ ଧ୍ବଜ ଇତି ତ୍ରିକାଣ୍ଡଶେଷଃ ।
୩—ପଦ୍ମିନୀ ପଦ୍ମଗନ୍ଧା ଚ ମଦଗନ୍ଧା ଚ ହସ୍ତିନୀ ।

ବଧେ ମୋ । ବ୍ରହ୍ମାଣ୍ଡେ ନୋହିବ କ୍ଷମ ଯେ ।
ବଢ଼ିଲା ବିବେକ ପଢ଼ି ପାବନିର ଏ ଜାଣ ପଶୁ ଜନମ ଯେ ।୩୫।
ବୁଦ୍ଧି ପରସନ୍ନ ହେବ ଦରଶନ ଲୋକଜନନୀର ଭଲା ଯେ ।
ବାହାରୁଁ ବାହାରୁଁ ରାବଣ ଶୟନସଦନରେ ଯାଇଁ ମିଳ ଯେ ।
ବିଲୋକ । ବରାଙ୍ଗନାଏ ତା କୋଳ ଯେ ।
ବାହୁକୁ ବାହୁ ସର୍ପେ ସର୍ପ ମୁଖକୁ ମୁଖ ରାହୁ-ଚନ୍ଦ୍ର ମେଳ ଯେ ।୩୬।
ବିରାଜୁଛି ବିଦ୍ୟୁତ ଘନେ କି ମାଂସଳ ମୀନ ସ୍ଥକିତ ମଧୁଗ୍ରା ଯେ ।
ବୁଜିବା ନୟନଯୁଗଳ ଉରଜ ମଙ୍ଗଳକୁମ୍ଭ ଗୃଭୁଗ୍ରା ଯେ ।

---

କ୍ଷମ (ସମର୍ଥ) ନୋହିବେ । 'ଏମନ୍ତ' ବାଢ଼େ ବ.ଢେ (ପ୍ରଢ ବାଢ଼ିରେ) ଲେଖା ହୋଇଅଛି । 'ତାହା' ପଢ଼ି ପାବନି (ହନୁମାନର) ବିବେକ ବଢ଼ିଲା । ( ହନୁମାନ ଏମନ୍ତ ଭାବିଲେ ) ଏ (ରାବଣ) ଜାଣ ପଶୁ ଜନମ (ଜାଣପଶୁ ଏ) 'ନୋହିଲେ କାହିଁକି ଜାଣୁ ଜାଣୁ ଏହା କଲା' ।୩୫।

୩୬ଶ ପଦ—ଲୋକଜନନୀର ( ସୀତାଙ୍କର ) ଦରଶନ (ଦର୍ଶନ) 'ହେଲେ' 'ମୋର' ବୁଦ୍ଧି ପରସନ୍ନ ( ନିର୍ମଳ ) ହେବ ; 'ଏମନ୍ତ' ଭାଳି ବାହାରୁଁ ବାହାରୁଁ ( ବାହାର କରୁଁ କରୁଁ ) ରାବଣ ଶୟନ ସଦନରେ (ରାବଣ ଶୋଇଥିବା ଗୃହରେ) ଯାଇ ମିଳି (ମିଳିଲା ) । ତା କୋଳ (ସେହି ରାବଣ କୋଳରେ) ବରାଙ୍ଗନାଏ ( ଏକ ବରାଙ୍ଗନା ) ବିଲୋକି ( ଦେଖିଲା ) 'ସେ' 'ବାହୁକୁବାହୁ' 'ଛନ୍ଦିବାରୁ' ସର୍ପେ ସର୍ପ ( ସର୍ପକୁ ସର୍ପ ଛନ୍ଦିହେଲା ପରି ଦିଶୁଛି) ମୁଖକୁ ମୁଖ ( ମୁଖରେ ମୁଖ ଦେଇଥିବାରୁ ) ରାହୁ ଚନ୍ଦ୍ର ମେଳ ( ଚନ୍ଦ୍ର ସଙ୍ଗରେ ରାହୁ ମେଳ ହୋଇପରି ଦିଶୁଛି ) 'ବରଙ୍ଗନା ମୁଖ ଚନ୍ଦ୍ର; ରାବଣ ମୁଖ ରାହୁ' । ୩୬ ।

୩୭ଶ ପଦ—ଘନେ ( ମେଘରେ ) ବିଦ୍ୟୁତ (ବିଜୁଳୀ) ବିରାଜୁଛି କି ? 'ତାହାର' ବୁଜିବା ନୟନ ଯୁଗଳ ମାଂସଳ (ପୁଷ୍ଟ) ମୀନ (ମତ୍ସ୍ୟ) ସ୍ଥକିତ (ସ୍ଥିର ହେବା) ମଧୁଗ୍ରା ( ଶୋଭାକୁ ) 'ପାଇଛି' । ଉରଜ 'ଯୁଗଳ' ମଙ୍ଗଳ କୁମ୍ଭ ( ପୂର୍ଣ୍ଣକୁମ୍ଭ ) ଗୃଭୁଗ୍ରା ( ବୃତୁର୍ଯ୍ୟକୁ ) 'ପାଇଛି' । ବିଧିତ (ବିଧାନାନୁସାରେ) ବର୍ଦ୍ଧ୍ୟ (ବର୍ଦ୍ଧ୍ୟମାନ ହୋଇଥିବା) ଗୁବାକ ( ଗୁଆଗ୍ରାସ୍ଥ )

ଚହ୍ନିତ । ବଦ୍ୟଗୁଚ୍ଛିକ ଚୂଚୁକ ଯେ ।
ବସନ୍ତଦ୍ରୁମ ଛଦନ ଆଚ୍ଛାଦନ କୁରଙ୍ଗମଦଚର୍ଚ୍ଚକ ଯେ ।୩୭।
ବିଚ୍ଛେଦ ଉରୁଜଙ୍ଘକୁ ଦଗଦନ୍ତୀ କରେ କି କଦଳୀତରୁ ଯେ ।
ବିଚିତ୍ରକର୍ମା ବୋଲଇଥିବ ବିଧି ନିର୍ମାଣ କରି ଏ ଝିରୁ ଯେ ।
ବିଲୋକି । ବାତସୂତ ବିସ୍ମରିଲା ଯେ ।
ବତିଶଲକ୍ଷଣପୂରିତା ଏ ସୀତା ନିଶ୍ଚେ ମତିବୃଦ୍ଧି କଲା ଯେ ।୩୮।
ବିଧିପଦକୁ ଅବିଧି ସିଦ୍ଧି କଲା ଧାତା ଏ ବିଧାନ ରଚି ଯେ ।
ବିଶୁଦ୍ଧ ରାମସୁଧାପାନୀ ସୀତାକୁ କୋଚଲା-ଶନ ତ ରୁଚି ଯେ ।

---

ଚୂଚୁକ (କୁଚାଗ୍ର), କୁରଙ୍ଗ ମଦଚର୍ଚ୍ଚକ (କସ୍ତୁରୀ ପତ୍ରାବଳୀ) ବସନ୍ତଦ୍ରୁମଚ୍ଛଦନ (ଚୂତପତ୍ର ଆଚ୍ଛାଦନ) 'ହୋଇଲପରି ହୋଇଅଛି'। 'ମେଘ ତୁଲ୍ୟ କୃଷ୍ଣବର୍ଣ୍ଣ ରାବଣର କୋଳେ ବିଜୁଳୀ ପ୍ରାୟ ଗୌରବର୍ଣ୍ଣାବରାଙ୍ଗନାର ମୁଦ୍ରିତନେତ୍ରସ୍ଥିର ଓ ସ୍ଥୂଳ ମୀନ ତୁଲ୍ୟ ସୁନ୍ଦର, ସ୍ତନ ପୂର୍ଣ୍ଣକୁମ୍ଭ, କୁଚାଗ୍ର କୁମ୍ଭସ୍ଥିତ ଗୁଆ, କସ୍ତୁରୀ ଚର୍ଚ୍ଚ କୁମ୍ଭାଚ୍ଛାଦକ ଆମ୍ରପତ୍ର ଅତଏବ ପୂର୍ଣ୍ଣକୁମ୍ଭ ତୁଲ୍ୟ ସ୍ତନ ଅତି ସୁନ୍ଦର ଏହି ତାତ୍ପର୍ଯ୍ୟାର୍ଥ ।୩୭।

୩୮ଶ ପଦ—ଉରୁଜଙ୍ଘ ଉରୁ ( ଜଂଘରୁ ଜଂଘ ) ବିଚ୍ଛେଦ (ବିଶେଷରେ ଛିନ୍ନବାରେ) ଦଗଦନ୍ତ କରେ ( ଦଗହସ୍ତୀ ଥୋର ହସ୍ତରେ ) କଦଳୀତରୁ ଅଛୁକି ? 'ସେହିପରି ଶୋଭା ଦିଶୁଅଛି ଏହି ଭାବ'। ଏ ଝିରୁ (ଏ କାମିନୀକି) ନିର୍ମାଣ କରି ( ଗଢ଼ି ) ବିଧି ( ବିଧାତା ) ବିଚିତ୍ର କର୍ମୀ ବୋଲଇଥିବ । ବିଲୋକି (ତାକୁ ଦେଖି) ( ବାତ ସୁତ ( ହନୁମାନ ) ବିସ୍ମରିଲା । ବତିଶ ଲକ୍ଷଣ ପୂରିତା ସୀତା ଏ [ ନିଶ୍ଚେ ] ନୀଚବୃଦ୍ଧି କଲା (ବିବେଚନାରେ ରହିଲା) 'ଏହାଦ୍ୱାରା' ମନ୍ଦୋଦରୀର ସୌନ୍ଦର୍ଯ୍ୟାତିଶଯ୍ୟ ସୂଚିତ ହେବାରୁ ହନୁମାନର ବିଭ୍ରମ ହେଲା ଏହି ଭାବ'। 'ବତିଶ ଲକ୍ଷଣ ପୂର୍ବରୁ କହିଅଛି'।୩୮।

୩୯ଶ ପଦ—ଧାତା ଏ ବିଧାନ ( ଏ ବୁଦ୍ଧି ) ରଚି (ରଚିବାରେ) ବିଧିପଦକୁ ଅବିଧି ( ଅବିଧିରେ ) ସିଦ୍ଧି କଲା । ବିଶୁଦ୍ଧ (ପବିତ୍ର) ରାମ (ରାମଙ୍କ) ସୁଧା (ପ୍ରେମାମୃତ) ପାନୀ (ପାନ କରୁଥିବା) ସୀତାକୁ କୋଚିଲା (ପିତା କୋଚିଲାଫଳ) ଅଶନ (ଭକ୍ଷଣ) ରୁଚି (ରୁଚିଲା) ବାୟୁଜ (ହନୁମାନ)

ବାୟୁଜ । ବହୁ ହନ ହୋଇ ଧାଇଁ ଯେ ।
ବଦନମଧୁଗନ୍ଧରୁ ଜଣା ଅର୍ଥେ ଭୃଙ୍ଗ ହୋଇ ପାଶେ ଯାଇ ଯେ ।୩୯।
ବଣା ହେଲି ଅକ୍ଷି ଥାଉଁ ନ ରଖିଲି ହାରକ ସ୍ଫଟିକ ହେଜ ଯେ ।
ବଣିକ ପରାୟେ ହୋଇଲି ସୁବର୍ଣ୍ଣତୁଳରେ ତୁଳିଲି ଗୁଞ୍ଜ ଯେ ।
ବତୁଳ । ବାତୁଳ ହୋଇଲି ମୁହିଁ ଯେ ।
ବନ୍ଧ ମୃଣାଳଖଣ୍ଡେ ଏ ଦ୍ୱିଷ୍ଠାସ୍ଥାଗ୍ରହ ବୋଲି ହେଲି କହ୍ନ ଯେ ।୪୦।
ବହ୍ନିସେନେହୀ ପତଙ୍ଗ ଗିନା ହୋଇ ତହିଁ ନାହିଁ ବହ୍ନି ସ୍ନେହ ଯେ ।
ବତେବତନା । କମା ଏବେତ ନ କଲି ପୋଡ଼ିଯାନ୍ତା ଅବୟବ ଯେ ।

---

ବହୁ (ବହୁତ) ହନ (ଢବସ) ନୋହୁ ( ଅନ୍ତର ହୋଇ ନାହୁଁ ) ଧାଇଁ ( ଏହା ମନେ କରି ) ଜଣା ଅର୍ଥେ ( 'ମୁଖଗନ୍ଧରୁ ଜଣାଯିବ ଏଥିପାଇଁ' ) ଭୃଙ୍ଗହୋଇ ( ଭ୍ରମର ରୂପରେ ) ପାଶେ ( ପାଖକୁ ) ଯାଇ ବଦନ ମଧୁଗନ୍ଧରୁ ( ମୁଖର ମଦଗନ୍ଧରୁ ) 'ଜାଣିଲି ଏ ସୀତା ନୁହେଁ' ।୩୯।

୪୦ଶ ପଦ—'ସୀତାଙ୍କୁ ନ ଚିହ୍ନିବାରୁ ଆପଣାକୁ ଧିକ୍କାର କରୁଅଛନ୍ତି'—ଅକ୍ଷି [ ଆଖି ] ଥାଉଁ ମୁଁ ବଣା ହେଲି, ହାରକ [ ହୀରକ ] ସ୍ଫଟିକ [ ସ୍ଫଟିକ ପଥର ଏ ] ହେଜ ନ ରଖିଲି [ ହେଜି ପାରିଲି ନାହିଁ ] । 'ମୁଁ ପୁଣି' ବଣିକ ପରାୟେ ହୋଇଲି, 'ବଣିକ' ସୁବର୍ଣ୍ଣ ତୁଳରେ ଗୁଞ୍ଜା [ କାଇଞ୍ଚ ] ତୁଳାଇ 'ସେପରି ମୁଁ' ତୁଳିଲି [ ସୀତାସ୍ୱଳ୍ପେ ଅସୁନ୍ଦରୀକି ସମାନ କଲି ] 'ଏଣୁ ମୁହିଁ ବତୁଳ ବାତୁଳ [ ଅସମ ବାତୁଳ ] ହୋଇଲି 'ମୋ ସମାନ ବାଉଳା ନାହିଁ ଏହି ଭାବ' । ବନ୍ଧ ମୃଣାଳ ୧ ଖଣ୍ଡକୁ [ ବନ୍ଧା ପଦ୍ମନାଡ଼କୁ ] 'ଦେଖି' ଏ ଦ୍ୱିଷ୍ଠାସ୍ଥାଗ୍ରହ ବୋଲି କହି ହେଲି ।୪୦।

୪୧ଶ ପଦ—ପତଙ୍ଗ ଗିନା ବହ୍ନିସେନେହୀ [ ଅଗ୍ନି ଠାରେ ସ୍ନେହୀ ] ହୋଇ [ ହୁଅଇ ], ତହିଁ [ ସେ ପତଙ୍ଗଠାରେ ] ବହ୍ନି (ଅଗ୍ନିର) 'ସ୍ନେହ ଭାବ ନାହିଁ ( ନଥାଏ ) । 'ବହ୍ନିରୂପୀ ସୀତା ପତଙ୍ଗରୂପୀ ରାବଣ ଏହି ଭାବ' । ଅଥବା ବହ୍ନି ଭାବ ସୀତାଙ୍କଠାରେ ଅଛି, ତହିଁ ( ରାବଣ କୋଳରେ ଥିବା କାମିନୀଠାରେ ) 'ବହ୍ନି ଭାବ' ନାହିଁ, ପତଙ୍ଗ ବହ୍ନି ସେନେହୀ ହୋଇ

---

୧—ଚିହ୍ନଂ ଶକଳଖଣ୍ଡେ ବାଇଡ୍ୟମରଃ

ବୋଇଲ । ବ୍ରହ୍ମକନ୍ୟାକୁ ମାତଙ୍ଗୀ ଯେ ।
ବୁଡ଼ି ମରିବି ସିନ୍ଧୁଜଳେ ଗଳେ ମୁଁ ଶିଳ ବାନ୍ଧି ଏ ଆତଙ୍କୀ ଯେ ।୪୧
ବିଗ୍ରହରେ ଯେବେ ଶ୍ରୀରାମକାର୍ଯ୍ୟ ତେବେ କରି ନ ପାରିଲି କରୁଁ ଯେ
ବୋଲିବା ଏମନ୍ତ ଦୋଷରେ ବଡ଼ଇ ଦୁଷ୍କୃତ ଉଦୟ ଅଟୁଁ ଯେ ।
ବାହୁଡ଼ି । ବୈଦେହୀ କହିବା ବାଣୀ ଯେ ।
ବ୍ରହ୍ମପଦଦ୍ୱୀକ ଭାବିଲେ ପାଇବି ରାଘବ ଶ୍ରୀମୁଖରେ ଭଣି ଯେ ।୪୨
ବଣୀଏ ଦେଖିଲା କେତେଦୂରେ ଯାଇ ସେହି ପୁର ସନ୍ନିକଟେ ଯେ
ବିଶୋକ ମନ ହୋଇ ତହିଁ ଗମନ କରନ୍ତି ତଥି ପ୍ରିକ୍ଷଟେ ଯେ ।

---

(ବହ୍ନିରେ ସେନ୍ଧ କରି) 'ଯେବେ ଅଗ୍ନିରେ ପ୍ରବେଶ କରେ ତେବେ ତା ଅବଶ୍ୟ ଦୋଷଯାଏ ସେ ମରେ । ସେରୂପେ ସୀତାଙ୍କଠାରେ ରାବଣ ଦୈନ୍ଦ୍ରି କରି ବୋଲରେ ହେଉଥିଲେ'- ଅବଶ୍ୟ (ସର୍ବାଙ୍ଗ) ଦୋଷ ଯାନ୍ତା ଏତେକ ବୈଦେହୀ (ବଡ଼ିର) ଜାଣି ନ ଥିଲେ । ବ୍ରହ୍ମକନ୍ୟାକୁ (ଋଷି-କନ୍ୟାକୁ) ୧ ମାତଙ୍ଗୀ (ଚଣ୍ଡାଳୀ) ବୋଇଲା । 'ଏଣୁ ମୁଁ' ଗଳେ (ଗଳାରେ) ଶିଳେ (ପଥର ଗୋଟିଏ) ବାନ୍ଧି ସିନ୍ଧୁ ଜଳେ ବୁଡ଼ି ମରିବି ଏ (ଏହିରୂପ) ଆତଙ୍କୀ (ଆର୍ତ୍ତିଯୁକ୍ତ ହୋଇ) ।୪୧ ।

୪୨ଶ ପଦ—ପୁଣି ବିଗ୍ରହରେ (ବିଗ୍ରହ କରେ) ଯେବେ ଆତ୍ମଘାତି ହୋଇ ମରିବି' ତେବେ ଶ୍ରୀରାମ କାର୍ଯ୍ୟ କରୁଁ କରି ନ ପାରିଲି । 'ମୋର' ଏମନ୍ତ ବୋଲିବା ଦୋଷରେ (ସୀତା ମାତଙ୍କୁ ଦେଖିଲି ଏମନ୍ତ କହିବା ଦୋଷରେ) ବଡ଼ଇ (ଅତ୍ୟନ୍ତ) ଦୁଷ୍କୃତ ଉଦୟ 'ହୋଇ' ଅଟୁଁ । ବାହୁଡ଼ିବା ୨ ବାହୁଡ଼ି ଏଠାରୁ ଯାଇ) ବୈଦେହୀ କହିବା ବାଣୀ (ବଚନ) ରାଘବଙ୍କ ଶ୍ରୀମୁଖରେ ଭଣି ବ୍ରହ୍ମପଦଦ୍ୱୀକ (ବ୍ରହ୍ମଲୋକକୁ) ଭାବିଲେ ପାଇବି । 'ଏ ଦୋଷ ନ ରହିବ ଏହିଭାବ' ।୪୨ ।

୪୩ଶ ପଦ—କେତେ ଦୂରେ ଯାଇ ସେହି (ହନୁମାନ) ପୁର ସନ୍ନିକଟେ (ରାବଣ ପୁର ନିକଟରେ) ବଣୀଏ (ଗୋଟିଏ ବଣି) ଦେଖିଲା । 'ସୀତାଙ୍କୁ ନ ଦେଖିବାରୁ' ବିଶୋକ ମନା (ବିଶେଷରେ ଶୋକ ମନ) ହୋଇ ତହିଁକି

---

୧—ଚଣ୍ଡାଳପ୍ଲବମାତଙ୍ଗ ଇତ୍ୟମରଃ ।

ବେଷ୍ଟିତ । ବିଶେଷ ହୋଇ ରାକ୍ଷସୀ ଯେ ।
ବାମହସ୍ତ ନ୍ୟସ୍ତ କପୋଳେ ଅବନୀଦୃଷ୍ଟିରେ ରାମା ଏ ବସି ଯେ ।୪୩।
ବିଦ୍ରୁମ ମାଣିକ୍ୟ ମୁକୁତା ମର୍କତ ନୀଳମଣିରେ ରଚନା ଯେ ।
ବନିତାରତନପଦ ତାକୁ ସାଜ ହୋଇଛି ହୀରବିହୀନା ଯେ ।
ବିପୁଳ । ବିରହଶାଣରେ ବସି ଯେ ।
ବିଶୀର୍ଣ୍ଣ ସମସ୍ତ ଶେଷ ହୋଇ ଏକ ଗଲା କି ଚିତ୍ତେ ଆଶ୍ୱସି ଯେ ।୪୪।
ବନଜ ନିଉଛୁଳି କରି ଖଞ୍ଜନ ନିଉଁଛୁଳିବାରେ ନେବେ ଯେ ।
ବିନମ୍ରୀ ପଦ୍ମେ ପତନ କେ ଚଞ୍ଚଳ ସଦା କେ ବହିଛି ଗାତ୍ରେ ଯେ ।

---

( ସେ ବନକୁ ) ଗମନ 'କଲା' । ତଥି ( ସେଠାରେ ) ଜଗତୀ ( ଅଟ୍ଟାଳିକା ) ପ୍ରକଟେ ( ଅଛି ) ବିଶେଷ ( ବହୁତ ) ରାକ୍ଷସୀ ବେଷ୍ଟିତ ହୋଇ ବାମହସ୍ତ କପୋଳେ ( ଗଣ୍ଡସ୍ଥଳରେ ) ନ୍ୟସ୍ତ କରି ( ଦେଇ ) ଅବନୀ ଦୃଷ୍ଟିରେ (ତଳକୁ ଚାହିଁ ) ରାମା ଏ ( ଗୋଟିଏ ରାମା ) ବସିଅଛି । ୪୩ ।

୪୪ଶ ପଦ—'ଏମନ୍ତ ଦେଖି ହନୁମାନ୍' ଚିତ୍ତେ ( ମନରେ ) ଆଶ୍ୱସି (ଏମନ୍ତ ଆଶ୍ୱାସ କରି ବିଚାରିଲା) । ବିଦ୍ରୁମ ( ପୋହଳାରେ ) 'ହସ୍ତ' ମାଣିକ୍ୟ ( ମାଣିକ୍ୟରେ ) 'ଅଧର' ମୁକୁତା (ମୁକ୍ତାରେ ) 'ଦନ୍ତ' ମର୍କତ (ମରକତରେ) 'କେଶ' ନୀଳମଣିରେ 'ନେତ୍ର ତୋଳା' 'ଏହି ରତ୍ନମାନଙ୍କରେ' ରଚନା (ଗଢ଼ା ହୋଇଥିବାରୁ) ବନିତା ରତ୍ନ (ସ୍ତ୍ରୀ ରତ୍ନ) ପଦ (ନାମ) ତାକୁ ସାଜିଅଛି 'କେବଳ' ହୀରବିହୀନା ହୋଇଛି ( ହୀରାମାତ୍ର ନାହିଁ ) । ବିପୁଳ ( ବଡ଼ ) ବିରହ ଶାଣରେ ବସି ସମସ୍ତ ( ପ୍ରବାଳାଦି ରତ୍ନସବୁ ) ବିଶୀର୍ଣ୍ଣ ( ବିଶେଷରେ ଶୀର୍ଣ୍ଣ ) ହୋଇ 'ଅଛନ୍ତି' ଏକ ( ହାସ ହୀରକ ) ଶେଷ ହୋଇଗଲା କି ? 'ବିରହ ଦୁଃଖରୁ ହାସ ପ୍ରକାଶ ହେଉ ନାହିଁ ଏହି ଫଳିତାର୍ଥ' । ୪୪ ।

୪୫ଶ ପଦ—ନେତ୍ରେ ( ଏ ରାମାର ନେତ୍ରକୁ ) 'ଏବେ' ବନଜ ( ପଦ୍ମକୁ ) ନିଉଛୁଳି କରି (ଛାଡ଼ିଲା ପରେ) ଖଞ୍ଜନ ( ପକ୍ଷିକି ) ନିଉଁଛୁଳିବାରୁ ( ବନାଇବାରୁ ) କେ ( ବନଜ ) ବିନମ୍ରୀ 'ହୋଇ' ପାଦେ ପତନ (ପାଦରେ ପଡ଼ିଲା) କେ (ଅନ୍ୟ ଖଞ୍ଜନ) ସଦା (ସର୍ବଦା) ଗାତ୍ରେ (ଦେହରେ)

ବଢ଼ଇ । ବାରି ଯା ଜନମି ତହୁଁ ଯେ ।
ବିଖନରେ ଧନ୍ୟ ଭାବ ଦ୍ରବୀଭୂତ ନୟନ ହୋଇଛି ଯହୁଁ ଯେ । ୪୫ ।
ବକ୍ଷୋଜେ ପୁଣି ସ୍ୱେଦ-ଜଡ଼ପଡ଼ ସେ ବେନି ଉପମା ସମ୍ଭବେ ଯେ ।
ବ୍ୟୋମ ହ୍ରଦୟେ ରାମଚନ୍ଦ୍ର ଉଦୟେ ଚନ୍ଦ୍ରଶିଳ ଶୈଳ ଦ୍ରବେ ଯେ ।
ବିଦିତ । ବେନି ଶାତକୁମ୍ଭ କୁମ୍ଭ ଯେ ।
ବିଭରି ରାମ-ପ୍ରେମ ନୀର ବହୁତ ଉଚ୍ଛୁଳିବାର ଆରମ୍ଭ ଯେ । ୪୬ ।

---

ଚଞ୍ଚଳ 'ଭାବକୁ' ବଢ଼ଉଛି । 'ତାହା ଦେଖି' ତହୁଁ ( ସେହି ନେତ୍ରରୁ ) ବାରି ( ଲୋତକ ) ଜନମି ( ଜନ୍ମି ) ଯା ( ଯାହା ) ବଢ଼ଇ 'ଦେଖି' ବିଖନରେ ( ବିଧାତାଠାରେ ) ଧନ୍ୟ 'ଶବ୍ଦ' ଭାବ ( ଭାବୁଥାଇଁ ) 'ବିଧାତାକୁ ଧନ୍ୟ ବୋଲୁଥାଇ ଏହିଭାବ' ଯହୁଁ ( ଯେହେତୁ ) 'ପଦ୍ମ ଓ ଖଞ୍ଜନର ବିନସ୍ଥ ଜନ୍ମ ଦେଖି' ନୟନ ଦ୍ରବୀଭୂତ ହୋଇଅଛି । 'ସେ ଦୁହିଙ୍କି ବନାଇ ନ ଥିଲେ ନେତ୍ରରୁ କାରୁଣିକତ୍ୱ ଜଣା ନ ଯାଆନ୍ତା * ଏହିଭାବ' । ୪୫ ।

୪୬ଶ ପଦ—ପୁଣି ବକ୍ଷୋଜେ ( ପୟୋଧରରେ ) ସ୍ୱେଦ ( ଘର୍ମଜଳ ) ଜଡ଼ ପଡ଼ (ଜଡ଼ି ପଡ଼ିବାରୁ) ସେ ( ବକ୍ଷୋଜ ) ବେନି ଉପମା ( ଦୁଇଗୋଟି ଉପମାରେ ) ସମ୍ଭବେ 'ତହିଁରେ ଯୋଡ଼ିଏ ଉପମା ସମ୍ଭବୁ ଅଛି' ଏହି ତାତ୍ପର୍ଯ୍ୟାର୍ଥ । ବ୍ୟୋମହ୍ରଦୟେ ( ଆକାଶ ରୂପ ହ୍ରଦୟରେ ) ରାମଚନ୍ଦ୍ର ( ରାମରୂପ-ଚନ୍ଦ୍ର ) ଉଦୟେ (ଉଦୟ ହୁଅନ୍ତେ ) ଚନ୍ଦ୍ରଶିଳ ଶୈଳ (ଚନ୍ଦ୍ରକାନ୍ତ ପ୍ରସ୍ତର ପର୍ବତ ) ଦ୍ରବୀଭୂତ ହେଲା । 'ତାହା ନୋହିଲେ ଏହା ଅବା ହୋଇପାରେ ।' ଶାତକୁମ୍ଭ (ସୁବର୍ଣ୍ଣର) କୁମ୍ଭ ବେନି (ଦୁଇ କୁମ୍ଭ) ବିଦିତ (ପ୍ରକାଶ ହୋଇଛି ।) 'ତହିଁରେ ରାମ ପ୍ରେମନୀର ( ରାମଚନ୍ଦ୍ରଙ୍କ ପ୍ରେମରୂପ ଜଳ ) ବହୁତ ( ବିଶେଷ ରୂପରେ ) ବିଭରି ( ପୂରି ଯିବାରୁ ) ଉଚ୍ଛୁଳିବାର ଆରମ୍ଭ ( ଉଚ୍ଛୁଳି ପଡ଼ିବାକୁ ଆରମ୍ଭ କରେ ) । 'ଏରୂପେ ବେନି ଉପମା ସମ୍ଭବିଲା ।

---

*—ତଦୁକ୍ତଂ ପ୍ରସାଙ୍ଗିକେ—

ମୃଦୁଲଂ ନବନୀତମୀରିତଂ ନବନୀତାଦପି ସଜ୍ଜନସ୍ୟ ହୃତ୍ ।
ପ୍ରଥମଂ ଦ୍ରବତି ସ୍ୱତାପନାତ୍ ପରତାପାଦପରଂ ଦ୍ରବତ୍ୟହୋ ।

ବଢ଼ି ଅଳକା ଭାଲଅର୍ଦ୍ଧ ଗ୍ରାସିକା ଏ ଲକ୍ଷରେ ଚନ୍ଦ୍ର ଭ୍ରମ ଯେ ।
ବିରୂପାକ୍ଷଅରି ଜାତରୂପ ଫରି କଳଙ୍କି ଆସିଲା ପରି ଯେ ।
ବେଣୀର । ବନ୍ଧା ଫିଟିବାର ନାହିଁ ଯେ ।
ବ୍ୟାକୋଷ ପୁଷ୍ପ ମଣ୍ଡନ କୋଷସ୍ଥାନ ପଟ୍ଟୀଶ କି ଡେରା ହୋଇ ଯେ ॥

ବୀର ହନୂମାନ ମାନସେ ଭାବନା ଏହି କଥାମାନ କଲା ଯେ ।
ବାମ ହେଲେ ରାମ କାମଁରେ ପୁରୁଷପ୍ରଶଂସା ସଂସାରେ ଥିଲା ଯେ ।

---

'ରାମ ପ୍ରେମ ଙ୍କର ପୂର୍ଣ୍ଣ ଭାବରେ ବନ୍ଧ ଯାଉଛି; ଏହିଭାବ' 'ଅଶ୍ରୁ ଓ ସ୍ୱେଦ ନିର୍ଗତରୁ ଦୁଃଖାବସ୍ଥା ସୂଚିତ ହେଲା' । ୪୬ ।

୪୭ଶ ପଦ—ଅଳକା ( ଚୂର୍ଣ୍ଣ କୁନ୍ତଳ ) ବଢ଼ି ଯା ( ଯାହା ) ଅର୍ଦ୍ଧଭାଲ (ଭାଲାର୍ଦ୍ଧକୁ) ଗ୍ରାସି (ଗ୍ରାସିଛି) । ଏ ଲକ୍ଷରେ ଚନ୍ଦ୍ର (ଏହି ଦୃଷ୍ଟିରେ ଚନ୍ଦ୍ର) ଭ୍ରମ ( ଉଦ୍‌ବେଗ ) 'ହେଲା' । ବିରୂପାକ୍ଷ ଅରି (କନ୍ଦର୍ପର) ଜାତରୂପ ଫରି (ସୁବର୍ଣ୍ଣ ଫଳରେ ) କଳଙ୍କି ଆସିଲା ପରି 'ଦିଶୁଛି' । 'ପୁଣି' ବେଣୀର ବନ୍ଧା (ବନ୍ଧନ) ଫିଟିବାର ନାହିଁ ( ଫିଟିନାହିଁ ) 'ଏଣୁ' ବ୍ୟାକୋଷ ପୁଷ୍ପ ( ବିକଚ ପୁଷ୍ପର ) ମଣ୍ଡନ କୋଷ ( ମଣ୍ଡନ ରୂପ ଖାପ ) ସ୍ଥାନ ( ତାହାର ) 'ହୋଇଥିବା' ପଟ୍ଟୀଶ ( ଖଡ଼୍‌ଗ ) ଡେରା ହୋଇ 'ଅଛି' କି 'ଏରୂପେ ଦିଶୁଛି' । ୪୭ ।

୪୮ଶ ପଦ—ବୀର ହନୂମାନ୍ ମାନସେ ଏହି କଥାମାନ ଭାବନା କଲା (ମନରେ ଭାବିଲା) ସଂସାରେ ( ସଂସାରମଧ୍ୟରେ ) ପୁରୁଷ ପ୍ରଶଂସା (ପୁରୁଷସୁନ୍ଦର ପଣ ପ୍ରଶଂସା ) ଦାମରେ ( କାମଠାରେ) ଥିଲା । 'ସୁନ୍ଦର ପୁରୁଷକୁ ଦେଖିଲେ କନ୍ଦର୍ପ ପ୍ରାୟ ସୁନ୍ଦର ବୋଲନ୍ତି ଏବେ ରାମଙ୍କୁ ଦେଖିଲେ କନ୍ଦର୍ପ କି ସୁନ୍ଦର ବୋଲନ୍ତି ଏଣୁ' ରାମ 'କାମଠାରେ' ବାମ (ପ୍ରତିକୂଳ) ହେଲେ । ରମ୍ଭା (ଅପ୍ସରା ବନିତା ବର ( ଶ୍ରେଷ୍ଠ ) ହୋଇଥିଲା । 'ତାହାର' ବିଶେଷ ଶୋଭା ନଳିନୀ ( ସର୍ବୋପରି ) ହେଲା ତହିଁରେ ନଳିନୀ ( ପଦ୍ମିନୀ ସୀତା ) ନଳିନୀ ( ପଦ୍ମିନୀ) ପରି ଆରମ୍ଭା 'ହେଲେ' । ଅଥବା ବିଶେଷ ଶୋଭା ( ବିଶେଷରେ ଶୋଭାବତୀ) ନଳିନୀ ( ପଦ୍ମିନୀ ସୀତା ) ନଳିନୀରେ ( ପଦ୍ମଲତାରେ ) ନଳିନୀ ( ପଦ୍ମ )

ବନିତା । ବର ହୋଇଥିଲ ରମ୍ଭା ଯେ ।
ବିଶେଷ ଶୋଭୀ ନଳିନୀ ନଳିନୀରେ ନଳିନୀ ପର ଆରମ୍ଭା ଯେ ।୪୮।
ବାନ୍ଧବୀ ଏହୁ ସେ ଭ୍ରମର ଭ୍ରମର ନିକେତନ କି ସଂଶୟ ଯେ ।
ବିରହୀ ବିରହିଣୀ ପରସ୍ପରରେ ହୋଇଛନ୍ତି ଅତିଶୟ ଯେ ।
ବିଲୋକ । ଯେବେଙ୍କି ଧନ୍ୟ ମୋ-ନେତ୍ର ଯେ ।
ବାଣୀ ଶୁଣିଛୁ ତାଙ୍କର ଏହାଙ୍କର ବାଣୀ କି ଶୁଣିମା ଶ୍ରୋତ୍ର ଯେ ।୪୯।
ବସୁଧାଶିରୀ ଏ ଶିରୀ ଏ ଶିରୀଷଅଙ୍ଗିନୀ ସନ୍ଦେହ ନାହିଁ ଯେ ।
ବିଶାଳନିତମ୍ବ ରୋମାବଳୀ ବ୍ୟାଜ ଚନ୍ଦ୍ର ଗଦା ଅଛି ଥୋଇ ଯେ ।

---

ପର ଆରମ୍ଭା 'ହେଲେ' ୧ । 'ରମ୍ଭା ଶୋଭା ପୋଖରୀରେ ଫୀତା ପଦ୍ମିନୀ ଫୁଟିବାକୁ ରମ୍ଭାର ସୁନ୍ଦରପଣ ଭଙ୍ଗ ଗଲା ଏହିଭାବ' । ୪୮ ।

୪୯ଶ ପଦ—ସେ ଭ୍ରମର ଏ ବାନ୍ଧବୀ ହି ( ନିଶ୍ଚୟ ) । 'ଯେଣୁ' ଭ୍ରମର ( ମନୋହରର ) ନିକେତନ ( ସ୍ଥାନ ) ଏ, ସଂଶୟ କି ? ( ଏଥିରେ କିଛି ସଂଶୟ ନାହିଁ ) । ପରସ୍ପରରେ (ଅନ୍ୟୋଽନ୍ୟରେ) ବିରହୀ ବିରହିଣୀ ଅତିଶୟ ହୋଇଛନ୍ତି । ଯେବେଙ୍କି ବିଲୋକ ( ଦେଖିଲି ) 'ଏଣୁ' ମୋ ନେତ୍ର ଧନ୍ୟ ( ପୁଣ୍ୟବାନ୍ ) ତାଙ୍କର ( ଭ୍ରମଙ୍କର ) ବାଣୀ ( କଥା ) ଶୁଣିଛୁ 'ଏବେ' ଏହାଙ୍କର ବାଣୀକି ( କଥାକୁ ) ଶ୍ରୋତ୍ର ( କର୍ଣ୍ଣରେ ) ଶୁଣିମା 'ଏଥିରେ' ଶ୍ରୋତ୍ର ଧନ୍ୟ ହେବ । ୪୯ ।

୫୦ଶ ପଦ—ଏ ଶିରୀଷ ଅଙ୍ଗିନୀ ( କୋମଳାଙ୍ଗୀ ) ବସୁଧାଶିରୀ ( ଧରଣୀମଣ୍ଡନା ) ଏ ଶିରୀ ( ଏ ନିଶ୍ଚେ ଲକ୍ଷ୍ମୀ ) 'ଏଥିରେ' ସନ୍ଦେହ ନାହିଁ । 'ଏ' ବିଶାଳ ( ବଡ଼) ନିତମ୍ବ ଓ ରୋମାବଳୀ ବ୍ୟାଜ ( ବ୍ୟାଜରେ ) ଚନ୍ଦ୍ର

---

୧—ନଳିନୀ ପଦ୍ମିନୀ ପଦ୍ମା ବ୍ୟୋମସିନ୍ଧୂ ସରୋବରେ ଇତି ମେଦିନୀ ।
ହନ୍ତୋଽରଃ ପୀଠପଦ୍ମଂ ତଦନୁ ଚ ଲଳନାରମ୍ଭ୍ୟାବାରଭ୍ୟ ସୀମାଂ
ହସ୍ତାଭ୍ୟାଂ ବିଭ୍ରମାବ୍ଜେ ଅପି ସୁଭଗତମେ କ୍ରିଂ ଚ ସଞ୍ଚର ଗୃରୁ ।
ସ୍ନେହାର୍ଦ୍ରଂ ପ୍ରସୂନବାନାମପି ବନଜବନୀମାଦରାଦ୍ଧୂରୁଯୁଗ୍ମେ
ନ୍ୟସ୍ୟାମ୍ଭୋଜାଳଯ୍ୟାପ୍ୟପରିଚରତି ହରେସ୍ତତ୍ତ୍ୱରେତ୍ତ ପାଦପଦ୍ମଂ ।
ଇତି ନାରାୟଣଶତକେ ।

ବ୍ଯୁଚ୍ଛେଦ । ବଧାନେ ଡର୍ବାଉଁ ଦୈତ୍ୟେ ଯେ ।
ବିଶ୍ୱମ୍ଭରପତ ଜାଣି ଦେଇଛନ୍ତ ଏ ମୂର୍ତ୍ତିରେ ନାହ୍ନିଁ ହସ୍ତେ ଯେ ।୫୦।
ବରାଜମାନ ଦ୍ୱିଭୁଜ ଏହ୍ନ ହେତୁ ଶାରଙ୍ଗ ଶର ବଧୃତ ଯେ ।
ବ୍ୟାଜ ନାସିକା ଦେଖାଇ ଚଞ୍ଚୁ ଅଙ୍ଗେ 'ଖଗେଶ୍ୱର' ହ୍ନିଁ ଗୁପତ ଯେ ।
ବାହନ । ବାରୁଣ ଗତିରେ ଥିବ ଯେ ।
ବାରିଜାସନା ସରୋଜ ପାଦ ବେନ ବାଞ୍ଛା ସିଦ୍ଧ ମୋ କରିବ ଯେ ।୫୧।
ବର୍ଷ୍ମ ପୁଲକିତ ବଗ୍ଭରୁ ଏମନ୍ତ ପ୍ରିୟକ ପ୍ରିୟକ ଘେନ ଯେ ।
ବେଗରେ ହୋଇଲା ପବିଯେ ସନ୍ନିଧି ସନ୍ନିଧି ଗମେ ପାବନ ଯେ ।

---

ଗଦା ବନ୍ଧ ଅଛୁ (ଅଛନ୍ତ) । ବ୍ଯୁଚ୍ଛେଦ ବଧାନେ (ବ୍ଯୁଚ୍ଛେଦ ହେବାରେ) ଦୈତ୍ୟେ (ଦୈତ୍ୟମାନେ) ଡର୍ବାଉଁ (ଡରିଇବେ) 'ବୋଲି' ବିଶ୍ୱମ୍ଭରପତ (ନାରାୟଣ) ଜାଣିଦେଇଛନ୍ତ ନାହିଁକି ନା ? ଏ ମୂର୍ତ୍ତିରେ (ଏ ରାମାବତାରରେ) ହସ୍ତ (ହସ୍ତରେ) 'ଚକ୍ରଗଦା ଧରିବା କଥା' ନାହିଁ 'ଏମନ୍ତ ଅନୁମାନ ହୁଏ' । ୫୦ ।

୫୧ଶ ପଦ—ବରାଜମାନ (ଶୋଭନ) 'ଯାହାଙ୍କରି' ଦ୍ୱିଭୁଜ (ଦୁଇବାହୁ) ଏହ୍ନ ହେତୁ (ଏହ୍ନ କାରଣରୁ) ଶାରଙ୍ଗ (ଧନୁ) ଶର ହ୍ନିଁ (ବାଣ ମଧ୍ୟ) ଧୃତ (ଧରି ଅଛନ୍ତ), ଏଣୁ ସୀତାଙ୍କ ଭ୍ରୂଲତା ଶାର୍ଙ୍ଗ ଧନୁ, ନେତ୍ର ଦୁହେଁ ଶର ହେଲେ, ଏ ଦୁହିଁଙ୍କି ଧରି ଅଛନ୍ତ ଅଙ୍ଗେ (ଅଙ୍ଗରେ) ଖଗେଶ୍ୱର ହ୍ନିଁ (ଗରୁଡ଼ ମଧ୍ୟ) ଗୁପତ (ଗୁପ୍ତ ହୋଇଅଛି) । ନାସିକା ବ୍ୟାଜ (କପଟରେ) ଚଞ୍ଚୁ (ଥଣ୍ଟ) ଦେଖାଇ ଅଛି ବାହନ ବାରଣଗତିରେ (ଗଜଗମନରେ) ଥିବ । ଏହାଦ୍ୱାରା ସୀତାଙ୍କର ବୈଷ୍ଣବୀ ଶକ୍ତି ସୂଚିତ ହେଲା ※ । ବାରିଜାସନା (ଲକ୍ଷ୍ମୀଙ୍କର) ସରୋଜପାଦ ବେନ (ପାଦପଦ୍ମଦ୍ୱୟ) ମୋ ବାଞ୍ଛା ସିଦ୍ଧ କରିବ । ୫୧ ।

୫୨ଶ ପଦ—'ହନୁମାନ' ପ୍ରିୟକ (ପ୍ରିୟଭାବ) ଘେନ ଏମନ୍ତ ବଗ୍ଭରୁ (ବଚନରୁ) ବର୍ଷ୍ମ (ଦେହ) ପ୍ରିୟକ (କଦମ୍ବପୁଷ୍ପ ପ୍ରାୟ) ପୁଲକିତ

---

※—ତଥୈବ ବୈଷ୍ଣବୀଶକ୍ତିର୍ଗରୁଡ଼ୋପରି ସଂସ୍ଥିତା ।
ଶଙ୍ଖ ଚକ୍ର ଗଦାଶାର୍ଙ୍ଗ ଖଡ଼୍ଗହସ୍ତାଭ୍ୟୁପାଯଯୌ ।ଇତି ମାର୍କଣ୍ଡେୟ ପୁରାଣେ ।

ବୁଝ ହେ । ବୁଦ୍ଧି ଉତ୍ତମ କୋବିଦ ହେ ।
ବାନପଦେ ଉପେନ୍ଦ୍ର ଭଞ୍ଜ ବୀରବର ଶେଷ କରେ ଛାନ୍ଦ ଯେ ।୫୨।

——

## ପଞ୍ଚତ୍ରିଂଶ ଛାନ୍ଦ ।

ରାଗ—ଚନ୍ଦ୍ରାଭୈରବ ।

ବୁଧେ ଶୁଣିମା ହେଉ ସୁମନ୍ତ । ବଇଶ୍ରବଣେ ଲଙ୍କଦେବତ୍ତା ।
କହ୍ଲ ସନ୍ଦେଶ ହେଲଟି ଗୀବେଶ ବାର୍ତ୍ତ ପ୍ରବେଶ ଜାନକୀକତ୍ତ ରେ ।
ବଂଶାକ୍ଷ । ୧ ।

---

'ହେଳ' ବେଭରେ ସନ୍ନଦ୍ଧ ( ଉତ୍ତମ ସମ୍ପତ୍ତି ) ହୋଇଲା ପର୍ବତେ ପାବକ ( ହନୁମାନ୍ ) ସନ୍ନିଧି ( ସୀତାଙ୍କ ନିକଟକୁ ) ଗମେ ( ଯାଏ ) । ହେ ବୁଦ୍ଧି ଉତ୍ତମ କୋବିଦ ( ଉତ୍ତମ ବୁଦ୍ଧି ପଣ୍ଡିତମାନେ ) ବୁଝ ( ଅର୍ଥ ବୋଧକର ) ଉପେନ୍ଦ୍ରଭଞ୍ଜ ବୀରବର 'କବି' ଛାନ୍ଦ ( ଏ ଛାନ୍ଦକୁ ) ବାନପଦେ ଶେଷ କରେ । ୫୨ ।

—:O:—

### ପଞ୍ଚତ୍ରିଂଶ ଛାନ୍ଦ ।

୧ମ ପଦ—ବୁଧେ (ହେ ବୁଧଜନମାନେ) ସୁମନ୍ତ୍ର (ଉତ୍ତମମନା) 'ହୋଇ' ଶୁଣିମା ହେଉ । ଲଙ୍କାଦେବତ୍ତା ( ଲଙ୍କାଦେବୀ ) ବଇଶ୍ରବଣେ ( ରାବଣଙ୍କୁ ) ସନ୍ଦେଶ ( ବାର୍ତ୍ତା ) ବହ୍ଲ ( କହିଲ ) । ହେ ବଂଶାକ୍ଷ ( ବଂଶନେତ୍ର ) ଜାନକୀ କତ୍ତ ( ସୀତା ସମୀପରେ ) ଗୀବେଶ ୧ ବାର୍ତ୍ତ ( ସୀତାଙ୍କ ସ୍ୱାମୀ ସନ୍ଦେଶ) ପ୍ରବେଶ ହେଲଟି । ୧ ।

---

୧—ବାର୍ତ୍ତ ପ୍ରବୃତ୍ତି ବୃତ୍ତାନ୍ତ ଇତ୍ୟମରଃ ।

ବର୍ମି ଷ୍ୱପନ ଚେତ କମ୍ପନ । ବାହାରିଲ ସେ ଅଶୋକବନ ।
ବହୁତ ଢିହୁଡ଼ ଅନ୍ଧାର ଘଉଡ଼ ଶୁଭେ ମଣିମା ମଣିମା ସ୍ୱନ ସେ ।
ବାଥିରେ । ୨ ।

ବୁଲୁଅଛି ଚଣ୍ଡ ପ୍ରାୟ ନେତ୍ର । ବହୁ ଶୂଳ ଗଦା ଅସିପତ୍ର ।
ବିଂଶାର୍ଦ୍ଧ ଆନନ ଶୋଭେ ଆନ ଆନ ଆନ ନଲଙ୍ଘେ ଯା ଦେବଗୋତ୍ର ସେ
ବିଂଶାକ୍ଷ । ୩ ।

ବଡ଼ଶିକ ଉଠ ଯାଉଁ ଦୃଷ୍ଟ । ବଡ଼ଶିରେ ସୀତା କଲେ ପୃଷ୍ଠ ।
ବିଷୟମାନ ଅଭିଶୟ ସଂଶୟ ନଷ୍ଟ ହେବ ଭାବ ହେଲା ହୃଷ୍ଟ ସେ ।
ବାତଜ । ୪ ।

---

୨ୟ ପଦ—'ଲଙ୍କାଦେବୀ ଏମନ୍ତ ସ୍ୱପ୍ନରେ କହିବାରୁ' ସ୍ୱପନ (ସ୍ୱପ୍ନଚେତ) ଚେତି (ଚେତନାପାଇ) ବର୍ମି କମ୍ପନ ( ଅଶିଳ ) ; ସେ ରାବଣ ଅଶୋକବନ (ଅଶୋକବନକୁ) ବାହାରିଲା । ଅନ୍ଧାର ଘଉଡ଼ି (ଅନ୍ଧାରକୁ ତଡ଼ି ଦେଉଥିବା) ଢିହୁଡ଼ି (ବଭଙ୍ଗ) ବହୁତ ଜଳୁଅଛି । ବାଥିରେ (ବାଟରେ) ମଣିମା ମାଣିମା ସ୍ୱନ (ଡାକ) ଶୁଭେ । ୨ ।

୩ୟ ପଦ—'ବାର୍ତ୍ତା ପାଇ କ୍ରୋଧରେ' ଚଣ୍ଡପ୍ରାୟ ନେତ୍ର ବୁଲୁଅଛି, ହସ୍ତମାନଙ୍କରେ ଶୂଳ ଗଦା ଅସିପତ୍ର ( ଖଡ଼୍ଗ ) ବହିଅଛି ବିଂଶାର୍ଦ୍ଧ ଆନନ ( ଦଶମୁଖର ) ଶୋଭା ଆନ ଆନ ( ଭିନ୍ନ ଭିନ୍ନ ) 'ହୋଇଛି' । ଯା ଆନ (ଯାହାର ଗଣକୁ) ଦେବ [୧]ଗୋତ୍ର (ଦେବସମୂହ) ନ ଲଙ୍ଘନ୍ତି । 'ଏରୂପ ଦୃଷ୍ଟ ଏହି ଭାବ' । ୩

୪ର୍ଥ ପଦ—ବଡ଼ଶୀକ ( ଅଟ୍ଟାଳିକା ଉପରକୁ ) ଉଠି ଯାଉଁ ( ଯାନ୍ତେ ) ଦୃଷ୍ଟ ( ସେ ଦୃଷ୍ଟକୁ ଦେଖି ) ସୀତା ବଡ [୨]ଶୀରେ ( ଉସ୍ବରେ ) ପୃଷ୍ଠକଲେ ( ପିଠିକରି ବସିଲେ ) । ବାତଜ ( ହନୁମାନ ) 'ଚିତ୍ତରେ' ଅତିଶୟ ସଂଶୟ ଜନ୍ମିଥିବା ବିଷୟମାନ ନଷ୍ଟ (ଦୂର) ହେବ 'ଏମନ୍ତ' ଭାବ ହୃଷ୍ଟ ( ଆନନ୍ଦିତ ) ହେଲା । ୪ ।

---

୧—ଗୋତ୍ରଂ ନାମ୍ନି କୁଳେ ଚଲେ ଇତ୍ୟମରଃ ।
୨—ଭୀବର୍ଭୀ ସାଧ୍ୱଂସଭୟସ୍ମିତ୍ୟମରଃ ।

ବସେ ପାଶେ ହୋଇ ମଧୁ ବ୍ରତେ । ବାଣୀ ସରସ ଶର କି ଶ୍ରୁତେ ।
ବସଇ ଭ୍ରଷଇ ଦୈତ୍ୟ ନ ବସଇ କପିଁ। କୃପା ମୋହଠାରେ ତତ୍ତେରେ
ବର୍ଣ୍ଣି ! ୫ ।

ବଦାନ୍ୟ ଯେ ଲୋକେ ହୋଇଥାଇ । ବୃଦ୍ଧ ତନୁ ଦାନ କି ନ ଦେଇ ।
ନିଧିରେ ତୁ ନିଧିରୂପା ରସନିଧି ମୁଁ ଯେ ତୋହର ସନ୍ନିଧିସ୍ଥାୟୀ ରେ
ବର୍ଣ୍ଣି । ୬ ।

---

୫ମ ପଦ—'ନିଃସଂଶୟ ହେବା ମାନସେ ହନୁମାନ' ମଧୁ ବ୍ରତେ (ଗୋଟିଏ ଭ୍ରମର) ହୋଇ ପାଶେ ( ପାଖରେ ) ବସେ, ବାଣୀ ( କଥା ) ଶ୍ରୁତେ (ଶୁଣିମାରେ) ସରସ 'ହେବ କି' ଶର 'ପ୍ରାପ୍ତ ହେବ' 'ଏମନ୍ତ ଭାଳି' । ଦୈତ୍ୟ ( ରାବଣ ) ବସଇ ଭ୍ରଷଇ ହେ ୧ବର୍ଣ୍ଣି ! 'ତୋ' ତତେ କୃପା ମୋହଠାରେ (ମୋ ଉପରେ) କପିଁ। ନ ବସଇ (ବସୁନାହିଁ) । ୫ ।

୬ଷ୍ଠ ପଦ—ଯେ ( ଯେଉଁଲୋକ- ) ଲୋକେ ( ସଂସାରରେ ) ବଦାନ୍ୟ (ବଡ଼ ଦାନୀ) ହୋଇଥାଇ ବୃଦ୍ଧ (ବୃଦ୍ଧରକର) ସେ ( ଲୋକ ) କଣକୁ ଦାନ ଦେଇ କି (ସମସ୍ତଙ୍କୁ ଦାଅଇ ସିନା) । ନିଧିରେ ( ସ୍ୱଭାବତଃ ) ତୁ ୧ନିଧିରୂପା (ନିଧିସ୍ୱରୂପା); 'ତୁ ଅବା ବୋଲିବୁ କପିଶ ?' 'ମୁଖ ମହାପଦ୍ମ ପାଦପଦ୍ମ କରପଦ୍ମ କଣ୍ଠଶଙ୍ଖ ପଦତଳରେ ମକର ଚିହ୍ନ ପାଦପୃଷ୍ଠରେ କଚ୍ଛପ ଚିହ୍ନ ଦନ୍ତ କୁନ୍ଦ କେଶ ନୀଳ' ପୁଣି ତୁ ରସନିଧି (ଶୃଙ୍ଗାର ଓ ଅନୁରାଗର ନିଧି) 'ଏହାଦ୍ୱାରା ମୁକୁନ୍ଦ ସ୍ୱୀକୃତ ହେଲା' । ନାହିଁକିନା,ରସନିଧି (ଜଳନିଧିରେ) ୨ମୁକୁନ୍ଦଅଛନ୍ତି । ଏରୂପେ ଅଷ୍ଟନିଧି ସ୍ୱରୂପା ତୁ'ରେ ବର୍ଣ୍ଣି ! ମୁଁ ଯେ ତୋହର ସନ୍ନିଧିସ୍ଥାୟୀ (ନିକଟବର୍ତ୍ତୀ) 'ହୋଇଅଛି' 'ତୁ ନାହିଁକି କୃପଣ ଭାବ କରୁଛୁ' । ୬ ।

---

୧—ଦାରବାହ୍ଲି ନିକୁଞ୍ଜ ମିତ୍ୟମତଃ

୧—ତଦୁକ୍ତମାଗମେ—ମହାପଦ୍ମଶ୍ଚ ପଦ୍ମାଶ୍ଚ ଶଙ୍ଖୋ ମକରକଚ୍ଛପୌ ।
ମୁକୁନ୍ଦକୁନ୍ଦନୀଲାଶ୍ଚ ଇତ୍ୟଷ୍ଟୌ ନିଧୟଃ ସ୍ମୃତା ଇତି ।

୨—ମୁକୁନ୍ଦୋନିଧିଭିଦ୍ ବଷ୍ଟୌ ରତ୍ନଭେଦେ ଚ କୁନ୍ଦୁରୌ । ଇତିମେଦିନୀ ।

ବିଧୁକର ବଲ୍ଲଭ ପଦ୍ମନୀ । ବିଳସଇ ସେ ମଧୁପ ଧେନ ।
ବିଧୁକରବଂଶୀ ପ୍ରିୟା ତୁ ପଦ୍ମନୀ ମୁଁ ମଧୁପ ହୁଅ ରସଦାନେ ରେ ।
ବଙ୍ଗି । ୭ ।

ବାରି ପାଶକୁ ତୃଷାର୍ତ୍ତୀ ଯାଇ । ବିଗ୍ରହଟ କରେ ସେ କ ନାହିଁ ।
ବାରିଦବାରିରେ ଆଶାୟୀ ଗୃଢକ ତୃଷା ନବାରେ ଭୁଷାର ପିଇ ରେ ।
ବଙ୍ଗି । ୮ ।

ବହୁ-ନାୟିକା-ବଲ୍ଲଭ ଶଙ୍କା । ବହୁ ବିମୁଖ ପାଞ୍ଚ ରସିକା ।
ବିପ୍ରଲବ୍ଧା ସ୍ତ୍ରୀମ ସୁଷମ ସମସ୍ତେ ହେବେ ହେବୁ ସ୍ୱାଧୀନଭର୍ତ୍ତୃକା ରେ
ବଙ୍ଗି । ୯ ।

---

୭ମ ପଦ—ବିଧୁକର ( ସୂର୍ଯ୍ୟଙ୍କର ) ପଦ୍ମନୀ ବଲ୍ଲଭ 'ଅଟେ' । ସେ ( ପଦ୍ମନୀ ) ମଧୁପ ( ଭ୍ରମର ) ଧେନ (ସଙ୍ଗେ) ବିଳସଇ ( କ୍ରୀଡ଼ାକରେ ) । 'ସେହିପରି' ତୁ ବିଧୁକରବଂଶୀ ପ୍ରିୟା ( ରାମଚନ୍ଦ୍ରଙ୍କ ) ପଦ୍ମନୀ ( ସ୍ତ୍ରୀ ) ଅଟୁ, ରେ ବଙ୍ଗି ! ମୁଁ ମଧୁପ ( ଭ୍ରମର ) ମୋଠାରେ ରସଦାନେ ହୁଅ (ମୋସଙ୍ଗେ ବିଳାସ କର ) । ୭ ।

୮ମ ପଦ—ତୃଷାର୍ତ୍ତି ( ତୃଷାତୁର ଜନ ) ବାରି ( ଜଳ ) ପାଶକୁ ( ପାଖକୁ ) ଯାଇ ( ଯାଏ ) । ସେ ( ଜଳ ) 'ତାକୁ' ନାହିଁ କରେ କି ? 'ତୃଷାର୍ତ୍ତି ପିଏ' । ବିଗ୍ରହଟ ( ମନରେ ବିଗ୍ରହ କରିତ ) ବାରିଦ ବାରିରେ ( ମେଘଜଳରେ ) ଆଶାୟୀ ( ଆଶାର୍ଥୀ ) ଗୃଢକ ଭୁଷାର ( କାକର ) ପିଇ ତୃଷା ବାରେ (ନବାରେ) କି 'ନବାରଇ ନାହିଁ' । ରେ ବଙ୍ଗି ! 'ସେହିପରି ଅନ୍ୟ ସ୍ତ୍ରୀ ସମ୍ଭୋଗରେ ତୋ ବିନା ମୋ ଚିତ୍ତ ସନ୍ତୋଷ ନୁହଇ ଏହି ଭାବ' ।୮।

୯ମ ପଦ—ହେ ରସିକା ! (ହେ ଅନୁରାଗିଣି ) 'ମୋତେ' ବହୁନାୟିକା ବଲ୍ଲଭ ଶଙ୍କା ( ଏ ବହୁତ ନାୟିକାର ପତି ଏମନ୍ତ ଆଶଙ୍କା ) ପାଞ୍ଚ ( ଭାବ ) ବିମୁଖ ବହୁ ( ବହୁଅଛୁ ) କି ? । ସମସ୍ତେ ( ସେ ନାୟିକା ସବୁ) ୧ବିପ୍ରଲବ୍ଧା ( ସ୍ତ୍ରୀ) ସମ (ସମାନ) ସୁଷମ (ଶୋଭନ) ହେବେ । 'ନିତାନ୍ତ ଅବମାନିତା

---

୧—ପ୍ରିୟଃ କୃତ୍ୱାପି ସଙ୍କେତଂ ଯସ୍ୟା ନାୟାତି ସନ୍ନିଧିଂ ।
ବିପ୍ରଲବ୍ଧାପି ସା ଜ୍ଞେୟା ନିତାନ୍ତ ମବମାନିତା । ଇତି ଦର୍ପଣେ

ବିଂଶ ସପ୍ତାଧିକ ତାରାପତି । ବିଧୂ ରୋହିଣୀ ତା ପ୍ରିୟବତୀ ।
ବିକୃତ ନୁହ ମୁଁ ସୁକୃତ କରୁଛୁ ତୋହ କୃତରସେ ମୋର ପ୍ରୀତି ରେ ।
ବରାଙ୍ଗି । ୧୦ ।

ବାଣୀ ବାଣ ମୋହର ହୋଇଲା । ବ୍ୟଥା ସୀତାକୁ ଦେଲା ଜାଣିଲା ।
ବେଦବତୀ-ମତି ନ ପୁଣ ଯୁବତୀ ଶାପ ଦେବ ଏ ଭୟେ ଉଠିଲା ସେ
ବିଂଶାକ୍ଷ । ୧୧ ।

ବୋଇଲା ସେ-ଏ ମାସେ ରମଣୀ । ବଲ୍ଲଭକୁ ନ ପାରିଲେ ଆଣି ।
ବଧିବି ଅବଧି ଚନ୍ଦ୍ରହାସ ଯେନି ଚନ୍ଦ୍ରହାସଶୋଭି ଥାଅ ଜାଣି ରେ ।
ବରାଙ୍ଗି । ୧୨ ।

---

ହେବେ ଏହି ଭାବ' । ରେ ବରାଙ୍ଗି ତୁ [୨]ସ୍ୱାଧୀନ ଭର୍ତ୍ତୃକା ହେବୁ । 'ତୋ ସମୀପ ଛାଡିବି ନାହିଁ ଏହି ଭାବ' । ୯ ।

୧୦ମ ପଦ—ବିଂଶ ସପ୍ତାଧିକ ତାରାପତି ( ସତାଇଶ ନକ୍ଷତ୍ରର ପତି ) ବିଧୂ ( ଚନ୍ଦ୍ର ); ତା ପ୍ରିୟବତୀ ( ତାହାର ପ୍ରିୟା ) ରୋହିଣୀ 'ଅଛି' । 'ସେହିପରି ମୋହର ଅନେକ ସ୍ତ୍ରୀ ଥିଲେ ମଧ୍ୟ ତୁ ପ୍ରିୟାହେବୁ ଏହି ଭାବ' । ରେ ବରାଙ୍ଗି ! ତୁ ବିକୃତ ନୁହ ( ବିମନା ନ ହୁଅ ), ମୁଁ ସୁକୃତ (ପୁଣ୍ୟମ) କରୁଛୁ ତୋହ କୃତରସେ ( ତୋହଦ୍ୱାରା କରାଯାଇଥିବା ରସରେ ) ମୋର ପ୍ରୀତି ହୋଇଅଛୁ । ୧୦ ।

୧୧ଶ ପଦ—ମୋହର ବାଣୀ ( ଗୁଡୁକଥା ) ବାଣ (ଶର ) ହୋଇଲା । ଏ ସୀତାକୁ ବ୍ୟଥା ( କଷ୍ଟ ) ଦେଲା 'ଏମନ୍ତ' ଜାଣିଲା । ବେଦବତୀ ମତି ( ବେଦବତୀ କନ୍ୟାପରି ) ଏ ଯୁମତି ( ସୀତା ) ନ ପୁଣ ( କାଳେ ) ଶାପ ଦେବ ଏ ଭୟେ ( ଏହି ଭୟରେ ) ସେ-ବିଂଶାକ୍ଷ ( ରାବଣ ) ଉଠିଲା ।୧୧।

୧୨ଶ ପଦ—ସେ ( ରାବଣ ) ବୋଇଲା ରେ ରମଣୀ ! ଦ୍ୱିମାସେ ( ଦୁଇମାସରେ ) ବଲ୍ଲଭକୁ ( ତୋ ପତିକ) ଆଣି ନ ପାରିଲେ [୧] ଚନ୍ଦ୍ରହାସ

---

[୨]—କାନ୍ତୋ ରତିଗୁଣାକୃଷ୍ଟୋ ନ ଜହାତି ଯଦନ୍ତିକଂ ।
ବିଚିତ୍ର ବିଭ୍ରମାସକ୍ତା ସା ସ୍ୟାତ୍ ସ୍ୱାଧୀନଭର୍ତ୍ତୃକା । ଇତି ।

[୧]—ଚନ୍ଦ୍ରହାସୋ ଦଶଗ୍ରୀବ କରବାଳେଽସିମାତ୍ରକେ । ଇତି ।

ବହୁମୂଲ୍ୟ ରତ୍ନ ଯୋଗୀଠାବେ । ବନ୍ଧା ହୋଇଥାଇ କରେ ତେବେ ।
ବଳ କରିବା କରଣୀ ତାର କାହିଁ ପଡ଼େ ତସ୍କର କରରେ ଯେବେ ରେ
ବରାଙ୍ଗି । ୧୩ ।

ବାହୁଡ଼ିଲ ସେ ସକ୍ରୋଧ ହୋଇ । ବାଟେ ରାକ୍ଷସୀମାନଙ୍କୁ କହି ।
ବଶତ ନୋହିଲ ସ୍ନେହରେ କହନ୍ତେ ଏବେ ରହରେ ଭୟଦେଖାଇ ସେ
ବାମାକୁ । ୧୪ ।

ବୋଲନ୍ତେ ବାହୁଡ଼ିଣ ନିଶାଚରୀ । ବେଢ଼ି ଭୟଙ୍କର ରୂପ ଧରି ।
ବାଣ୍ଟି ଫଳ ଫଳ କରି ଏହା ଫଳ ଶିରେ ଉପଳ ଡାଡ଼ ପ୍ରସ୍ତର ସେ ।
ବାମାଏ । ୧୫ ।

---

( ଖଡ୍‌ଗ ) ଘେନି ଅବଧ୍ୟ ( ଅବଶ୍ୟ ) ବଧିବ ( ମାରିବ ) 'ସଂଶୟ ନାହିଁ ।'
ହେ [୨]ଚନ୍ଦ୍ରହାସଶୋଭି ! ଜାଣିଥାଅ । ୧୨ ।

୧୩ଶ ପଦ—ରେ ବରାଙ୍ଗି ! ବହୁମୂଲ୍ୟରତ୍ନ ଯେ; ଯୋଗୀ (ଯୋଗିଜନ) ତାହା କରରେ ( ହସ୍ତରେ ) 'ଯେହ୍ନେ' ବନ୍ଧା ହୋଇଥାଇ ସେ ଯେଉଁ ରତ୍ନ ସେ ତସ୍କର ( ଚୋର ) ତାହା କରରେ ପଡଇ ଯେବେ, ତେବେ ସେ ଯେଉଁ ଯୋଗୀ ( ରାମ ) ତାହାର ବଳ କରି ନେବା କରଣୀ କାହିଁ ? 'ସେପରି ତୋତେ ମୋଠାରୁ ଶ୍ରୀରାମ ନେଇ ନ ପାରିବ ଏମନ୍ତ ଭାବ' ।୧୩।

୧୪ଶ ପଦ—ଏମନ୍ତ କହି ସେ (ରାବଣ ) ସକ୍ରୋଧ (କ୍ରୋଧଯୁକ୍ତହୋଇ) ବାହୁଡ଼ିଲା । ବାଟେ ( ବାଟରେ ) ରାକ୍ଷସୀମାନଙ୍କୁ କହି ( କହିଲ ) ସ୍ନେହରେ ବଶ ତ ନୋହିଲ ଏବେ ସେ ବାମାକୁ ରହରେ (ଏକାନ୍ତରେ) ଭୟ ଦେଖାଇ କହରେ ( କହବରେ ) । ୧୪ ।

୧୫ଶ ପଦ—ବୋଲନ୍ତେ ( ରାବଣ ଏମନ୍ତ ବୋଲନ୍ତେ ) ନିଶାଚରୀ ( ରାକ୍ଷସୀମାନେ ) ବାହୁଡ଼ିଲେ । ଭୟଙ୍କର ରୂପକୁ ଧରି ବେଢ଼ି କହିଲେ ହେ ବାମାଏ ( ବାମାମାନେ ), ଏହା ଶିରେ ( ମୁଣ୍ଡରେ ) [୧]ଉପଳ ( ପଥର )

---

[୨]—ଚନ୍ଦ୍ରପ୍ରାୟ ହାସ ଶୋଭା ଯାହାର ବା ଚନ୍ଦ୍ର-ସୁବର୍ଣ୍ଣ ପରି ହାସ-ହ୍ରାନାଶ ଅଟେ ଶୋଭା ଯାହାର ।

[୧]—ପାଷାଣପ୍ରସ୍ତରଗ୍ରାବୋପଲାଶ୍ମାନଃ ଶିଳାଦୃଷଦତ୍ୟମରଃ ।

ବଶ ନୋହେ ଏ ରାଜାଧିରାଜେ । ବଡ଼ପଣ ଦେଖାଇଛୁ ଧୈର୍ଯ୍ୟେ ।
ବାୟସୀ ହଂସପ୍ରେପ୍ସୁସୀ ଯୋଗ କାହିଁ ବର୍ଣ୍ଣ ଅଶିତ ଶୀତ କି ଭଜେ ଗୋ
ବାମାଏ । ୧୬ ।

ବ୍ୟବହାର ଏହା ଶୁକ ପରି । ବଳସନ୍ତାଂ ସୁବର୍ଣ୍ଣପଞ୍ଜରୀ ।
ବନଭବନ ଭାବନା ଏକା କରେ ଭଲ ପଢ଼ାଇଛୁ ଜଟାଧାରୀ ଗୋ ।
ବାମାଏ । ୧୭ ।

ବୋଲୁଅଛୁ ଏକା ରାମ ରାମ । ବନ୍ଦୀମୋକ୍ଷଣେ ହେବ କି କ୍ଷମ ।
ବିବେକ ପ୍ରଚରି ପକ୍ଷୀ ବନଋକ୍ଷ ବାଇ ପଶୁ ଋଷି ଏ ସୁଷମ ଗୋ ।
ବାଇଁବି । ୧୮ ।

---

ତାଡ ( ତାଡ଼ନ ) ପ୍ରଗୃଶ ( କରି ) ୨ପଲ (ମାଂସକୁ ) ପଲ ପଲ କରି ( ପଲେ ପଲେ ତଉଲ ) ବାଣ୍ଟି ଖାଇବା । ଉଚ୍ଚାର କେହୁ ବୋଲନ୍ତୁ ବାମାଏ ( ବାମାମାନେ ) ଉଚ୍ଚାର ( ଏମନ୍ତ କହୁଲେ) । ୧୫ ।

୧୬ଶ ପଦ—'ସୀତାଙ୍କୁ ଆକ୍ଷେପ କରି ରାକ୍ଷସୀଏ ବୋଇଲେ' ରାଜାଧିରାଜେ ( ରାବଣଠାରେ ) ବଶ ନୋହୁ ଏ ଧୈର୍ଯ୍ୟେ ( ଧୀରଭାବରେ) ବଡ଼ପଣ ଦେଖାଉଛୁ । ବାୟସୀ ( କାକସ୍ତ୍ରୀକୁ ) ହଂସପ୍ରେପ୍ସୁସୀ (ହଂସୀହେବା) ଯୋଗ କାହିଁ, ଅଶିତ ( କୃଷ୍ଣବର୍ଣ୍ଣ ) ଶୀତବର୍ଣ୍ଣ ( ଶୁକ୍ଳବର୍ଣ୍ଣକୁ ) ଭଜେ କି ? ଆଗୋ ବାମାଏ ! 'ଏ ସେହିପରି ଭଲ କଥାକୁ ଦେଖୁନାହିଁ' । ୧୬ ।

୧୭ଶ ପଦ—ଏହା ବ୍ୟବହାର ଶୁକପରି, ଶୁକ ଯେମନ୍ତେ ସୁବର୍ଣ୍ଣପଞ୍ଜରୀ 'ମଧ୍ୟରେ' ବଳସିଲେ ବନଭବନ ( ବନବାସକୁ ) ଏକା ଭାବନା କରେ* ଏ ବାମାକୁ ଜଟାଧାରୀ ଭଲ ପଢ଼ାଇଛୁ । ୧୭ ।

୧୮ଶ ପଦ—ଏକା ( କେବଳ ) ରାମ ରାମ ବୋଲୁଅଛୁ, ବନ୍ଦୀ ମୋକ୍ଷଣେ ( ଏହାର ବନ୍ଦୀ ମୋକ୍ଷଣରେ ) କି ( କେଉଁମାନେ ) କ୍ଷମ (ସମର୍ଥ) ହେବ, ରେ ବାଇଁତି ! 'ଏମନ୍ତ' ବିବେକ ( ବିଚାର ) ପ୍ରଚରି ( ପ୍ରଗରୁଛୁ ) ପକ୍ଷୀ, ବନଋକ୍ଷ, ବାଇ, ପଶୁ ଏ ଋଷି ଉପମା ଏ ( ଏ ଋଷିଙ୍କ ସହିତ ଏ ପରସ୍ପର ସମାନ କରୁଛୁ ଭଲ ମନ୍ଦ ଜାଣନ୍ତୁ ନାହିଁ) । ୧୮ ।

---

୨—ପଲମୂଲ୍ଲାନମାଂସଯ୍ୟୋରତିରୁଦ୍ର ।

* ତଥାପି ଜନ୍ମବଟପି ଝୋଡ଼େ ମନୋ ଧାବତି ଇତି ।

ବୋଧି ତ୍ରିଜଟା ତାହାଙ୍କୁ ରଖି । ବୋଲେ ସୀତା ଶୀତାଂଶୁ ସୁମୁଖୀ
ବରୁଣଦିଗେ କି ତରୁଣଅରୁଣ ଉଦେ ହୋଇଛୁ କେ ଅଛ ଦେଖିଗୋ ।
ବାମାଏ । ୧୯ ।

ବିକଶିଛୁ କି ଶିଖରଶିଖେ । ବିନା ଜଳରେ ପଦ୍ମ ତା ସୁଖେ ।
ବନ୍ଧନ ଆଶାବନ୍ଧରେ କି କୁଞ୍ଜର ଶୁଣା ପ୍ରବନ୍ଧ କି ମୂର୍ଖମୁଖେ ଗୋ ।
ବାମାଏ । ୨୦ ।

ବଳିପଡ଼ ବା ଏମାନ ହେବ । ବଇଦେହୀ ଚିତ୍ତ ନ ଟଳିବ ।
ବିନାଶ୍ରୀରାମରେ କୋଟିଏ କାମରେ ଏତ ପାମରେ କି ସମ୍ଭବିବ ଗୋ ।
ବାମାଏ । ୨୧ ।

---

୧୯ଶ ପଦ—'ରାକ୍ଷସୀଏ ଏମନ୍ତ ବୋଲିବା ଶୁଣି' ତ୍ରିଜଟା ( ରାକ୍ଷସୀ ) ତାହାଙ୍କୁ ବୋଧି (ବୋଧକରି) ରକ୍ଷି ( ରଖିଲା ) । ଶୀତାଂଶୁମୁଖୀ (ଚନ୍ଦ୍ରମୁଖୀ) ସୀତାବୋଲେ (ବୋଇଲେ) ଆଗୋ ବାମାଏ । ବରୁଣଦିଗେ ( ପଶ୍ଚିମରେ ) ତରୁଣ ( ନବୀନ ) ଅରୁଣ ( ସୂର୍ଯ୍ୟ ) ଉଦେ ହୋଇଛୁ କେ ( କେହି ) ଦେଖିଅଛ । ୧୯ ।

୨୦ଶ ପଦ—ଆଗୋ ବାମାଏ ! ଶିଖର ଶିଖେ ( ପର୍ବତ ଶିଖରେ ) ବିନା ଜଳରେ ( ଜଳବିନା ) ତା ସୁଖେ ( ତା ସୁଖରେ ) ପଦ୍ମ ବିକଶିଛୁ କି ? ( ଫୁଟିଛୁ କି ) ? କୁଞ୍ଜର ( ହସ୍ତୀ ) ୧ଆଶା ବନ୍ଧରେ ( ବୃଦ୍ଧିଆଣୀ ସୂତାରେ ) ବନ୍ଧନ 'ହେବା' ଓ ମୂର୍ଖି ମୁଖେ (ମୂର୍ଖଲୋକ ମୁଖରେ) ୨ପ୍ରବନ୍ଧ 'ପାଠ' ଶୁଣା 'ଯାଇଛୁ' କି ? ।୨୦।

୨୧ଶ ପଦ—ଆଗୋ ବାମାଏ ! ବଳି ପଡ଼ ବା ଏମାନ ହେବ (ପଶ୍ଚିମେ ସୂର୍ଯ୍ୟୋଦୟାଦି କଥାମାନ ଅବା ହୋଇପାରେ) 'କଦାପି' ବଇଦେହୀ ( ସୀତାର ) ଚିତ୍ତ ଶ୍ରୀରାମରେ ବିନା କୋଟିଏ ( କୋଟିସଂଖ୍ୟକ କାମରେ ) ନ ଟଳିବ । ଏତ ୩ପାମର ( ନୀଚ ) ଏହାଠାରେ ସମ୍ଭବିବ କି ? ( ସମ୍ଭବିବ ନାହିଁ ) । ୨୧ ।

---

୧—ଆଶାବନ୍ଧଃ ସମାଶ୍ବାସେ ତଥାମୂର୍କଟ ପାଶକେ ୯ଢ ବସ୍ତୁଃ ।

୨—ସନ୍ଦର୍ଭସ୍ତୁ ପ୍ରବନ୍ଧଃ ସ୍ୟାଦଥ ଶକାଣ୍ଡ ଶେଷଃ ।

୩—ପାମରୋନୀଚଃ ପ୍ରାକୃତଶ୍ଚେତ୍ୟମରଃ ।

ବୋଲି ମଉନ ଜାନକୀ ହେଲେ । ବିଭବରୀ ଶେଷ ଏହିକାଳେ ।
ବିରଞ୍ଚି ନାରଦ ତୁମ୍ବୁରୁ ଲଙ୍କାରେ ସେବା କରିବାକୁ ଆସିଲେ ଯେ ।
ବେଗରେ । ୨୨ ।

ବେଦ ବୀଣା ସ୍ତୁତି ଆରମ୍ଭଣେ । ବୋଲେ ଦ୍ୱାସ୍ଥ କେଉଁ ବଡ଼ପଣେ ।
ବିଷୟ ନଜାଣି ହୁଅ କଳକଳ ରହ ସକଳେ ମଉନେ କ୍ଷଣେ ହେ ।
ବିବୁଧେ ।୨୩।

ବିଶେଷ ବୋଲି ବୋଲେ ତ୍ୱରିତ । ବ୍ୟାଧି ରାଜା ଅନ୍ତର୍ଗତେ ଜାତ
ବୈଦେହୀପାଚନ ରସରତ୍ନାକର ବିରଚନକୁ ଅଛି ଚିନ୍ତ ହେ ।
ବିବୁଧେ । ୨୪ ।

---

୨୨ଶ ପଦ—ଜାନକୀ 'ଏମନ୍ତ' ବୋଲି ମଉନ ( ତୁନି ) ହେଲେ ଏହିକାଳେ ( ଏ ସମୟରେ ) ବିଭାବରୀ ( ରାତ୍ରି ) ଶେଷ 'ହେଲା' । ଲଙ୍କାରେ ସେବା କରିବାକୁ ( କରିବା ନିମିତ୍ତ ) ବିରଞ୍ଚି ( ବ୍ରହ୍ମା ) ନାରଦ ତୁମ୍ବୁରୁ 'ଗନ୍ଧର୍ବ' 'ଏମାନେ' ବେଗରେ ଆସିଲେ । ୨୨ ।

୨୩ଶ ପଦ—'ବ୍ରହ୍ମା' ବେଦ 'ନାରଦ' ବୀଣା 'ତୁମ୍ବୁରୁ' ସ୍ତୁତି ଆରମ୍ଭଣେ (ଆରମ୍ଭ କରନ୍ତେ) ଦ୍ୱାସ୍ଥ (ଦ୍ୱାରୀ) ବୋଲେ କେଉଁ ବଡ଼ପଣେ 'ତୁମ୍ଭେମାନେ' ବିଷୟ ନଜାଣି (ନ ବୁଝି) ୧କଳ କଳ ହୁଅ (କୋଳାହଳ କରୁଅଛ) ବିବୁଧେ (ହେ ଦେବତାମାନେ) ସକଳେ (ତୁମ୍ଭେ ସମସ୍ତେ) କ୍ଷଣେ (କ୍ଷଣକାଳ) ମଉନେ (ତୁନି ହୋଇ) ରହ । ୨୩ ।

୨୪ଶ ପଦ—'ଏମନ୍ତ ଦ୍ୱାରପାଳ କହିବାର ଶୁଣି' କି ବିଶେଷ ? ( ବିଷୟ କଣ-ଜାଣିବାପାଇଁ ) ବୋଲି ( ଏମନ୍ତ ବ୍ରହ୍ମା କହିଲନ୍ତେ ) ତ୍ୱରିତେ (ଶୀଘ୍ର) 'ଦ୍ୱାରପାଳ' ବୋଲେ । ରାଜା ଅନ୍ତର୍ଗତେ (ରାଜାଙ୍କ ଅନ୍ତଃକରଣରେ) ବ୍ୟାଧି ଜାତ 'ହୋଇଅଛି' । ହେ ବିବୁଧେ ! ବୈଦେହୀ ପାଚନ (ପିପ୍ପଳ ପାଚନ) ରସରତ୍ନାକର 'ନାମକ ବଟିକା' ବିରଚନକୁ ( ରଚିବାକୁ )

---

୧—କୋଳାହଳଃ କଳକଳ ଇତ୍ୟମରଃ ।

ବ୍ରହ୍ମା ବୋଲେ ତେବେ ସନ୍ନିପାତ । ବିନାଶନେ ତେଜ ହୁଏ ସତ ।
ବହିଲ ଭଙ୍ଗୀରେ ନ ବୁଝି ଇଙ୍ଗିତ ଜାଣ ପର ସଙ୍ଗୀତ ସାହିତ୍ୟ ହେ ।
ବିଧାତ । ୨୫ ।
ବିଧ୍ୱଂସନ ତମସ କ୍ରମରେ ବିକର୍ତ୍ତନ ଉଦେ ହୋଇ ଆସେ ।
ବିଶ୍ୱଚତୁର ଉକୁଟାଇ କସ୍ତୁରୀ ଯେହ୍ନେ କୁଙ୍କୁମ ଚୂର୍ଣ୍ଣରେ ମେ ।
ବିଗ୍ରହେ । ୨୬ ।

---

ଚିତ୍ତ ଅର୍ପିତ ( ଅନୁରକ୍ତ ) ହୋଇ ଅଛୁ * 'ଅନ୍ୟ ବିଷୟରେ ନାହିଁ ତେଣୁ ତୁମ୍ଭ ହେବାକୁ କହିଲି ଏହୁ ଫଳିତାର୍ଥ' । ୨୪ ।

୨୫ଶ ପଦ—'ହରି କଥା ଶୁଣି' ବ୍ରହ୍ମା ବୋଲେ ( ଶ୍ଳେଷାର୍ଥ ଭଙ୍ଗୀ ଗର୍ଭବଚନକୁ ବୋଇଲେ ) 'ଯେବେ ବୈଦେହୀ ପାତନ ଓ ଭସରତ୍ନାକର ବଟିକା ବିରଚିବାକୁ ରାଜାର ମନ ହେଲା' ତେବେ ସନ୍ନିପାତ ( ଶ୍ଳେଷ୍ମ ) ବିନାଶନେ ( ବିନାଶନ ହୋଇ ) ତେଜ ହୁଏ ସତ ( ମିଥ୍ୟା ନୁହେଁ ) 'ହରି ଶ୍ଳେଷାର୍ଥ ଯେହ୍ନ କହିଲ' ବୈଦେହୀ ( ସୀତାଙ୍କର ) ପାତନ ( ପରିପକ୍ୱ ) ରସ ( ଶୃଙ୍ଗାରରସ ) ରତ୍ନାକର ବିରଚନକୁ 'ରାଜାର' ଚିତ୍ତ ଅର୍ପିତ 'ହୋଇଅଛୁ' 'ଏମନ୍ତ ମୁଁ କହିଲି ବୋଲି' ତେବେ ¹ତେଜ ( ପ୍ରତାପ ) ବିନାଶନେ ( ବିନାଶନ ହୋଇ ) ସନ୍ନିପାତ ( ସମ୍ୟକ୍ ପ୍ରକାରେ ନିପାତନ ) ହୁଏ 'ଏକଥା' ସତ । 'ଏରୂପ ଶ୍ଳେଷାର୍ଥରେ ଭଙ୍ଗୀ କରି କହିଲେ' । 'ହରି' ଏମନ୍ତ ବୁଝି ବୋଇଲେ, ହେ ବିଧାତ ! 'ଆପଣ' ସଙ୍ଗୀତ ( ସଙ୍ଗୀତ ଶାସ୍ତ୍ର ) ସାହିତ୍ୟ ( ଅଳଙ୍କାର ଶାସ୍ତ୍ର ) ଜାଣ ପର ? 'ମୋ କହିବା କଥା' ନ ବୁଝି ଭଙ୍ଗୀ (ଭଙ୍ଗୀରେ) ତ ଇଙ୍ଗିତ ବହିଲ (କଲ) । ୨୫ ।

୨୬ଶ ପଦ—ବିକର୍ତ୍ତନ ( ସୂର୍ଯ୍ୟ ) ଉଦେ ହୋଇ ଆସେ ( ଆସନ୍ତେ ) ତମସ ( ଅନ୍ଧକାର ) କ୍ରମରେ ( କ୍ରମରେ ) ବିଧ୍ୱଂସନ ( ନାଶ ) 'ହେଲା'

---

*—ବ୍ରହ୍ମନ୍ନଧ୍ୟୟନସ୍ୟ ନୈଷ ସମୟସ୍ତୂଷ୍ଣୀଂ ବହିଃସ୍ଥୀୟତାଂ ।
ସ୍ୱଳ୍ପଂ ଜଳ୍ପ ବୃହସ୍ପତେ ଜଡ଼ମତେ ନୈଷା ସଭା ବଜ୍ରିଣଃ ।
ବୀଣାଂ ସଂହର ନାରଦ ସ୍ତୁତିକଥାଲାପୈରଲଂ ତୁମ୍ବୁରୋ
ସୀତାରଲ୍ଲକଭଲ୍ଲଭିନ୍ନହୃଦୟଃ ସୁସ୍ଥୋ ନ ଲଙ୍କେଶ୍ୱରଃ ଇତିମହାନାଟକେ
¹—ତେଜଃ ପ୍ରତାପେ ଧାମ୍ନି ଚ ବଲେ ଶୁକ୍ରେଽପୀତି ।

ବୃଷା ବାହାର ଚଢ଼ି କୁଞ୍ଜର । ନ୍ୟକତ କି ତା ଶିର-ସିନ୍ଦୂର ।
ବହେ ରଙ୍ଗାମ୍ବରେ ଛନ୍ଦ ଆଡ଼ମ୍ବରେ ଅମ୍ବରେ କି ଦିଗପରିବାର ସେ ।
ବିରଚେ । ୨୭ ।
ବାହାରିଲେ ଐନ୍ଦ୍ରୀ ଏ ଆନନ୍ଦ । ବାଜେ ଦେବାଳୟେ ଶଙ୍ଖବୃନ୍ଦ ।
ବସିଲେ କ୍ରୋଡ଼େ ଲୁଚିଲେ ଘଟିଚରେ ନମୁଞ୍ଚିଲେକଦାଭୟହୃଦସେ ।
ବାସରେ । ୨୮ ।

---

'ଚନ୍ଦ୍ର' କବି ଉତ୍ପ୍ରେକ୍ଷା କଲେ ତା ନୁହେଁ' । ବିଶ୍ୱର୍ଚୀରୂପୀ (ସଂସାରରୂପଚରୂଷୀସ୍ତ୍ରୀ) କସ୍ତୁରୀ ଉକ୍ରୁଟାଇ (ଦେହରେ କସ୍ତୁରୀ ବୋଳି ଛଡ଼ାଇ ହୋଇ ସାର) ସ୍ବର୍ଷ୍ଣ ବର୍ଣ୍ଣ (ବର୍ଣ୍ଣ ସୁନ୍ଦର ଦିଶିବା ସ୍ବରୂପୀ ବଶରେ) ବିଗ୍ରହେ ( ଦେହରେ ) କୁଙ୍କୁମ ଦେନେ ( ଦେଉଛି )। ଅନ୍ଧକାର ଯିବାରୁ ସୂର୍ଯ୍ୟଙ୍କ ରକ୍ତବର୍ଣ୍ଣ କିରଣ ବ୍ୟାପିଲା ଏଣୁ ସଂସାର କୁଙ୍କୁମବର୍ଣ୍ଣ ଦିଶିଲା ଏ ତାତ୍ପର୍ଯ୍ୟାର୍ଥ । ୨୬ ।

୨୭ଶ ପଦ—'ପୁଣି ସୂର୍ଯ୍ୟମଣ୍ଡଳ ଦେଖି କବି ଉତ୍ପ୍ରେକ୍ଷା କରୁଛି' ବୃଷା ( ଇନ୍ଦ୍ର ) କୁଞ୍ଜର ( ଐରାବତ ) ଚଢ଼ି ବାହାର 'ହେଲେ' । ତା ଶିର ( ସେହି ଐରାବତର ଶିର ) ସିନ୍ଦୂର ବ୍ୟକ୍ତ ( ବ୍ୟକ୍ତ ହୋଇଛି ) କି ? କିମ୍ବା ଦିଗରୂପ ପରିବାର ( ପରିଜନ ) ରଙ୍ଗାମ୍ବରେ ( ରଙ୍ଗଲୁଗାରେ ) 'ଏକ' ଛନ୍ଦ 'ପ୍ରସ୍ତୁତକରି' ଆଡ଼ମ୍ବରେ ( ଆଡମ୍ବରରେ ) ଅମ୍ବରେ ( ଆକାଶରେ ) ବହେ ( ବହିଛି ) କି ? । 'ସୂର୍ଯ୍ୟମଣ୍ଡଳ ଏରୂପ' ବିରଚେ (ବିରଚିଲେ) * । ୨୭ ।

୨୮ଶ ପଦ—'ସୂର୍ଯ୍ୟୋଦୟ ଦେଖି' ଐନ୍ଦ୍ରୀ ଏ ( କାକମାନେ ) ଆନନ୍ଦ 'ହୋଇ' ବାହାରିଲେ । ଦେବାଳୟେ ( ଦେବ ମନ୍ଦିରରେ ) ଶଙ୍ଖ ବୃନ୍ଦ ( ଶଙ୍ଖସମୂହ ) ବାଜେ ( ବାଜିଲା ) । ଘଟିଚରେ ( ଉଲୁକାଦିମାନେ ) କୋଡ଼େ ( ବୃକ୍ଷକୋଡ଼ରେ ) ଲୁଚିଲେ ବସିଲେ ( ଲୁଚିକରି ବସିଲେ ) । ବାସରେ (ସେହିଦିବସରେ) କଦା ( କଦାପି ) ହୃଦେ ( ହୃଦୟରୁ ) ଭୟ ନ ମୁଞ୍ଚିଲେ (ନ ଛାଡ଼ିଲେ) । ୨୮ ।

---

*—ଜମ୍ବାବିଭିଭକୁମ୍ଭୋଦ୍ଭବମବ ଦଧତଃ ସାନ୍ଦ୍ରସିନ୍ଦୂରରେଣୁଂ ।
ରକ୍ତାଃ ସକ୍ତୈରିବୌଘୈରୁଦୟଗିରିତଟୀଧାତୁଧାରାଦ୍ରବସ୍ୟ ।
ଇତି ସୂର୍ଯ୍ୟଶତକେ ।

ବୀକ୍ଷଣ ଏ ସମୟକୁ କଲେ । ବିଭିକ୍ଷଣେ ମନ ମଣ୍ଡାଇଲେ ।
ବିଗତ କର୍ବୁରଖ ପୂଗତ ଜଗତରଞ୍ଜନାର ପାରୁଶରୁ ହେଲେ ସେ ।
ବେଗରେ । ୨୯ ।

ବୃଦ୍ଧଗଣ୍ଡକୀ ନଦୀ ସ୍ନାନରେ ୀ ବଳାଇଲେ ଚିତ୍ତ ତତପରେ ।
ବିଲମ୍ବ ଗମନ ପ୍ରଲମ୍ବକୁନ୍ତଳା ଅବଲମ୍ବ ଏହି ମନୋହରେ ସେ ।
ବୈଦେହୀ । ୩୦ ।

ବିଶେଷିତ ଗର୍ବାଳସୀ ହଂସୀ । ବନଜନୀଦଳେ କି ବିଳସି ।
ବାହୁ ଲମ୍ବିତ କୁଚ ଚକ୍ର ଚୁମ୍ବିତ ମୃଣାଳକୁ ଏହି ଲକ୍ଷ ଆସି ସେ ।
ବୈଦେହୀ । ୩୧ ।

---

୨୯ ଶ ପଦ — ଏ ସମୟକୁ ବୀକ୍ଷଣ କଲେ ( ଦେଖିଲେ ) ବିଭିକ୍ଷଣେ (ବିଶେଷ କରି ଭୃକୁଟି ବାରେ) ମନ ମଣ୍ଡାଇଲେ ( ବଳାଇଲେ )। 'ଏମନ୍ତ' କର୍ବୁର ୧ପୂଗ ( ରାକ୍ଷସୀ ସମୂହ ) ଜଗତରଞ୍ଜନାର ( ସୀତାଙ୍କ ) ପାରୁଶରୁ (ପାର୍ଶ୍ୱରୁ) ବିଗତ ହେଲେ (ଗଲେ) । ୨୯ ।

୩୦ଶ ପଦ—'ରକ୍ଷା ରାକ୍ଷସୀଏ ଯିବାରୁ' ବୈଦେହୀ ବୃଦ୍ଧଗଣ୍ଡକୀ ନଦୀ ସ୍ନାନରେ ( ସ୍ନାନ ଅର୍ଥେ ) ତତପରେ (ତତ୍ପର ହୋଇ) ଚିତ୍ତ ବଳାଇଲେ । ପ୍ରଲମ୍ବ ୨କୁନ୍ତଳା ( ଦୀର୍ଘକେଶୀ ସୀତାଙ୍କ ) ବିଳମ୍ବ ଗମନ (ମନ୍ଥରଗତି) ଏହି ମନୋହରେ ( ଏହି ସୌନ୍ଦର୍ଯ୍ୟକୁ ) ଅବଲମ୍ବ (ଆଶ୍ରୟ) 'କଲା' ।୩୦।

୩୧ଶ ପଦ — ବିଶେଷିତ ( ବିଶେଷରେ ) ଗର୍ବାଳସୀ ହଂସୀ ବନଜନୀ-ଦଳେ ( ପଦ୍ମପତ୍ରରେ ) ବିଳସି (ବିହରଇ) କି ? ପୁଣି ସେ ବୈଦେହୀଙ୍କ ଲମ୍ବିତ ବାହୁ 'ରୂପ' ମୃଣାଳକୁ କୁଚଚକ୍ର ( କୁଚରୂପ ଚକ୍ରବାକ ପକ୍ଷୀ ) ଚୁମ୍ବିତ (ଚୁମ୍ବୁଛି) କି ? ଏହି ଲକ୍ଷ ଆସି (ଆସିଲା) । ୩୧ ।

---

୧—ପୁଂସ୍ତ୍ରୀ ସମୂହେ ବୃନ୍ଦେ ଫଳପୂର୍ବେ ଭିଧେୟବଦ୍ଧତମେଦନୀ ।
୨ —କୁନ୍ତଳୋ ବାଳଃ କଚଃ କେଶଃ ଶିରୋରୁହ ଇତ୍ୟମରଃ ।

ବେଣୀ ଅଳସ ପିଠିରେ ଚଳେ । ବସି ମୟୂରପୁଛ କି ? ଖେଳେ ।
ଦେଖି ଡୋଳାହିଁ ନ ସହିଁଲ[1] କି ଶୋଭିଲା ହୋଇ ଭୃଙ୍ଗ ଖେଳେ ସେ
ବାରିଜେ । ୩୨ ।
ବାର୍ଦ୍ଧିଜାତେ ଇନ୍ଦୁ ନିଷ୍କଳଙ୍କା । ବଦନରେ ଗ୍ରୁଡ଼ି କି ସେ ଶଙ୍କା ।
ବେଢ଼ିଲେ ଜଡ଼ିଲେ ଘୋଡ଼ିଲେ ଭାଲାର୍ଦ୍ଧବେଢ଼ି ଚକୋରପନ୍ତି-
ଅଳକାସେ ।
ବୈଦେହୀ । ୩୩ ।
ବିଚଳିତ ନାସା ଶ୍ୱାସ ବଳେ । ବସି ଓଷ୍ଠେ କି ଶୁକ ଚଞ୍ଚଳେ ।
ବିମ୍ବାଧର ଶୁଷ୍କ ଧରଣୁ ଧରଷେ ନାହିଁ ଏହି ଉପଲକ୍ଷ ମିଳେ ସେ ।
ବୈଦେହୀ । ୩୪ ।

---

୩୨ଶ ପଦ—ପିଠିରେ (ପିଠିରେ) ବେଣୀ ଅଳସ ( କଷ୍ଟରେ ) ଚଳେ ( ଚଳୁଅଛି ) । 'ଉତ୍ପ୍ରେକ୍ଷା କରି' ମୟୂର ବସି ପୁଚ୍ଛ (ପୁଚ୍ଛକୁ) ଖେଳେ ( ଖେଳଇ ) କି ? ଦେଖି ଡୋଳାହିଁ ( ଡୋଳା ଯାହା) ସହିଁଲ ନ ସହିଁଲ 'ପରି' ହୋଇ 'ଅଛି' ସେ ତାହା ନୁହେଁ' ବାରିଜେ (ପଦ୍ମରେ) ଭୃଙ୍ଗ (ଭ୍ରମର) ଖେଳେ କି ? ।୩୨।

୩୩ଶ ପଦ—'ଲଲାଟପଟରେ ଅଳକା ବ୍ୟାପ୍ତ ହେବାରୁ କବି ଉତ୍ପ୍ରେକ୍ଷା କରୁଅଛି' । ବାର୍ଦ୍ଧି (ସମୁଦ୍ରରୁ) ଜାତେ ( ଜାତ ହେବାରୁ ) ଇନ୍ଦୁ (ଚନ୍ଦ୍ର) ନିଷ୍କଳଙ୍କା ( କଳଙ୍କ ହୀନ ) 'ହୋଇଥିଲା' ସୀତାଙ୍କ ବଦନରେ ଏମନ୍ତ ଆଶଙ୍କା କଲେ' । ବଦନ (ମୁଖ) ଏ ଏରୂପ ଆଶଙ୍କା ନ କରି ତାକୁ' ଗ୍ରୁଡ଼ି (ଗ୍ରୁଡ଼ିଲେ) କି 'ନିଷ୍କଳଙ୍କ ଚନ୍ଦ୍ର ଏ' ଏମନ୍ତ ଶଙ୍କା କରି ଅଳକା 'ରୂପ' ଚକୋରପନ୍ତି ବେଢ଼ି 'କରି' ଭାଲାର୍ଦ୍ଧ ( ଭାଲର ଅର୍ଦ୍ଧ ପ୍ରଦେଶକୁ ) ବେଢ଼ିଲେ ଜଡ଼ିଲେ ଘୋଡ଼ିଲେ ( ବେଢ଼ି ଘୋଡ଼ିକରି ଜଡ଼ିଲେ ) । 'ଚନ୍ଦ୍ର ସକଳଙ୍କ' ଏ ନିଷ୍କଳଙ୍କ ଚନ୍ଦ୍ର, ବଦନ ଆଶଙ୍କା ନ କଲେ ଏହିଭାବ' ବୈଦେହୀ 'ସ୍ନାନାର୍ଥେ ଗଲେ' ।୩୩।

୩୪ଶ ପଦ—ବୈଦେହୀ ( ସେ ବୈଦେହୀଙ୍କ ) ଶ୍ୱାସ ( ନିଶ୍ୱାସ ) ବଳେ ( ବଳରେ ) ନାସା 'ଯାହା' ବିଚଳିତ 'ହେଉଅଛି' 'ତାହା'

---

[1]—ଅବ୍ଜେ ଚନ୍ଦ୍ରମସିଳଗୃତଙ୍କଗଜେ ଭୃଙ୍ଗେ ମରୁଦ୍‌ବାହନେ ସାରଙ୍ଗ ଇତି ଶବ୍ଦମାଳା ।

ବକ୍ଷୋଜ ତଳେ ରୋମାଳୀ ସାଧୂ । ବଜନସ୍ଥାନ ହୃଦ ବିଶୁଦ୍ଧ ।
ବାହୁଡ଼େ ସରଘା ଶରଧାରେ ଉରେ ସଞ୍ଚି ଅବା ରାମ-ପ୍ରେମ-ମଧୁ ସେ
ବୈଦେହୀ । ୩୫ ।
ବଲକ୍ଷି ଏମାନ ହନୁମାନ । ବିଗ୍ରହ ଏ ଅନୁମାନମାନ ।
ବିଶ୍ରାମୁଁ ଏକ ତରୁତଳେ ତରୁଣୀ ଏତେ ଉତ୍ତରୁ ଅମୃତପାନ ସେ ।
ବିହିଲେ । ୩୬ ।
ବୋଲେ ଦାଶରଥି ଗୃପଧାଂଶି । ବନ ଦଣ୍ଡକେ ପୁଣି ବିହରି ।
ବହି ନାମ ରାମ ଶ୍ରୀରାମ ରାଘବ ରାମଚନ୍ଦ୍ର ରାମଭଦ୍ର କରି ସେ ।
ବିଧାତା ।୩୭ ।

---

ଶୁକ 'ପକ୍ଷୀ' ଉଚ୍ଚେ (ଉପରେ) ବସି ଚଞ୍ଚଳେ (ଚଞ୍ଚଳ ହୋଇଅଛି) କି ? ବିମ୍ବାଧର (ଅଧରବିମ୍ବ) ଶୁଷ୍କ ଥିରେଣୁ (ଶୁଷ୍କ ଧରିବାରୁ) 'ଚଞ୍ଚୁରେ ଧରିବାକୁ' ଧରପେ ନାହିଁ (ଭରସୁ ନାହିଁ)। 'ନୀରସ ଦେଖି' ଏହି ଉପଲକ୍ଷ ମିଳେ (ଏହି ଉପମା ମିଳୁଅଛି) । ୩୪ ।

୩୫ଶ ପଦ—ବୈଦେହୀ (ସେହି ବୈଦେହୀଙ୍କ) ବକ୍ଷୋଜ ତଳେ (ପୟୋଧର କମ୍ପରେ) ରୋମାଳୀ (ରୋମାବଳୀ) ସାଧୁ (ସୁନ୍ଦର) 'ହୋଇ-ଅଛି' । ତହିଁକି କବି ଉତ୍ପ୍ରେକ୍ଷା କଲେ' । ହୃଦ (ହୃଦୟ) ବିଶୁଦ୍ଧ ବିଜନ (ନିର୍ଜନ) ସ୍ଥାନ 'ହେଲା' 'ତହିଁରୁ' ସରଘା (ମହୁମାଛି) ଶରଧାରେ (ଶ୍ରଦ୍ଧାରେ) ରାମ ପ୍ରେମ ମଧୁ (ରାମଙ୍କର ପ୍ରେମ ରୂପ ମକରନ୍ଦକୁ) ଉରେ (ଉରସ୍ଥଳେ) ସଞ୍ଚି (ସଞ୍ଚୟକରି) ବାହୁଡ଼େ (ବାହୁଡ଼ି ଆସୁଅଛି) ଅବା ।୩୫।

୩୬ଶ ପଦ—ହନୁମାନ ଏମାନ 'ଏରୂପେ ବିଗ୍ରହ' ବଲକ୍ଷି (ଅଦୃଶ୍ୟ ହେଲେ) । ତରୁଣୀ (ସୀତା) ଏକ ତରୁତଳେ ବିଶ୍ରାମୁଁ (ବିଶ୍ରାମ କରନ୍ତେ) ଏତେ ୧ଉତ୍ତରୁ (ବକ୍ଷ୍ୟମାଣ ପ୍ରତି ବାକ୍ୟରେ ) ଅମୃତ ପାନ ବିହିଲା । 'ହନୁମାନ ବକ୍ଷ୍ୟମାଣ ପ୍ରତି ବାକ୍ୟ ରୂପ ଅମୃତ ପାନର ବିଧାନ କଲା ଏହି ତାତ୍ପର୍ଯ୍ୟାର୍ଥ' । ୩୬ ।

୩୭ଶ ପଦ—ବୋଲେ (ଶୂନ୍ୟରୁ କହିଲାପରି ହନୁମାନ ଖେଦରେ ବୋଇଲା ) ହେ ବିଧାତା ! ଦାଶରଥି (ଦଶରଥ ରାଜାଙ୍କ ପୁଅ ) ଗୃପଧାଂଶି

---

୧—ପ୍ରତି ବାକ୍ୟୋଞ୍ଚରେ ସମେ ଇତ୍ୟମରଃ ।

ବନ୍ଧୁ ପ୍ରାଣର ପୃଥ୍ୱୀକୁମାରୀ । ବିସର୍ଜନ୍ତି କି ? ଦିବା,ଶର୍ବରୀ ।
ବିଚକ୍ଷଣ ସେ ଲକ୍ଷଣରେ ରକ୍ଷଣ ଭ୍ରାତ ଲକ୍ଷ୍ମଣହିଁ ଅନୁସର ହେ ।
ବିଧାତା । ୩୮ ।
ବାଳୀ ଗଳାମାଳା ହୋଇଥିଲା । ବିଚ୍ଛେଦଣ କେ ତା ଗ୍ରହ କଲା ।
ବାରତା ଶ୍ରବଣ ରାବଣ ଦ୍ରବଣ କ୍ରମେ ସୁଗ୍ରୀବ ସଂଯୋଗ ହେଲା ହେ ।
ବିଧାତା । ୩୯ ।

---

( ଶିବଧନୁ ଧାରଣକାରୀ ) ପୁଣି ୧ରାମ ( ଶ୍ରୀରାମ ) ରାଘବ (ରଘୁବଂଶୋଦ୍ଭବ) ରାମଚନ୍ଦ୍ର ରାମଭଦ୍ର 'ଏମନ୍ତ' ନାମ ବହି କରି 'ମଝି' ବନ ଦଣ୍ଡକେ ( ରାଜ୍ୟ ଛାଡ଼ି ଦଣ୍ଡକାରଣ୍ୟରେ ) ବିହରି ( ବିହରିଲେ ) । ୩୭ ।

୩୮ଶ ପଦ—ହେ ବିଧାତା ! ତାହାଙ୍କର ପୃଥ୍ୱୀକୁମାରୀ ( ସୀତା ) ପ୍ରାଣର ବନ୍ଧୁ, ଦିବା ଶର୍ବରୀ ( ଦିନ ରାତି ) ବିସର୍ଜନ୍ତି କି ? ( ତାକୁ ପାଖରୁ ଛାଡ଼ନ୍ତି ନାହିଁ ) । 'ଲକ୍ଷଣରେ (ମହାପୁରୁଷ ଲକ୍ଷଣରେ) ବିଚକ୍ଷଣ ସେ ଲକ୍ଷ୍ମଣହିଁ (ସେହି ଲକ୍ଷ୍ମଣ ନାମଧାରୀ ) ଭ୍ରାତ ( ଭାଇ ମଧ୍ୟ ) ରକ୍ଷଣ ( ରକ୍ଷାବିଷୟରେ ) ଅନୁସର ( ଅନୁଗତ ଥିଲେ ) 'ସୀତା ଲକ୍ଷ୍ମଣ ଘେନି ଦଣ୍ଡକାରଣ୍ୟରେ ବିହରିଲେ ଏହି ଭାବ' । ଅଥବା ହେ ବିଧାତା ! ଲକ୍ଷଣରେ ବିଚକ୍ଷଣ ଭ୍ରାତ ଲକ୍ଷ୍ମଣ ରକ୍ଷଣ ( ସୀତାଙ୍କ ରକ୍ଷକ ) 'ଥିଲେ' ସେ ( ଲକ୍ଷ୍ମଣ ) 'ସୀତାଙ୍କୁ ଛାଡ଼ି' ଅନୁସର ( ହେମମୃଗକୁ ଗୋଡ଼ାଇ ଯାଇଥିବା ରାମଙ୍କୁ ଖୋଜିବାକୁ ) ଗଲେ' । ୩୮ ।

୩୯ଶ ପଦ—ହେ ବିଧାତା । ବାଳୀ ( ସେହି ବାଳୀ ) ଗଳାମାଳା ( ତାହାଙ୍କ ଗଳାର ମାଳା ) ହୋଇଥିଲା । ବିଚ୍ଛେଦଣ ( ଗଳାକାଟି କିମ୍ବା ମାଳାକାଟି ) କେ ( କିଏ ) ତା ( ସେହି ବାଳାକୁ ) ଗ୍ରହକଲା ( ଗ୍ରହଣ କରି ନେଲା ) । ବାରତା ଶ୍ରବଣ ( ବାର୍ତ୍ତା ଶୁଣାଗଲା ) ରାବଣ 'ନେଲା' । 'ସେ କିରୂପ ହୋଇ ଶୁଣାଗଲା' ? ୧ଦ୍ରବଣ କ୍ରମେ ( ସୀତା ପକାଇ ଦେଇଥିବା ଅଳଙ୍କାର ରୂପ ଦ୍ରବରେ ) ସୁଗ୍ରୀବ ସଂଯୋଗ ( ସେ ଅଳଙ୍କାର ଦେଇ ସୁଗ୍ରୀବ ମିତ୍ର ହେବା ରୂପ ) ଦ୍ରବଣ କ୍ରମେ ( ପରାକ୍ରମ କ୍ରମରେ ) ସୁଗ୍ରୀବ

---

୧—ଶ୍ରିୟୋରମଣସାମର୍ଥ୍ୟାତ୍ ସୌନ୍ଦର୍ଯ୍ୟ ଗୁଣାଶ୍ରୟାଦପି ।
ଶ୍ରୀରାମ ଇତି ନାମେଦଂ ତସ୍ୟ ବିଷ୍ଣୋଃ ପ୍ରକୀର୍ତ୍ତିତଂ । ଇତି ।
୧—ଦ୍ରବିଣଂ ନ ଦ୍ୱୟୋର୍ବିତ୍ତେ କାଞ୍ଚନେ ଚ ପରାକ୍ରମେ ଇତି ମେଦିନୀ ।

ବେନ ଚେତନକୁ ପ୍ରାଣଜାତ । ବିମଳନେ ହୋଇଛୁ ମିଳତ ।
ବୋଲନ୍ତ ଜାଣୁ ରମଣୀମଣିକ ହୃଦେ ମଣି ଆଣିଲେ ଏ ସତ ହେ।
ବୃଧାତା । ୪୦ ।

ବାଳୀ ମୃତପିଣ୍ଡ ହୋଇଥିଲା । ବଚ ସଞ୍ଜୀବମାମନ୍ତ୍ର ହେଲା ।
ବାହୁନା ଜାଡ଼ ଶୁକକଣ୍ଠେ ରହିଲା ନାହିଁ କହିବାର ଆରମ୍ଭିଲା ସେ
ବୈଦେହୀ । ୪୧ ।

ବାବୁ ! କେ ତୁମ୍ଭେ ପାଶକୁ ଆସ । ବେଗେ ପୂର୍ଣ୍ଣ କର ମୋର ଆଶ।
ବଚନ ସଲିଳ ସେଚନ ରଚନ ତାପମୋଚନକୁ ହେଲା ଲେଶ ସେ।
ବଶେଷ । ୪୨ ।

---

( ମୃକଣ୍ଠ ) ସଂଯୋଗ ( ଯୁକ୍ତ ) ହେଲ 'ମିତ୍ର ସୁଗ୍ରୀବଠାରୁ ଗ୍ରହଣ କେବ।
ବାର୍ତ୍ତା ପାଇଲେ ଏହି ଫଳାର୍ଥ' । ୩୯ ।

୪୦ଶ ପଦ—ଶଳାଷ୍ଟାମାସ୍ପ ସ୍ରମ, ମାଲ'ସ୍ଥ'ମାସ୍ପା ସୀତା, ଏ ଦୁହିଁଙ୍କି ଉପଲକ୍ଷିତ କରି କହୁଅଛନ୍ତି ହେ ବଧୂତା ! ବେନ ( ଦୁଇଜଣଙ୍କ ) ଚେତନକୁ ( ଚେତନା ନିମିତ୍ତ ) ପ୍ରାଣଜାତ ( ପବନ ସୁତ ହନୁମାନ ) ପ୍ରାଣଜାତ ( ପ୍ରାଣପରି ଜାତ ) 'ହୋଇ' ବିମଳନେ ( ନିର୍ମଳ ରୂପରେ ) ମିଳତ ହୋଇଛୁ । ରମଣୀକ ତ ଜାଣୁ ମଣି ବୋଲନ୍ତ 'ତେଣୁ ଏ ବିଷୟ' ହୃଦେ ( ହୃଦୟେ ) ମଣି ( ଜ୍ଞାନକରି ) ଆଣିଲେ "ଜାଣୁ ଏ ପଦ ମିଥ୍ୟା ନୁହେ ସତ ଏ' । ୪୦ ।

୪୧ଶ ପଦ—ବାଳୀ ( ସୀତା ) ମୃତପିଣ୍ଡ ପ୍ରାୟ ହୋଇଥିଲା । 'ହନୁମାନ କହିବା' ବଚ ( କଥା ) ସଂଜୀବନୀ ମନ୍ତ୍ର ପ୍ରାୟ ହେଲା । ଏଣୁ ଶୁକକଣ୍ଠେ ( ଶୁକକଣ୍ଠ ତୁଲ୍ୟ ସୀତାଙ୍କ କଣ୍ଠରେ ) ଜାଡ଼ ବାହୁନା ( ଜଡ଼ଭାବ ) ରହିଲା ନାହିଁ । ତେଣୁ ବୈଦେହୀ କହିବାର ( କହିବାକୁ ) ଆରମ୍ଭିଲା 'ସଞ୍ଜୀବନୀ ମନ୍ତ୍ରରେ ମୃତପିଣ୍ଡ ଜୀଇ କହିଲାପରି କହିଲେ ଏହି ଭାବ' । ୪୧

୪୨ଶ ପଦ—ହେ ବାବୁ ! ତୁମ୍ଭେ କେ ( କିଏ ) ପାଶକୁ ଆସ । ମୋର ଆଶ ( ଆଶା ) ବେଗେ ପୂର୍ଣ୍ଣକର । ବଚନ 'ରୂପ' ସଲିଳ ( ଜଳ ) ସେଚନ ରଚନ ( ସିଞ୍ଚିବାରୁ ) ବଶେଷ ତାପ ମୋଚନକୁ ଲେଶ 'ମାତ୍ର' ହେଲା । ୪୨ ।

ବପୁମନ୍ତ ଦୁର୍ଲ୍ଲଭ ମର୍କଟ । ବିଲୋକଣ ହୁଅନ୍ତେ ପ୍ରକଟ ।
ବିସ୍ମରେ ଲମ୍ପଟ ଏ ନାଷ୍ଟେଁ କପଟ ବହେ ଅମୂଲ୍ୟ ପଟମୁକୁଟ ଏ
ବାନର । ୪୩ ।

ବହି ସ୍ଫୁଟକତ ନ କହୁଁ ଗିର । ବିସ୍ମୃରିଲା ସେ ପାବନି ଧୀର ।
ବୋଲେ ସୁର ବିମାଧିକସୁକୁମାରଅଙ୍ଗି ବାତକୁମର ମୁଁ ସ୍ମର ଗୋ ।
ବୈଦେହି । ୪୪ ।

ବସନରେ ରଖିଥିଲ ମୁଦ୍ର । ବଶ ପାଞ୍ଚି ଫେଡ଼ି ଦେଲା ମୁଦ୍ର ।
ବେଗରେଆଦରେ ଶିରେଥୋଇ ଦରେ ରେଖିକଲାହୃଦରେ ସମ୍ପାଦସେ
ବୈଦେହୀ । ୪୫ ।

---

୪୩ଶ ପଦ—'ସେ ହନୁମାନ୍' ବପୁମନ୍ତ ( ଦେହବନ୍ତ ) ଦୁର୍ଲ୍ଲଭ ( ବଡ଼ ) ମର୍କଟ 'ରୂପରେ' ପ୍ରକଟ ହୁଅନ୍ତେ (ପ୍ରକାଶ ପାଆନ୍ତେ) ବିଲୋକଣ ( ସୀତା ତାଙ୍କୁ ଦେଖି ) ବିସ୍ମରେ ( ବିସ୍ମୃତଲେ ) ଏ ନାଷ୍ଟେ କପଟ ( ଛଦ୍ମବେଶୀ ) ଲମ୍ପଟ 'ରାବଣ' । 'ଯେ ହେତୁ' ଅମୂଲ୍ୟ ପଟ ( ସୁନ୍ଦର ) ମୁକୁଟ ଏ ବହେ ( ଧାରଣ କରିଛି ) 'ନୋହିଲେ' ବାନର ଏହା କାହୁଁ ବହିଲା । ୪୩ ।

୪୪ଶ ପଦ—'ସୀତା ଏମନ୍ତ ବିଚାରି' ସ୍ଫୁଟକତ ବହି ( ସ୍ଫୁଟକତ ହୋଇ-ରହି ) ଗିର ( କଥା ) ନ କହୁଁ ( ନ କହନ୍ତେ ) ଧୀର ( ପଣ୍ଡିତ ) ସେ ପାବନି (ହନୁମାନ୍ ) ବିସ୍ମୃରିଲା 'ମତେ କପଟୀ ମନେ କଲେ ଏମନ୍ତ ଭାବି' ବୋଲେ ( ବୋଇଲା ) ହେ ସୁର ବିମାଧିକ ସୁକୁମାର ଅଙ୍ଗି ! ( ହେ ଅତ୍ୟ-ଧିକ କୋମଳାଙ୍ଗି ! ) ବୈଦେହି, ମୁଁ ବାତକୁମର ( ପବନ ପୁତ୍ର ) ସ୍ମର ( ଜାଣ ) । ୪୪ ।

୪୫ଶ ପଦ—ମୁଦ୍ର ( ରାମଦତ୍ତ ମୁଦ୍ରିକା ) ବସନରେ ( ଆପଣାର ପିନ୍ଧା ବସ୍ତ୍ରରେ ) ରଖିଥିଲା । 'ଏହା ଦେଖି' ବଶ ( ମୁଗ୍ଧ ) ହେବେ 'ଏମନ୍ତ' ପାଞ୍ଚି ( ବିଚାରି ) ମୁଦ୍ର ( ସେ ମୁଦ୍ରିକା ) ଫେଡ଼ି ( ଫିଟାଇ ) ଦେଲା । 'ସେ ମୁଦ୍ରକୁ' ବେଗରେ ( ଶୀଘ୍ର ) ଆଦରେ ( ଆଦରକରି ) 'ନେଇ' ଶିରେ ଥୋଇ ( ମସ୍ତକରେ ଲଗାଇଲେ ) । ସେ ବୈଦେହୀ ଦରେ ( ଭୟ ହେତୁ)

ବୋଲି ଦେଲେ ତହିଁ ହନୂମନ୍ତ । ବିଖ୍ୟାତିବା କହିବା ଗୁପତ ।
ବିରସ ହରିଷ ବିବାଦ ସାରସ-ଆନନରେ କରାଇଲେ ଜାତ ସେ ॥
ବାତଜ । ୪୬ ।

ବଦେ ହୀଡ଼ୁଁ ଚିବକୂଟାଚଳେ । ବନ୍ଧୁଁ ଗଇରିକେ ଚିତା ଭାଳେ ।
ବିଜନ୍ୟ ଭୟରେ କାଶନାଚୟରେ ଲଗାଇଛ ପ୍ରିୟବକ୍ଷସ୍ଥଳେ ଗୋ ।
ବୈଦେହି । ୪୭ ।

ବାସରକରେ ଅବମାଶୋଭି । ବାନ୍ଧି ଜଗଥିଲ ମୃଗନାଭି ।
ବଳରେ ମିଥ୍ୟା କ କବଳ ଅର୍ଥରେ ବିମ୍ବାଧରେ କ୍ଷତ କଲ ଲେଖି ସେ
ବାୟୁଜ । ୪୮ ।

---

ହୃଦରେ ( ମନରେ ) ରେଖିକଲ ସମ୍ପଦ ( ସ୍ୱାମୀଙ୍କଠାରୁ ଗୋପନ କରି ଆଣିବା କଥା ବିସ୍ତରିଲେ ) । ୪୫ ।

୪୬ଶ ପଦ—ତହିଁ ( ତହିଁକି ) ହନୂମନ୍ତ ( ହନୁମାନ୍ ) ବୋଲି ଦେଲା 'ତୁମ୍ଭ ପତି' କହିବା ଗୁପତ ( ଗୁପ୍ତକଥା ) ବିଖ୍ୟାତିବା ( ପ୍ରକାଶିବା ) । 'ଏମନ୍ତ କହୁ' ସାରସ ଆନନରେ ( ପଦ୍ମମୁଖରେ ) ବାତଜ ( ହନୂମାନ୍ ) ବିରସ ହରଷ ( ବିରସ ହର୍ଷ ଏ ଦୁହିଁଙ୍କ ) ବିବାଦ ( କଳି ) ଜାତ କରାଇଲା । 'ମୁଖରେ ହର୍ଷ ବିରସ ଦୁହେଁ କଳିକରି ରହିଲେ କେବଳ ହର୍ଷ ବା ବିରସ ନ ରହିଲେ । 'ଗୁପ୍ତକଥା ଶୁଣିବାକୁ ମନ ଓ କପଟ ଆଶଙ୍କାରେ ବିରସ ଏହିଭାବ' ॥

୪୭ଶ ପଦ—ବଦେ ( ହନୁମାନ୍ କହିଲା ) ଚିବକୂଟାଚଳେ ( ଚିତ୍ରକୂଟ ପର୍ବତରେ ) ହୀଡ଼ୁଁ ( ହୀଡ଼ା କରୁଥିବାରୁ ) 'ବୌତୁକରେ' ଭାଳେ ( ତୁମ୍ଭର ଲଲାଟରେ ) ଗୈରିକେ ( ଗେରୁରେ ) ଚିତା ବନ୍ଧୁଁ ( ବନ୍ଧିବାରୁ ) [୧]କାଶନାଚୟରେ ( ମର୍କଟପଲ ହେବାରୁ ) ବିଜନ୍ୟ ( ଜାତ ହେବା ) ଭୟରେ ଗୋ ବୈଦେହି ! ପ୍ରିୟ ( କାନ୍ତ ) ବକ୍ଷସ୍ଥଳେ ଲଗାଇଛ । 'ଏମନ୍ତ ଗୁପ୍ତ କଥା କହି ଅଛନ୍ତି' ୪୭ ।

୪୮ଶ ପଦ—ହେ ଅବମାଶୋଭି 'ସୀତେ' ! ବାସରକରେ ( ଏକ-ଦିନକରେ ) [୨]ମୃଗନାଭି 'କସ୍ତୁରୀ' ବାନ୍ଧି ( ଗୋଟି ଗୋଟି କରି ଶୁଖାଇ )

---

[୧]—ମର୍କଟୋ ବାନରଃ କୀଶୋ ବନୌକା ଇତ୍ୟମରଃ ।

[୨]—ମୃଗନାଭିର୍ମୃଗମଦଃ କସ୍ତୂରୀତ୍ୟମରଃ ।

ବଲ୍ଲଭ ହିଁ କହୁଛନ୍ତି ତାହିଁ । ବଧାନ୍ତକ ପଦ ହେଲା ଯହିଁ ।
ବୋଲ ମିଥ୍ୟାଏ ସେ ଶବଦ ବଦନେ କହିବାକୁ ମୁଁ ସ୍ତବଦହୋଇ ଗୋ
ବୈଦେହି । ୪୯ ।

ବସ୍ତ୍ରବନାନ୍ତେ ମଧୂଶୟନେ । ବଧୂନନ ନ ରଚୁଁ ସୁମନେ ।
ବଧି କରଛ ନବୀନା ରାମ ବିନା ବିନ୍ୟାସିବ ନାହିଁ ଚିତ୍ତ ଆନେ ଗୋ ।
ବୈଦେହି । ୫୦ ।

ବୋଲେ ନିଃସଂଶୟେ ସୀତା ଗିର । ବିଶ୍ୱାସୀ ତୁ ବଡ଼ ପ୍ରଭୁଙ୍କର ।
ବୋଇଲୁ ନାହିଁତ ସେ କଥା ବିହିତ ସାକ୍ଷୀ ରହିତ କେ ସେସ୍ଥାନର ହେ
ବାତଜ । ୫୧ ।

---

ଜଗିଥିଲେ । ଲୋଭୀ ବାୟସ (କାକ) ଲୋଭ ଅର୍ଥରେ (ଗ୍ରାସ କରିବା ନିମିତ୍ତ) ବଳରେ ( ବଳପୂର୍ବକ ) 'ଶୃଙ୍ଗ' ବିମ୍ବାଧରେ କ୍ଷତ କଲା 'ଏ କଥା' ମିଥ୍ୟା କି ? । ୪୮ ।

୪୯ଶ ପଦ—ବଲ୍ଲଭ ( ରାମଚନ୍ଦ୍ର )ହିଁ ତାହିଁ ( ତାହା ମଧ ) କହୁଛନ୍ତି । 'ଶୃଙ୍ଗର' ଯହିଁ (ଯେଉଁ ସ୍ଥାନରେ ) 'ବାୟସର' ପଦ (ପାଦ) ବଧାନ୍ତକ ହେଲା ( କାକ ପାଦାଘାତ କଲା ) । ଗୋ ବୈଦେହି ! ଏ ମିଥ୍ୟା କି ? ବୋଲି ସେ ଶବଦ ( ସେ ଶବ୍ଦ) ବଦନେ (ମୁଖରେ) କହିବାକୁ ମୁଁ ସ୍ତବଦ (ସ୍ତବ୍ଧ-ସ୍ତମ୍ଭୀଭୂତ ) ହୋଇ. ( ହୁଅଇ ) । 'କହିଲେ ଅପରାଧ ହେବ ଏମନ୍ତ ଭାବ' । ୪୯ ।

୫୦ଶ ପଦ—'ପୁଣି ଏହା ମଧ କହୁ ଅଛନ୍ତି' ବସ୍ତ୍ରବନାନ୍ତେ (ବସ୍ତ୍ରହେବା ଦିନ ଗଲିରେ) ମଧୂଶୟନେ (ମଧୁଶୟ୍ୟାରେ) ବଧୂନନ (ବଧୂ ବନ) ନ ରଚୁଁ (ନ କରୁଁ) ସୁମନେ (ହର୍ଷ ମନରେ ) ୧ ବଧି ( ନିୟମ ) କରଛ । ଗୋ ନବୀନା ବୈଦେହି ! ରାମ ବିନା ଆନେ (ଅନ୍ୟ ପୁରୁଷଠାରେ) ଚିତ୍ତ (ମୋ ମନ) ବିନ୍ୟାସିବ (ଲଗିବ) ନାହିଁ । ୫୦ ।

୫୧ଶ ପଦ—'ଏମନ୍ତ ଗୁପ୍ତକଥାମାନ କହୁଅଛୁ' ନିଃସଂଶୟେ (ମନରେ ସଂଶୟ ନ ରଖି) ସୀତା ଗିର ( ଏମନ୍ତ ବଚନ ) ବୋଲେ ( କହିଲେ ) 'ଜାଣିଲି' ପ୍ରଭୁଙ୍କର ତୁ ବଡ଼ ବିଶ୍ୱାସୀ; ହେ ବତ୍ସ ! ସେ କଥା ବିହିତ

---

୧—ବିଧିର୍ବିଧାନେ ନିୟତୌ କାଲେ ବିଧାନେ ପରମେଷ୍ଠିନି ଇତି ମେଦିନୀ ।

ବନ୍ଦେ ଉତ୍ତର ସେ ସତ୍ୟସନ୍ଧ । ବୋଇଲେ ସେ ନ ବୋଇଲେ ସିଦ୍ଧ
ବିଭ୍ରମ ଏଥି ତ ଦେଉଛ ବ୍ୟଥିତ ପାପ ସିନା ସ୍ଥିତ ପୁର ମଧ୍ୟ ଗୋ ।
ବୈଦେହି । ୫୨ ।

ବଚ୍ଛେଦକୁ ତୁଲପାନ କରି । ବେନି ଦ୍ରବ୍ୟକୁ ତୁଳରେ ସରି ।
ବିଗ୍ରହ ପ୍ରଗ୍ରହରେ ପରସ୍ପରେ ଯାହାକୁ ଯେହୁ ଗ୍ରହିଲା ସେ ଉଣାପରି ଗୋ
ବୈଦେହି । ୫୩ ।

ବିନଶ୍ୟନ୍ତି ହେବ ଏତେକହିଁ । ବିବେକରେ କି କହିବି ? ମୁହିଁ ।
ବିଜେକରି ମୋର ସ୍କନ୍ଧରେ ହରିବ ତାପ ବିହରିବ ଭେଟି ହୋଇ ଗୋ
ବଇଦେହି । ୫୪ ।

---

( ବିଧାନ ହେତୁରେ ) ସେ ସ୍ଥାନର ( ସେହି ମଧୁଶଯ୍ୟାରେ ) ହେ ( କଏ ) ସାକ୍ଷୀ ରହିବ (ସାକ୍ଷୀ ହୋଇ ରହିଥିବ ) 'ତ ହା ବୋଇଲୁ ନାହିଁତ' । ୫୧ ।

୫୨ଶ ପଦ—'ଏମନ୍ତ ସୀତା କହନ୍ତେ ହନୁମାନ୍' ଉତ୍ତର ବନ୍ଦେ (ପ୍ରତ୍ୟୁତ୍ତର ଦେଲ) ସେ ( ରାମ ) ସତ୍ୟସନ୍ଧ ( ସତ୍ୟପ୍ରତିଜ୍ଞ ); ବୋଇଲେ ବା ନ ବୋଇଲେ ସିଦ୍ଧ (ପ୍ରସିଦ୍ଧ) ହେ, 'ଆପଣ ଜାଣି ମଧ୍ୟ ବ୍ୟଥିତ ହେବା ହେତୁରୁ' ଏଥି ( ଏଥିନିମିତ୍ତ ) ବିଭ୍ରମ 'ହେଉଅଛ' । ଗୋ ବୈଦେହି ! ପୁରମଧ୍ୟେ ପାପ ସିନା ସ୍ଥିତ । ( ମଧୁଶଯ୍ୟା ପୁରରେ ପାପ ଏକା ଥାଏ ତୁମ୍ଭ ଦୁହିଙ୍କ କଥାକୁ ସେହି ସାକ୍ଷୀ) । ୫୨ ।

୫୩ଶ ପଦ—ବଚ୍ଛେଦକୁ ତୁଲପାନ କରି ( ନିର୍ଣ୍ଣୟ କରି ) ବେନି ଦ୍ରବ୍ୟକୁ ( ଦ୍ରବ୍ୟରୂପ ତୁମ୍ଭ ଦୁହିଙ୍କୁ ) ତୁଳରେ ସରି (ସମାନ) ହେବ । ଗୋ ବୈଦେହି ! ବିଗ୍ରହ ପ୍ରଗ୍ରହରେ ( ବିଗ୍ରହ ପ୍ରଗ୍ରହ କରି ମୁଁ ପରସ୍ପରେ ) ଯେହୁ ଯାହାକୁ ଗ୍ରହିଲା ସେ ଉଣାପରି (ତାଙ୍କୁ ତୁମ୍ଭେ ଗ୍ରହିଲ ତୁମ୍ଭେ ଏଣୁ ଏ ଉଣା ) ୫୩ ।

୫୪ଶ ପଦ—ଏତେକହିଁ ( ଉକ୍ତ ଭାବରୁ ) ବିନଶ୍ୟନ୍ତି ( ବିନାଶ ) ହେବ । ବିବେକରେ (ବିଶ୍ଚିତ୍ତବନ୍ତ ଜନଠାରେ) ମୁହିଁ କି କହିବି ? ( ମୋର ସ୍କନ୍ଧରେ ବିଜେ କରିବ ) ଗୋ ମାତ ! ବିହରିବ ( ରାମସଙ୍ଗେ ) ଭେଟି

---

୧—ସନ୍ଧା ପ୍ରତିଜ୍ଞା ମର୍ଯ୍ୟାଦା ଇତ୍ୟମରଃ ।
ରାଜେନ୍ଦ୍ରଂ ସତ୍ୟସନ୍ଧଂ ଦଶରଥତନୟଂ ଶ୍ୟାମଳଂ ଶାନ୍ତମୂର୍ତ୍ତିଂ ।ଇତି ।

ବୋଲେ ଜାନକୀ ତୁମ୍ଭେ କି କହ । ବୃକ୍ଷେ ଡେଇଁବା କପିତ ନହ !
ବଳାତ୍କାରେ ବଳପ୍ରବଳ ଅବଳା ଆଣିଲାକୁ ଉଣା ସତ୍ୟ ସ୍ନେହ ହେ ।
ବାତଜ । ୫୫ ।

ବାଧ ପ୍ରଭୁବୀରଧୀକୁ ହେବ । ବେନି ବୟସୁ ଚଉର୍ଯ୍ୟେ ଯିବ ।
ବନ୍ଧ ରାମଚନ୍ଦ୍ର ଦୁର୍ବନ୍ଧ ସାଗର ତର ବନ୍ଧନ କୀରତି ଥିବ ହେ ।
ବାତଜ । ୫୬ ।

ବିକାଶଇ ନାହିଁ ପ୍ରତିଆଶା । ବେଢ଼ି ଦୁର୍ଦ୍ଦଶା ଅନ୍ଧାରନିଶା ।
ବିଳସାଇଲ ପ୍ରତିପଦ ଆସ୍ପଦ ହେବ ଦ୍ୱିତୀୟାଭାବ ସଦୃଶା ଉହ ।
ବାତଜ । ୫୭ ।

---

ହୋଇ ତାପ (ସନ୍ତାପ) ହରିବ 'ଏବଂ' ବାହାରିବ । 'ଏତେବେଳେ' ସେ ଉଣା ସ୍ୱଭାବ ତୁମ୍ଭର ବିନାଶ ହେବ ଏହି ଭାବ' । ୫୪ ।

୫୫ଶ ପଦ—ଜାନକୀ ବୋଲେ ( ବୋଇଲେ ) ତୁମ୍ଭେ କି ( କି କଥା ) କହ । ହେ ବାତଜ ! ବୃକ୍ଷେ (ବୃକ୍ଷରେ) ଡେଇଁବା କପିତ 'ତୁମ୍ଭେ' ନୁହ 'ତୁମ୍ଭଙ୍କୁ କେମନ୍ତେ ଛୁଇଁବି' ? ତୁମ୍ଭେ କି ବୋଲିବ ରାବଣ କପଟ ଆଣିଲା ? ବଳ ପ୍ରବଳ (ବଳରେ ପ୍ରବଳ) ସେ, ଅବଳା (ଦୁର୍ବଳା ) ମୁଁ 'ମୋତେ' ବଳାତ୍କାରେ ଆଣିଲାକୁ ସ୍ନେହ ଉଣା 'ହେବା କଥା' ସତ୍ୟ 'ହେଲା' । ୫୫।

୫୬ଶ ପଦ—'ଏମନ୍ତ କହି ପୁନରପି କହୁଛେ' ପ୍ରଭୁ ବୀରଧୀକୁ (ପ୍ରଭୁଙ୍କର ବୀରପଣକୁ) ବାଧହେବ (ବାଧିବ) 'ତୁମ୍ଭେ ଘେନିଗଲେ ପ୍ରଭୁଙ୍କର ବୀରପଣ ରହିବ କି ? ଏହି ଭାବ' । ବେନି ବୟସୁ ( ଦୁଇ କଥା ) ଚଉର୍ଯ୍ୟେ (ଚୋରିଭାବରେ) ଯିବ । 'ସେ ଚୋରାଇ ଆଣିଲା ତୁମ୍ଭେ ଘେନିଗଲ ଏହି ଭାବ' । ହେ ବାତଜ ! ଦୁର୍ବନ୍ଧ ରାମଚନ୍ଦ୍ର (ଦୁର୍ଦ୍ଧର ରାମଙ୍କୁ) ବନ୍ଧ (ସ୍କନ୍ଧରେ ବହନ କର) ବନ୍ଧନ ( ବେଗରେ ) ସାଗର ତର, କୀରତି (ତୁମ୍ଭ କୀର୍ତ୍ତି) ରହିଥିବ । ୫୬।

୫୭ଶ ପଦ—ପ୍ରତିଆଶା ( ମୋହର ବଲ୍ଲଭପ୍ରାପ୍ତି ପ୍ରତ୍ୟାଶା) ପ୍ରତିଆଶା (ପ୍ରତିଦିଗ) 'ହେଲା' । ସେ ବିକାଶଇ ନାହିଁ 'କାହିଁକି' ? ଦୁର୍ଦ୍ଦଶା 'ରୂପ' ଅନ୍ଧାର ନିଶା ବେଢ଼ି (ବେଢ଼ିବାରୁ) 'ତୁମ୍ଭ କହିବା' ପ୍ରତିପଦ

ବଣ ମଧୁପ କାହୁଁ ଲଭିବ । ବୃଷ୍ଟି ଶିବରାତ୍ରି ସମ୍ଭବ ।
ବିଷ୍ଣୁତନ୍ନୀ ହୋଇ ପାତକୀ କେତକୀ ସୂକାନ୍ତରେ ଈଶ ଭୋଗହେବ ହେ
ବାତଜ । ୫୮ ।
ବନ୍ଦୁଁ ଭରତେ ପାବନି କହି । ବେଦ ଶଙ୍ଖାସୁର ଯେ ଗ୍ରେରାଇ ।
ବଞ୍ଚାଇ ପାରିଲ ଲୁଚାଇ ସିନ୍ଧୁରେ ସୁଖ ବରତ୍ରଇ ଧାତା ସେହି ଗୋ ।
•ବୈଦେହି । ୫୯ ।

---

( ପ୍ରଭୁ କଥା ) ପ୍ରତିପଦ ( ପ୍ରତିପଦା ତିଥିର) ଆସ୍ପଦ (ସ୍ଥାନକୁ) ବଳସାଇଲ । ଦ୍ୱିତୀୟାଶ୍ରବ ( ଦ୍ୱିତୀୟ ଶ୍ରବ ) ଦ୍ୱିତୀୟା ଶ୍ରବ ( ଦ୍ୱିତୀୟା ତିଥିର ଶ୍ରବ ) ସଦୃଶ ( ତୁଲ୍ୟ ) ହେବ । ଅନ୍ଧାର ରାତ୍ରରେ ଦଶ ଦେଖା ନ ଗଲାପରି ଦୁର୍ଦ୍ଦଶା ହେତୁରୁ ମୋ କାନ୍ତ ଲଭିବାର ଆଶା ନ ଥିଲା । ପ୍ରତିପଦା ତିଥିରେ ଚନ୍ଦ୍ର ଉଦୟ ହୋଇ ଦ୍ୱିତୀୟା ତିଥିରେ କ୍ରମେ ଅନ୍ଧାର ନାଶ କରି ଆନନ୍ଦ ଉଦ୍ଭବ କରେ, ତଦ୍ରୂପ ତୁମ୍ଭ ପ୍ରତିବାକ୍ୟ ଦୁର୍ଦ୍ଦଶା ମୋଚନ କରି ଦମ୍ପତି ଶ୍ରବ କ୍ରମେ ବୃଦ୍ଧି କରିବ ଏହି ଅଭିପ୍ରାୟ । ୫୭ ।

୫୮ଶ ପଦ—'ତୁମ୍ଭେ ବା ବୋଲୁଛ ବହୁଦିନ ଏଠାରେ ରହିଲେ' ମଧୁପ ( ଭ୍ରମର ) ବଣ ( ବଣକୁ ) ଲଭିବ । ହେ ବାତଜ! 'ତୁମ୍ଭେ ବୃଷ୍ଟି *ପାତକୀ କେତକୀ ମଧୁପ ( ଭ୍ରମର ) ବଣ ( ବଣକୁ ) କାହୁଁ ଲଭିବ ? ( ଲଭିବ ନାହିଁ ) । ଶିବରାତ୍ରି ( ଶିବରାତ୍ରି ଦିନ ) ବିଷ୍ଣୁତନ୍ନୀ ( ନର୍ତ୍ତକୀ ) ହୋଇ ସୂକାନ୍ତରେ ( ସୁଶୋଭାରେ ) ୧ଈଶ ( ମହାଦେବଙ୍କର ) ଭୋଗ ହେବ, ସେହିପରି ପାତକୀ ( ପୂର୍ବଜନ୍ମ ପାତକୀ ମୁଁ ) ବିଷ୍ଣୁତନ୍ନୀ ( ନର୍ତ୍ତକୀ ) ହୋଇ ଶିବରାତ୍ରି ( ମଙ୍ଗଳ ରାତ୍ରିରେ ) ସୁକାନ୍ତରେ ( ସୁବେଶ ଭାବରେ ) ଈଶ (କାନ୍ତଙ୍କର) ଭୋଗ 'ହେବ' । ୫୮ ।

୫୯ଶ୍ଳୋକ ପଦ—ବନ୍ଦୁଁ ( ଏମନ୍ତ ସୀତା କହନ୍ତେ ) ପାବନି ( ହନୁମାନ୍ ) ଭରତେ ( ଶୀଘ୍ର ) କହି ( କହିଲେ ) । ଶଙ୍ଖାସୁର ଯେ ବେଦ ଗ୍ରେରାଇ 'ନେଇ' ସିନ୍ଧୁରେ ( ସମୁଦ୍ରରେ ) ଲୁଚାଇ ବଞ୍ଚାଇ ପାରିଲ କି ? ( ରକ୍ଷି ନ ପାରିଲ ) । ସେହି ( ବେଦ ) ଧାତାରେ ( ବିଧାତା ଠାରେ ) ସୁଖ ବରତ୍ରଇ

---

*ଅତି ପୌରାଣିକୀ କଥା ଅନୁସନ୍ଧେୟ । ଶିବପୁରାଣରେ କେତକୀ ବିଷୟ
ପ୍ରସିଦ୍ଧ ହୋଇଅଛି ।
୧—ଈଶଃ ପ୍ରଭୌ ମହାଦେବେ ଇତି ମେଦିନୀ ।

ବଧୂରତା ଯେତେ ଧନ ଥିଲ । ବଧିଠାରେ ପୁଣି ସମ୍ଭବିଲ ।
ବେନି ବେନି ଭାବ ପ୍ରଭାବ ସ୍ୱଭାବ ମୋକ୍ଷ କାହୁଁ ଆସେ ନପାଇଲ ଗୋ ।
ବୈଦେହି । ୭୦ ।
ବେନି ଜନଙ୍କ ଚେଷ୍ଟା ଭୂମ୍ବର । ବୁଝି କରୁଛି ଏହି ବଗ୍ଭର ।
ବିଧାତା ସଂସାରସାର ପ୍ରଶଂସାର ବାହି ବସିଲ ଏକଶରୀର ଗୋ ।
ବୈଦେହି । ୭୧ ।

---

( ରଖିଇବ ) । ଗୋ ବୈଦେହି ! 'ସେହିପରି ରାବଣ ତୁମ୍ଭଙ୍କୁ ଊର୍ଦ୍ଧ୍ୱରେ ଆଣି ସିନ୍ଧୁ ମଧ୍ୟରେ ଲୁଚାଇଛି, ରକ୍ଷିପାରିବ କି ? ପାରିବ ନାହିଁ, ତୁମ୍ଭେ ରାମଙ୍କ ସୁଖ ରଖିଇବ । ୬୯ ।

୭୦ଷ୍ଟି ପଦ—'ବିଧାତା ଆଦ୍ୟ ଦେବର[୧] ବଧୂରତା ( ବଚ୍ଛିନ୍ନ ହେବାର) ଯେତେଧନ ଥିଲ 'ତାହା ହେଲ' ବଧିଠାରେ ( ବିଧାତାଠାରେ) ପୁଣି ସେହି ବେଦ ସମ୍ଭବିଲ । ସେହିପରି ତୁମ୍ଭ ଦୁହିଙ୍କର ଯେତେଧନ ଅନ୍ତର ହେବାର ଅଛି ହେବ ପୁଣି ତୁମ୍ଭେ ତାଙ୍କଠାରେ ସମ୍ଭବିବ । ତହିଁ ଆଦ୍ୟ ଦେବର ଓ ରାମଚନ୍ଦ୍ର ଏବଂ ତୁମ୍ଭର ପଦ୍ମରବି, କୁମୁଦ ଚନ୍ଦ୍ର, ଜଳ ମୀନ, ମେଘ ମୟୂର ଇତ୍ୟାଦି ବେନି ବେନି ( ଦୁଇ ଦୁଇଙ୍କର ) ଭାବ[୧] ପ୍ରଭାବ (ଭାବଜନ୍ମ ହେତୁରୁ ) [୨]ସ୍ୱଭାବ ଅମୋକ୍ଷ( ସ୍ୱରୂପ ସାଧର୍ମ୍ୟ ) କାହୁଁ ଆସେ । ଗୋ ବୈଦେହି ! ନ ପାଇଲ ( ପାଇଲ କଥା କୁହଇ ସେ ) । ୭୦ ।

୭୧ଷ୍ଟି ପଦ—ଅଗୋ ବୈଦେହି ! ତୁମ୍ଭର ବେନି ଜନଙ୍କ ( ତୁମ୍ଭ ଦୁଇ ଜଣଙ୍କ ) ଚେଷ୍ଟା ବୁଝି ଏହି ବିଚାର କରୁଛି । ବିଧାତା ସଂସାରସାର (ସଂସାରରେ ସାର ) ପ୍ରଶଂସାର ( ପ୍ରଶଂସା ଦ୍ୱାରରେ ) ଏକ ଶରୀର ବାହି ବସିଲ ( ନିର୍ମାଣ କରିବାକୁ ବସିଲ ) । ଗୋଟିଏ ଶରୀର ନଲେକୋଥିର ପ୍ରଶଂସ୍ୟ କରି କରିବ ଏମନ୍ତ ଉଦ୍ୟମ କଲ ଏହିଭଳି । ୭୧ ।

---

୧—ପ୍ରଭାବୋ ଜନ୍ମମୂଳେ ସ୍ୟାକ୍ଷନ୍ମ ହେତୌ ପଦ୍ମଗମେ ଇତି ମେଦିନୀ ।
୨—ସ୍ୱରୂପଂ ଚ ସ୍ୱଭାବଶ୍ଚ ନିସର୍ଗଶ୍ଚେତ୍ୟମରଃ ।
୩—ମୋକ୍ଷସ୍ତୁ ମୁକ୍ତିକାଳେ ମୋଚନେ ଇତି ମେଦିନୀ ।

ବଗ୍ରଗଲ ପୂରୁଷେ କରବ । ବ୍ଲାମା ଏପର କାହୁଁ ଆଣିବ ।
ବେଷ୍କରେ ଶୋଭରେ ପ୍ରଭରେ ସ୍ନେହରେ ଗୁଣେ ଦ୍ୱିମୂର୍ତ୍ତିକଲକଭବଗୋ
ବୈଦେହୀ । ୬୨ ।

ବପୁ ଗୃହୀଁ ବଗୃରେ ଭୁମ୍ଭର । ବରହ ଯେ ଠକ ବଣିଜାର ।
ବେଗେରୂପ୍ୟ ଦେଇ ଜାତରୂପ ନେଇ ଘୋଟ୍ଟୁଁ ସ୍ୱରୂପ ତାପଅନ୍ଧାରଗୋ ।
ବୈଦେହୀ । ୬୩ ।

ବରକତ ତବ ଧବ ଶଉ । ବର୍ଣ୍ଣ ପାଲଟେ ଅତି ଦୁଃଖିତ ।
ବ୍ୟକତ କର ସ୍ଫଟିକ ମରକତ ନେଲ ଅଶକତ ଅତିଅନ୍ତ ଗୋ ।
ବୈଦେହୀ । ୬୪ ।

---

୬୨ଷ୍ଟି ପଦ—ବଗ୍ରଗଲ ପୂରୁଷେ ( ପୁରୁଷ ଗୋଟିଏ ) କଲବଂ ବାମା ଏପର ( ଏପୁରୁଷ ପର ) କାହୁଁ ଆଣିବ 'ଏମନ୍ତ' ଭାବ ( ବଗ୍ରଗ) ବେଷରେ (ବ୍ୟବହାରରେ) ଶୋଭରେ ପ୍ରଭରେ ସ୍ନେହରେ ଗୁଣେ (ଗୁଣରେ ଦ୍ୱିମୂର୍ତ୍ତି ( ଯୋଡ଼ାଏ ମୂର୍ତ୍ତି ) କଲ କି । ୬୨ ।

୬୩ଷ୍ଟି ପଦ—ଗୋବୈଦେହୀ । ଭୁମ୍ଭର ବପୁ ( ଶରୀରକୁ ) ଗୃହୀଁ ବଗୃର ଜରଇ ବରହ ଯେ ଠକ ବଣିଜାର ( ବଣିକ ) ହେଲା । ସ୍ୱରୂପ ( ସ୍ୱଭାବରେ ) ତାପ ଅନ୍ଧାର (ତାପାନ୍ଧକାର) ଘୋଟ୍ଟୁଁ (ଘୋଟନ୍ତେ) ରୂପ୍ୟ ( ରୁପା ) ଦେଇ ଜାତରୂପ ( ଭୁମ୍ଭକାନ୍ତ ସୁବର୍ଣ୍ଣକୁ ) ନେଲା । 'ଏହା ଦ୍ୱାରା ଅଙ୍ଗର ପାଣ୍ଡୁରତ୍ୱ ସୂଚିତ ହେଲା' । ୬୩ ।

୬୪ଷ୍ଟି ପଦ—ବର୍ଣ୍ଣ ପାଲଟ 'ହେବାରୁ' ଅତି ଦୁଃଖିତ 'ହୋଇ' ତବ ଭୁମ୍ଭର ଧବ ( ପତିର ) ଶଉ ବରକତ ( ବରକ୍ତ ହୋଇଅଛି ) । ତାଙ୍କ-ଠାରେ ସ୍ଫଟିକ ବ୍ୟକତ ( ବ୍ୟକ୍ତ ) କର 'ଦେଇ' ମରକତ ( କାନ୍ତ ମରକତକୁ ) ନେଲ । ଗୋ ବୈଦେହୀ । ତେଣୁ ଅତିଅନ୍ତ ଅଶକତ ( ଅତ୍ୟନ୍ତ ଅଶକ୍ତ ହୋଇ ଅଛନ୍ତି ) । ଏହାଦ୍ୱାରା କାନ୍ତଙ୍କ ପାଣ୍ଡୁତତ୍ୱ ସୂଚିତ ହେଲା । ୬୪ ।

ବେନି ବର୍ଣ୍ଣ ଅମୂଲ୍ୟ ପଦାର୍ଥ । ବ୍ୟାପି ପରସ୍ପରେ ହୃଦପଥ ।
ବହି ରତନ ସ୍ୱର୍ଣ୍ଣମାଳା ଯତନ ତନମନ ଜାଣେ ମନୋରଥ ଗୋ ।
ବୈଦେହି । ୬୫ ।

ବୋଲେ ଜାନକୀ ତା ବାଣୀ ଶୁଣି । ବିଖ୍ୟାତ ତୋ ଆଣି ରାମ ଆଣି ।
ବଳରେ କଣ୍ଠ ବଳିଷ୍ଠ ରକ୍ଷନାଥ ବଳିବନ୍ତ କରିବଟି ପୁଣି ହେ
ବାତଜ । ୬୬

ବେଦନାକୁ କି କହିବ ଦେଖ । ବନ୍ଧୁ ଧୀନବନ୍ଧୁ ମୁଁ ନିରକ୍ଷ ।
ବୋଲି ରମଣୀଶିରୋମଣି ତା ଶିରୋମଣି ଦେଇ ଭାଷେ ରଖ ରଖ ହେ
ବାତଜ । ୬୭ ।

---

୬୫ଶ୍ଳୋ ପଦ—ବେନିବର୍ଣ୍ଣ ( ମରକତ ବର୍ଣ୍ଣ ଓ ସ୍ୱର୍ଣ୍ଣ ବର୍ଣ୍ଣ ) ଅମୂଲ୍ୟ ପଦାର୍ଥ, ପରସ୍ପରେ ( ଅନ୍ୟୋନ୍ୟରେ ) ହୃଦପଥ ( ହୃଦୟପଥରେ ) ବ୍ୟାପି "ତାଙ୍କ ସ୍ୱରୂପ ତୁମ୍ଭ ହୃଦୟ ବ୍ୟାପିଥିଲା ତୁମ୍ଭସ୍ୱରୂପ ତାଙ୍କ ହୃଦୟ ବ୍ୟାପି ଥିଲା ଏହି ସରଳାର୍ଥ ।" ରତନ ସ୍ୱର୍ଣ୍ଣମାଳା ( ରତ୍ନମାଳା ସ୍ୱର୍ଣ୍ଣମାଳା ) 'ଏହି' ଯତନ ( ଯତ୍ନକୁ ) ବହି 'ଥିଲ' । 'ଏବେ ତୁହେଁ ତନମନ (ତନ୍ମନା) ହୋଇଅଛ । ଏହି ଭାବ' । ଗୋ ବୈଦେହି ! 'ତୁମ୍ଭ ତୁହିଙ୍କ' ମନୋରଥ (ଅଭିପ୍ରାୟ) 'ମୁଁ' ଜାଣେ । ୬୫ ।

୬୬ଶ୍ଳୋ ପଦ—ତା ବାଣୀ (ହନୁମାନର କଥା) ଶୁଣି ଜାନକୀ ବୋଲେ (ବୋଇଲେ) 'ହେ ହନୁମାନ୍' ରାମ ଆଣି (ରାମଙ୍କୁ ଏଠାକୁ ଆଣି) ତୋ ଆଣି (ଆଡ଼ମ୍ବରକୁ) ବିଖ୍ୟାତ 'କର' । ହେ ବାତଜ ! କଣ୍ଠ ବଳିଲେ ବଳିଷ୍ଠ ରକ୍ଷନାଥ (ରାବଣ) ପୁଣି ବଳିବନ୍ତ (ପୂଜାର ଉପହାର ସ୍ୱରୂପ) କରିବଟି ॥

୬୭ଶ୍ଳୋ ପଦ—ହେ ବାତଜ ! ମୋ ବେଦନାକୁ (ଦୁଃଖକୁ) କି କହିବ ଦେଖ ( ସାକ୍ଷାତରେ ଦେଖୁଛତ )[୧] । ବନ୍ଧୁ ( ମୋ ନାଥ ) ଦୀନବନ୍ଧୁ (ଦୁଃଖିଜନବନ୍ଧୁ) ମୁଁ ନିରକ୍ଷ ( ଅରକ୍ଷ); 'ଏମନ୍ତ' ବୋଲି ରମଣୀଶିରୋମଣି (ସୀତା) ତା ଶିରୋମଣି ( ତାହାଙ୍କ ମଥାମଣି ) ଦେଇ ୧ରଖ ରଖ ଭାଷେ (ଭାଷିଲେ) । ୬୭ ।

---

୧—ସାବଧାନାର୍ଥେ ଦ୍ୱିରୁକ୍ତ ।

ବନ୍ଦାଇଲେ ଏ ରତ୍ନ ଶ୍ୱଶୁରେ । ବନ୍ଦ୍ୟମାନ ପଦାର୍ଥ ଏ ସୁରେ ।
ବସନସ୍ଥିତ ଶ୍ୱସନସୁତ କଲା ସୁପ୍ରସନ୍ନବଦନା ଦେବାରେ ସେ ।
ବହନେ । ୬୮ ।

ବୋଲେ ମେଲାଣି ହୋଇଲା ମୁହିଁ । ବ୍ୟଥା ତେଜ ସୁଧାକରମୁହିଁ ।
ବ୍ୱିଦତ କଥା କାଳକାଳ ହୋଇବ କାଳ କାଳ ଏକା ଥାଅ ଧ୍ୟାୟି ଗୋ ।
ବୈଦେହି । ୬୯ ।

ବୋଇଲେ ହେ ଜନକକୁମାରୀ । ବୃଷାଞ୍ଜନ ଯାରେ ଅନୁସରି ।
ବନ୍ଧ ମୁଁ ତାହାରେ ବନ୍ଧ ପରକାରେ ବନ୍ଧିଲେ ସେ ପାରିବେ ନିସ୍ତାରନ୍ତେ
ବାତଜ । ୭୦ ।

---

୬୮ଷ୍ଟି ପଦ—'ପୁଣି ସୀତା କହିଲେ' ଏ ରତ୍ନ ( ଏ ରତ୍ନମଣି ) ନେଇ ଶ୍ୱଶୁରେ ବନ୍ଦାଇଲେ ( ଶ୍ୱଶୁରଙ୍କ ବନ୍ଦାଣ ମଣି ଏ ) । ସୁରେ ( ଦେବତାମାନେ ) ପଦାର୍ଥ ( ଏପଦାର୍ଥକୁ ) ବନ୍ଦ୍ୟମାନ ( ଜାଣନ୍ତୁ ) 'ଦେବ ଯୋଗ୍ୟ ପ୍ରଶସ୍ତ ରତ୍ନ ଏ ଏହିଭଳି'। 'ଏହା ଶୁଣି' ୧ଶ୍ୱସନସୁତ ( ହନୁମାନ୍ ) ସେ ସୁପ୍ରସନ୍ନବଦନା ( ସୀତା ) ଦେବାରେ ( ଦେବାଯୋଗୁଁ ) ବହନେ (ଶୀଘ୍ରେ) ବସନସ୍ଥିତ 'କଲା' ( ବାନ୍ଧି ରଖିଲା ) । ୬୮ ।

୬୯ତି ପଦ—'ତଦନ୍ତେ ହନୁମାନ୍' ବୋଲେ ମୁହିଁ ମେଲାଣି ହୋଇଲି ହେ ସୁଧାକର ମୁହିଁ ! ( ଚନ୍ଦ୍ରମୁଖି ) ବ୍ୟଥା (ଦୁଃଖ) ତେଜ ( ତ୍ୟାଗକର ) । ଏ କଥା ୧କାଳ କାଳ ( ବହୁକାଳ ପର୍ଯ୍ୟନ୍ତ ) ବିଦିତ ( ପ୍ରସିଦ୍ଧି ) ହୋଇ ରହିବ । ଗୋ ବୈଦେହି ! କାଳକାଳ ( ମହାଦେବଙ୍କୁ ) ଏକା ଧ୍ୟାୟି ( ଧ୍ୟାନକରି ) ଥାଅ । ୬୯ ।

୭୦ତି ପଦ—ଜନକକୁମାରୀ ହେ 'ସୀତା' ବୋଇଲେ ଯାରେ ( ଯେଉଁ ରାବଣକୁ ) ୧ବୃଷାଞ୍ଜନ ( ମହାଦେବ ) ଅନୁସରି ଅଛନ୍ତି

---

୧—ଶ୍ୱସନଃ ସ୍ପର୍ଶନୋ ବାୟୁର୍ମାତରିଶ୍ୱା ସଦାଗତିଃ ।

୧—କାଲୋମୃତ୍ୟୌ ମହାକାଳେ ସମୟେ ଯମକୃଷ୍ଣୟୋ ଶତି ମେଦିନୀ ।

୧—ବୃଷାଙ୍କଃ ବୃଷଧ୍ୱଜଃ କପାଲୋଽନ୍ଧ ରେତଃ ପାଂଶୁରେତାଃ ।

ବଧୀତାରହିଁ ନାହିଁ ଆସ୍ଥା । ବେଦ ମତେ ଅନୁସର ନିତ୍ୟ ।
ବଶ୍ତୁ ମାତର କାତର ନୋହୁଛନ୍ତି କଷ୍ଟ ଅନ୍ତରକୁ ଧ୍ୟାୟୁ ଚିତ୍ତ ହେ ।
ବାତଜ । ୬୧ ।

ବାତାତ୍ମଜ ସତ୍ୟ ବୋଲି ଯାଇ । ବୀରବର ଉପଇନ୍ଦ୍ର କହି ।
ବାସ୍ତବୀପଦ ଗ୍ରନ୍ଥ ବୁଧସମ୍ପଦ ମୂର୍ଖବିପଦକାରକ ଏହି ହେ ।
ବିସ୍ତୀର୍ଣ୍ଣେ । ୬୨ ।

—o—

ତାହାରେ ( ସେହି ସ୍ତବଣ ଦ୍ୱାରା ) ମୁଁ ବନ୍ଦ ହୋଇଅଛୁ । ୨ବନ୍ଦ ପରକାରେ ( ଜ୍ୟେଷ୍ଠପ୍ରାପ୍ତ ) ବନ୍ଦିଲେ ( ସ୍ତୁତି କଲେ ) କି ନିସ୍ତାର ପାରିବେ ହେ ବାତଜ ( ସେ ନିସ୍ତାର ପାରିବେ ନାହିଁ ) । ୬୦ ।

୬୧ତି ପଦ—'ବଧୀତାକୁ ଅବା ସ୍ତୁତି କରନ୍ତୁ' ବଧୀତାର ଆସ୍ଥା ନାହିଁ । ନିତ୍ୟ 'ରଘୁଙ୍କୁ' ଅନୁସର ବେଦ ପଢେ । ବଶ୍ତୁ ମାତର ( ମାତ୍ର ) କାତର ନୋହୁଛନ୍ତି 'ଏଣୁ' କଷ୍ଟ ଅନ୍ତରକୁ ( ମୋ କଷ୍ଟ ନାଶ କରିବାକୁ ) ହେ ବାତଜ ! ଚିତ୍ତ ( ଚିତ୍ତରେ ) ଧ୍ୟାୟୁ ( ଧ୍ୟାନ କରୁଅଛୁ ) ॥

୬୨ତି ପଦ—'ଏମନ୍ତେ, ସୀତା କହନ୍ତେ' ବାତାତ୍ମଜ ( ହନୁମାନ ) ସତ୍ୟ ( ଯାହା କହିଲ ମିଛ ନୁହେଁ ) ବୋଲି ( ଏମନ୍ତ କହି ) ଯାଇ (ଗଲେ) ବୁଧସମ୍ପଦ ( ପଣ୍ଡିତଙ୍କର ସମ୍ପଦକାରକ ) ମୂର୍ଖ ( ମୂର୍ଖଙ୍କର ) ବିପଦକାରକ ଏହି ଗ୍ରନ୍ଥ ବାସ୍ତବ ପଦରେ ବୀରବର ଉପଇନ୍ଦ୍ର ( ଭଞ୍ଜ କବି ) ବିସ୍ତୀର୍ଣ୍ଣେ ( ବିସ୍ତାର କରି ) କହି ( କହିଲେ ) । ୬୨ ।

—o—

୨—ବନ୍ଦନଃ ସ୍ତୁତି ପାଠକା ଜ୍ୟେଷ୍ଠମରଃ ।

## ଷଟ୍‌ତ୍ରିଂଶ ଛାନ୍ଦ ।

ରାଗ-ବସନ୍ତ ।

ବସନ୍ତି ସେ ବସନ୍ତର ସକଳ କାଳରେ । ଏଣୁ ଲେଖନେ ନାମ ଲିଖନ
ମଧୁବନ କରେ ଯେ । ବିବିଧ ତରୁଣ ତରୁ ଲତା ସୁରୁ ଅଛି । ବନ୍ଧ୍ୟା
ନୋହି ସର୍ବେ ଫଳବନ୍ତ ପୁଷ୍ପବନ୍ତ ଯେ । ରବିରଶ୍ମି ଅଂଶୁ ପଶୁ ନାହିଁ
ପତ୍ରଘଞ୍ଚେ । ବିହଙ୍ଗ ବହୁଳେ ପିଞ୍ଜଗୁଚ୍ଛ ଶୋଭା ରଚେ ଯେ ।୧।

ବଜ୍ରକୀଳ ଯହିଁ ନାନାରତ୍ନ ଆଲବାଳ । ବାସର ରଜନୀ ମେଳ
ପ୍ରଭା ମହୋଜ୍ଜ୍ୱଳ ଯେ । ବାସ୍ତୋଷ୍ପତି ଧନପତି ସେବେ ଲଙ୍କନାଥ ।

---

## ଷଟ୍‌ତ୍ରିଂଶ ଛାନ୍ଦ ।

୧ମ ପଦ—ସକଳ କାଳରେ ( ସବୁ ସମୟରେ ) ବସନ୍ତର ବସନ୍ତି (ସ୍ଥାନ) ସେ, 'ଏଣୁ' ଲେଖନ (ବିଧାତା) ମଧୁବନ 'ଏମନ୍ତ' ନାମ ଲିଖନ କରେ (ଲେଖିଲେ) । ମଧୁବନ [ମଧୁ (ବସନ୍ତର) ବନ (ଆଳୟ) ବା ମଧୁ (ମଦ୍ୟ) ତାହାର ବନ (ଆଳୟ) ] । ବିବିଧ (ନାନାପ୍ରକାର) ତରୁଣ ତରୁ ( ଯୁବାବୃକ୍ଷ ) ଲତା 'ସବୁ' ଅଛି ସୁରୁ (ମନୋହର) 'ହୋଇଅଛନ୍ତି' । ସର୍ବେ (ସବୁ ତରୁଲତା) ବନ୍ଧ୍ୟା ନୋହି 'ଫଳବନ୍ତ ଓ ପୁଷ୍ପବନ୍ତ' ଫଳବନ୍ତ ଓ ପୁଷ୍ପବନ୍ତ । 'ବୃକ୍ଷ, ଲତାଙ୍କର' ପତ୍ରଘଞ୍ଚେ (ପତ୍ର ଘଞ୍ଚରେ) ରବିରଶ୍ମି ଅଂଶୁ ( ସୂର୍ଯ୍ୟ କିରଣ ) ପଶୁ ନାହିଁ । ବିହଙ୍ଗେ ( ପକ୍ଷିମାନେ ) ବହୁଳ ( ବହୁଳବାରେ ) ପିଞ୍ଜଗୁଚ୍ଛ ( ପିଞ୍ଜଗୁଚ୍ଛିକ ) ଶୋଭା ( ଶୋଭାକୁ ) ରଚେ (ରଚୁଅଛନ୍ତି) । ୧ ।

୨ୟ ପଦ—ଯହିଁ (ଯେଉଁ ମଧୁବନରେ) ନାନାରତ୍ନ ( ବିବିଧରତ୍ନର ) ଆଲବାଳ ( ମଣ୍ଡାମାନ ) ବଜ୍ରକୀଳ ( ଉଜ୍ଜ୍ୱଳ ) ହୋଇଅଛନ୍ତି । ତାଙ୍କ ମହୋଜ୍ଜ୍ୱଳ ପ୍ରଭା ବାସର ରଜନୀ ( ଦିନରାତ୍ର ) ମେଳ ହୋଇଅଛୁ । ଲଙ୍କନାଥ (ରାବଣଙ୍କୁ) ବାସ୍ତୋଷ୍ପତି (ଇନ୍ଦ୍ର) ଧନପତି (କୁବେର) ସେବେ (ସେବାକରୁଅଛନ୍ତି) । 'ତେଣୁ' ନନ୍ଦନ (ଇନ୍ଦ୍ରଙ୍କ ବନ) ଚୈତ୍ରରଥ (କୁବେରୋଦ୍ୟାନ) ସେ ବନରେ ( ସେ ବନକୁ ) ବନ୍ଦନ୍ତି ( ପ୍ରଣତି ) କରୁଅଛନ୍ତି ।

ବନନ୍ତି ଯେ ବନରେ ନନ୍ଦନ ଚୈତ୍ରରଥ ସେ । ବହନ୍ତ ଅମୃତ ତୁଲ୍ୟ ଶୀତଳ ଅମୃତ । ବଢ଼ାନ୍ତି ଗୃହ ଜାମୃତେ ବାଦ କରି ନିତ୍ୟ ଯେ ।୨।

ବହିତ ଚନ୍ଦନ ଗନ୍ଧ ଗନ୍ଧବହ ବହି । ବାଲୁକା ବ୍ୟାଜରେ ହିମବାଲୁକା ସଞ୍ଚଇ ଯେ । ବହନ୍ତ ବାଦ ଆରମ୍ଭ ଗନ୍ଧର୍ବପଦକୁ । ବାଞ୍ଛନ୍ତ କୁରଙ୍ଗ ଖତ କରି ତା-ମଦକୁ ଯେ । ବନପ୍ରିୟ ପଞ୍ଚମସ୍ୱରକୁ ଗୀତାରମ୍ଭେ । ବହିଙ୍କୁ ଗନ୍ଧର୍ବପଦ ଛଡ଼ାଇଣ ଆମ୍ଭେ ଯେ । ୩ ।

ବସୁମତି ଦେବଧର୍ମେ ନ ଛୁଉଁ ଚରଣେ । ବୋଲଉଛ ଗନ୍ଧର୍ବ କେବଣ ସୁଲକ୍ଷଣେ ଯେ । ବାଣୀ ବଡ଼ପଣ ଛଡ଼ାଇଣ ନାରଦର । ଘନା

---

ଗୃହ ଜାମୃତେ ( ଗୃହମେଘେ ) ଅମୃତ ତୁଲ୍ୟ ଶୀତଳ ଅମୃତ (ଶୀତଳ ଜଳ) ବହନ୍ତ (ବର୍ଷନ୍ତି) ବାଦ (ବିବାଦ) କରି 'ସେ ବନକୁ' ବଢ଼ାନ୍ତି । ୨

୩ୟ ପଦ—ବହିତ ( ବିଖ୍ୟାତ ) ଚନ୍ଦନ (ଚନ୍ଦନ ବୃକ୍ଷର ) ଗନ୍ଧ (ସୁବାସକୁ ) ଗନ୍ଧବହ (ପବନ) ବହି ( ଧାଉଁକରି ) ବାଲୁକା ବ୍ୟାଜରେ (ବାଲିଛଳରେ) ହିମବାଲୁକା (କର୍ପୂରଧୂଳି) ସିଞ୍ଚଇ । ୧କୁରଙ୍ଗ (ମୃଗମାନେ) 'ଖେଚରମାନଙ୍କର' ଗନ୍ଧର୍ବ ପଦରେ ବାଦ ଆରମ୍ଭ (ବିବାଦର ଆରମ୍ଭ) ବହି (କରି କି) ତା ମଦକୁ (ତାହାଙ୍କ କସ୍ତୂରୀକି) ଖତ କରି ବାଞ୍ଛନ୍ତି । କାହିଁକି ନା ? 'ନନ୍ଦନବନ ଓ କୁବେର ଉଦ୍ୟାନରେ ଗନ୍ଧର୍ବମାନେ ଖତ ଦଅନ୍ତି ଗନ୍ଧର୍ବ ପଦ ବାଚକ ମୃଗମାନେ ତୁମ୍ଭେ ଅମ୍ଭ ସମାନ ନୁହ ଏମନ୍ତ ବାଦରେ କସ୍ତୂରୀକି ଖତ କରି ଦେଉଅଛନ୍ତି ଏହିଂ ଅଭିପ୍ରାୟରେ ଅର୍ଥ । ଗୀତାରମ୍ଭେ (ଗାନ ଆରମ୍ଭରେ) ବନପ୍ରିୟ (କୋକିଳମାନେ) ଗନ୍ଧର୍ବପଦ ଛଡ଼ାଇଣ (ଗନ୍ଧର୍ବ ପଦକୁ ଛଡ଼ାଇକରି) ପଞ୍ଚମସ୍ୱରକୁ ଆମ୍ଭେ ବହିଙ୍କୁ 'ଏହା କହନ୍ତି' । 'ନନ୍ଦନ ଚୈତ୍ରରଥରେ ଗନ୍ଧର୍ବମାନେ ପଞ୍ଚମ ସ୍ୱରରେ ଗାନ କରନ୍ତି ଏ ବନଚର କୋକିଳମାନେ ପଞ୍ଚମ ସ୍ୱରରେ ଗାନ କରନ୍ତି ଏହିଭାବ' । ୩ ।

୪ର୍ଥ ପଦ—'ତୁମ୍ଭେ' ଦେବଧର୍ମେ ବସୁମତୀ ( ପୃଥିବୀକି ) ଚରଣେ ନ ଛୁଅଁ ( ପୃଥିବୀରେ ପାଦ ନ ଦିଅ ) । 'ଆମ୍ଭେ' ବସୁମତୀକି ଚରଣେ

---

୧—ଗନ୍ଧର୍ବୋ ମୃଗଭେଦେ ସ୍ୟାତ୍ ପୁଂସ୍କୋକିଳ ତୁରଙ୍ଗୟୋଃ ।
ଅନ୍ତରାଭବସତ୍ତ୍ୱେ ଚ ଗାୟକେ ଖେଚରେଽପି ଚୈତି ବିଶ୍ୱଃ ।

ବାଦନେ ଝିଲ୍ଲିକା ଝର୍ଝରଂସୁସ୍ୱର ଯେ । ବ୍ୟର୍ଥ ଏ ଅନୁମାନମାନଙ୍କୁ
ନୁହଇ । ବଳେ ଯକ୍ଷୁଁ ରକ୍ଷେ ପୁଣ୍ୟଜନପଦ ନେଇ ଯେ । ୪ ।

ବଳେ ଯେବେ ନ ନେଲେ ପାତକା ପୁଣ୍ୟଜନ । ବୋଲାଇଲେ
କେଉଁ ଅର୍ଥେ ସର୍ବେ ମନେ ଘେନ ଯେ । ବନ ଦେଖି ମହାତୋଷ
ହନମାନ ପାନ୍ଥ । ବାଦକାଳେ ଗ୍ରୈର ପ୍ରାପ୍ତ ଯିବା କପାଁ ଲୁଚ ଯେ ।
ବଳହୀନ ହୋଇ ଯିବା ହୋଇ କ୍ଷୁଧାତୁର । ବୃକ୍ଷୁଁ ଉପାଡ଼ି ସେ ଫଳ
ଖାଉଛନ୍ତି ମୁଖଙ୍କୁ ଯେ । ୫ ।

---

ନ ହୁଏଁ । କେବଣ ସୁଲକ୍ଷଣେ ( ଆଉ କେଉଁ ସୁଲକ୍ଷଣରେ ) 'ଭୃଙ୍ଗେ ଗନ୍ଧର୍ବ
ବୋଲନ୍ତିଛି '୧ହ୍ୱା' ଗନ୍ଧର୍ବ (କୋକିଲମାନେ) 'କହୁଅଛନ୍ତି' ? ନୀରଦର
(ନାରଦଙ୍କ) ୱୀଣା 'ବଜାଇବା' ବଡ଼ପଣ ଛଡ଼ାଇଣ ୧ଝିଲ୍ଲିକା (ଝିଙ୍କାରିମାନେ)
ବନା ବାଦନରେ (ବାଦନ ବିହୀନରେ) ଝର୍ଝର 'ଏମନ୍ତ' ସୁସ୍ୱର 'କରୁଅଛନ୍ତି'
ଏ ଅନୁମାନ ବନ୍ଧ (ନଷ୍ଟପ୍ରାୟ) ବ୍ୟର୍ଥ (ବ୍ୟର୍ଥ) ନୁହଇ । ବଳେ (ବଳପୂର୍ବକ)
୨ଯକ୍ଷୁଁ (ଯକ୍ଷଙ୍କଠାରୁ) ରକ୍ଷେ (ରକ୍ଷମାନେ) ପୁଣ୍ୟଜନ ପଦ ନେଇ 'ଅଛନ୍ତି'।୪।

୫ମ ପଦ—ହେ ରାକ୍ଷସମାନେ ଯେବେ ବଳେ ନ ନେଲେ ତେବେ କେଉଁ
ଅର୍ଥେ ପାତକା ପୁଣ୍ୟଜନ ବୋଲାଇଲେ ସର୍ବେ (ସମସ୍ତେ) ଏକଥା ମନରେ
ଘେନ (ବିଚାରକର) । 'ଏମନ୍ତ' ବନ ଦେଖି ହନୁମାନ ମହା ତୋଷ ହୋଇ
ପାନ୍ଥ (ଭାବଲେ) । ବାଦକାଳେ (ବିବାଦ ସମୟରେ) ଗ୍ରୈର ପ୍ରାପ୍ତ କପାଁ
ଲୁଚ 'କର' ଯିବା । ବଳହୀନ ହୋଇ (ଦୁର୍ବଳ ହୋଇ) 'କପାଁ' କ୍ଷୁଧାତୁର
ହୋଇ ଯିବା । 'ଏମନ୍ତ ପାନ୍ଥ' ବୃକ୍ଷ ଉପାଡ଼ି ସେ ଫଳ ମୁଖର (ମୁଖର) ଝାଉଁ
'ଖାଇଲେ' । ୫ ।

---

୧—ଭୃଙ୍ଗାଶ୍ଚ ଝିଣ୍ଟିକା ଝୀଶ୍ଚ ଝିଲ୍ଲିକା ଚ ସମା ଇମା ଇତ୍ୟମରଃ ।
୨—ଅଥ ପୁଣ୍ୟଜନୋ ଯକ୍ଷେ ରକ୍ଷସେ ସଜ୍ଜନେଽପି ଚ ଇତି ମେଦିନୀ ।

ବାହ୍ୱାସ୍ଫୋଟ ବହିଲି ଉଦରଶାନ୍ତି ଅନ୍ତେ । ବିମର୍ଦ୍ଦିଲି ପାଦେ ପୁଷ୍ପ ଛଦନ ସହିତେ ଯେ । ବିସ୍ମରନ୍ତି ରକ୍ଷାରାକ୍ଷସୀଏ କି ହୃଷ୍ଟାନ୍ତେ । ବିତାସ ବିହ୍ୱାନେ ତ କାନନ ହେଲି ହତ ଯେ । ବ୍ରହ୍ମାର ଅର୍ଦ୍ଧ ବୟସ ପ୍ରଳୟତ ଦୂରେ । ବଂଶଭୃଙ୍ଗେ ନ ଡର କେ ଅଛୁ ଏ ସଂସାରେ ଯେ । ୬ ।

ବାଳୀ ଭଙ୍ଗିଲେ ବାନର ଦେଖି ବାଳି ଏହି । ବାର୍ତ୍ତା କହିବାରେ ଭୂପେ ନଦୀ ପ୍ରାୟେ ବହି ଯେ । ବିଭୂରଣ ବେଦନା ଭୟଦ ଧ୍ୱନି ମେଳ । ବର୍ଷ୍ମରୁ ଗଳିତ ଘର୍ମ ଉଲ୍ଲୋଳ କଲ୍ଲୋଳ ଯେ । ବାଳ ଫିଟି ଲେଟି ଶୈବାଳଚୟ କି ସେ । ବାହୁ ଉରୁ ତରୁ କି ଉପୁଡ଼ି ଭାସି ଆସେ ଯେ । ୭ ।

---

୬ଷ୍ଠ ପଦ—ଉଦର ଶାନ୍ତି ଅନ୍ତେ (ପେଟ ପୂରିଲାପରେ) ବାହ୍ୱାସ୍ଫୋଟ ବହିଲି (ମୋଡ଼ିଲି) । ପାଦେ (ପାଦରେ) ପୁଷ୍ପ ଛଦନ (ପତ୍ର) ସହିତେ ବିମର୍ଦ୍ଦିଲି (ମର୍ଦ୍ଦିଲି) । ରକ୍ଷାରାକ୍ଷସୀଏ ବିସ୍ମରିଲେ ଏ କି ହୃଷ୍ଟାନ୍ତ ? ବିତାସ ବିହ୍ୱାନେ (ବିନା ବିତାସରେ) କାନନ (ମଧୁବନ) ହତହେଲା ତ । ବ୍ରହ୍ମାର ଅର୍ଦ୍ଧବୟସ 'ହୋଇଅଛି' (ପୂର୍ଣ୍ଣ ହୋଇନାହିଁ) । ପ୍ରଳୟ 'ହେବାର' ତ ଦୂରେ ଅଛି (ବର୍ତ୍ତମାନ ପ୍ରଳୟକାଳ ନୁହେଁ) । ବଂଶଭୃଙ୍ଗେ (ରାବଣକୁ) ନ ଡର ଏ ସଂସାରେ କେ (କିଏ) ଅଛି ? (କେହି ନାହିଁ) ।୬।

୭ମ ପଦ—ବାନର ଦେଖି ବାଳୀ (ରକ୍ଷା ରାକ୍ଷସୀଏ) ଭଙ୍ଗିଲେ ଏହି ବାଳି (ବାଳିନାମା ବାନର) । ଭୂପେ (ରାବଣକୁ) ବାର୍ତ୍ତା କହିବାରେ (କହିବାପାଇଁ) ନଦୀ ପ୍ରାୟେ ବହି 'ଗଲେ' (ନଦୀ ଜଳସ୍ରୋତ ବେଗରେ ଧାଇଁଗଲେ) । 'ଏ ପଦ ରୂପକ' । ବିଭୂରଣ (ପୂର୍ଣ୍ଣ) ବେଦନା ଭୟଦ (ଭୟପ୍ରଦ) ଧ୍ୱନି 'ରୂପରେ' ମେଳ 'ହୋଇଅଛି' । ବର୍ଷ୍ମରୁ (ଦେହରୁ) ଗଳିତ (ନିର୍ଗତ) ଘର୍ମ (ଝାଳରୂପ) ଉଲ୍ଲୋଳ କଲ୍ଲୋଳ (ଚଞ୍ଚଳ ଲହରୀଗୁଡ଼ିକ) ବାଳ ଫିଟି ଲେଟି (ଲେଟିବାରୂପ) ଶୈବାଳଚୟ (ଶିଉଳି ସମୂହ) କି ସେ ? 'ଉହିଁରେ' ବାହୁ ଉରୁ ରୂପ ତରୁ ଭାସିଆସେ କି ? ।୭।

ବରଷା ସୂଚକ ଏ କାଳକୁ ସଖି ସ୍ଥାନ । ବିସ୍ତାର ଘନ ଗବଣ
ପ୍ରତିଭା ନିଃସ୍ୱନ ଯେ । ତଥି ବାତ ମେଳ ଯନ୍ତ୍ର ବାଜିବାର ଚିହ୍ନ ।
ବରୁଣ ଶକ୍ରାଦି ସୁମନସ ସ୍ଫୁଟ ଯହିଁ ଯେ । ବରଳରେ ନୀଳକଣ୍ଠ ନୃତ୍ୟ
ଶ୍ରଦ୍ଧାପର । ବିହୁଁ ହର ଖିଡ଼ଂ ଘୋଟି ମୋହିତ ଅନ୍ଧାର ଯେ ।୮।

---

୮ମ ପଦ—ଏ କାଳକୁ (ଏ ସମୟକୁ) ସଖିସ୍ଥାନ ବରଷା ସୂଚକ (ବର୍ଷାକାଳ ସୂଚକ ଅଟେ)। 'ଯହିଁରେ' ଗର୍ଜନ ଘନ 'ପ୍ରାପ୍ତ' ବିସ୍ତାର 'ପାଇଛି' 'ଯହିଁରେ' ୧ପ୍ରତିଭା (ନବନବୋନ୍ମେଷଶାଳିନୀ ପ୍ରଜ୍ଞା) ନିଃସ୍ୱନ (ଘନଗର୍ଜ୍ଜନ ସ୍ୱରୂପ) 'ବର୍ଷାକାଳେ' ତଥି (ତଥିରେ) ବାତ (ପବନ) ମେଳ 'ହୋଇଥାଏ' ବାଜିବାର (ପକ୍ଷିସମୂହ) ଯନ୍ତ୍ର (ଯନ୍ତ୍ରିତ) 'ହୋଇଥାନ୍ତି' । ୨ବରୁଣ (ବୃକ୍ଷ) ଶକ୍ର (କୁଟଜବୃକ୍ଷ) ଆଦି (ଅର୍ଜ୍ଜୁନ ବୃକ୍ଷପ୍ରଭୃତି) ସୁମନସ (ଫୁଲ ସବୁ) ଯହିଁ (ଯେଉଁ ବର୍ଷାକାଳରେ) ସ୍ଫୁଟ (ଫୁଟିଥାନ୍ତି) 'ସେହିପରି ସେ ସଖୀରେ' ବିଧି (ବ୍ରହ୍ମା) ବାତ (ପବନ) ମେଳ 'ହୋଇ ଅଛନ୍ତି' । ତହିଁ (ସେଠାରେ) ଯନ୍ତ୍ର (ବୀଣାମର୍ଦ୍ଦଳ ପ୍ରଭୃତି ବାଦ୍ୟ) ବାଜିବାର (ବାଜୁଅଛି) । ଯହିଁ (ଯେଉଁ ସଖୀରେ) ବରୁଣ (ଦେବତା) ୩ଶକ୍ର (ଇନ୍ଦ୍ର) ଆଦି ସୁମନସ (ଦେବତାମାନେ) ସ୍ଫୁଟ (ମେଳ) ହୋଇଅଛନ୍ତି । ବର୍ଷାକାଳରେ ବରଳରେ (ନିର୍ମଳରେ) ୪ନୀଳକଣ୍ଠ (ମୟୂର-ମାନେ) ନୃତ୍ୟ (ନୃତ୍ୟରେ) ଶ୍ରଦ୍ଧାପର 'ହୋଇଥାନ୍ତି' । ୫ହର (ରଜନୀ) ଖିଡ଼ ବିହୁଁ (ଦିବସ ସହିତ ପର ହେବାରୁ) ଅନ୍ଧାର ଘୋଟିଯାଏ 'ଲୋକେ' ମୋହିତ 'ହୁଅନ୍ତି' । 'ସେହିପରି ସଖୀ' ବରଳରେ (ବ୍ୟକ୍ତହୋଇ) ନୀଳକଣ୍ଠ (ମହାଦେବ) ନୃତ୍ୟ (ତାଣ୍ଡବ ନୃତ୍ୟରେ) ଶ୍ରଦ୍ଧାପର 'ହୋଇ' ହର (ବିଷ୍ଣୁଙ୍କର) ଖିଡ଼ (ଆଦର) ବିହୁଁ (ବିଧାନ କରନ୍ତେ) ଅନ୍ଧାର 'ପର' ମୋହିତ (ମୋହ) ଘୋଟି (ଘୋଟିଲା) ।୮।

---

୧—ପ୍ରଜ୍ଞା ନବନବୋନ୍ମେଷଶାଳିନୀ ପ୍ରତିଭା ବିଦୁଃ ।

୨—ବରୁଣସ୍ତରୁଭେଦେଽପି ପଶ୍ଚିମାଶାପତାବପି ।

୩—ଶକ୍ରଃ ପୁମାନ୍ ଦେବରାଜେ କୁଟଜାର୍ଜ୍ଜୁନ ଭୂରୁହୋରପି ମେଦିନୀ ।

୪—ନୀଳକଣ୍ଠୋ ଭୁଜଙ୍ଗଭୁଗତ୍ୟମରିଃ ।

୫—କୃଷ୍ଣେ କୋକିଲଷଟ୍‌ପଦେ ଛିଡ଼ଜଲ୍ପେ ସର୍ପେ ମୃଗେ ବାୟସେ
ଚନ୍ଦ୍ରେଽପି ତଥା ହରଶକ୍ତି ଶବ୍ଦମାଳା ।

ବିଖ୍ୟାତ ଚଞ୍ଚଳା ଅତି ସେ ଅନ୍ତେ ଶରଦ । ବିତ ଚନ୍ଦ୍ରୋଦୟ
କଲା ପୁଷ୍କର ସୁହୃଦ ଯେ । ବିବେକ ପ୍ରସରି ହେ ଭୂହିନ ହୋଇଲା ଆସି

---

୯ମ ପଦ—ବର୍ଷାପକ୍ଷେ 'ଯହିଁରେ' ଚଞ୍ଚଳା (ବିଜୁଳୀ) ଅତି ବିଖ୍ୟାତ (ଅତିଶୟରେ ପ୍ରକାଶ ପାଏ) ସଖିପକ୍ଷେ 'ରାବଣ ମୋହ ଯିବାରୁ' 'ଯହିଁରେ' 'ଲୋକଙ୍କ' ଚଞ୍ଚଳା ୧ ଅତି (ଚଞ୍ଚଳ ଗମନ) ବିଖ୍ୟାତ (ପ୍ରକାଶ) 'ପାଇଲା' । ସେ ଅନ୍ତେ (ସେ ବର୍ଷାକାଳ ଉତ୍ତାରେ) ଶରଦ (ଶରତ୍‌କାଳ) ୨ ପୁଷ୍କର (ଆକାଶରେ) ସୁହୃଦ (ନିର୍ମଳ) ଚନ୍ଦ୍ରୋଦୟ 'ହୁଅଇ' 'ସଖିରେ ଚଞ୍ଚଳ ଗତିରେ' ସୁହୃଦ 'ବ୍ୟକ୍ତିମାନେ' ଶରଦବିତ (ଶରତ୍‌କାଳ ପାଇ) ୩ ପୁଷ୍କର (ଜଳ) ଚନ୍ଦ୍ର (କର୍ପୂର) ଉଦୟ କଲେ (ଜଳସିକ୍ତ କର୍ପୂର ଘଷିଲେ) । 'ଏମନ୍ତ ଉପଚାରରୁ' ବିବେକ (ଜ୍ଞାନ) ପ୍ରସରି (ପ୍ରସରିଲା) । 'ଶରଦ ଉତ୍ତାରୁ' ଭୂହିନ (ହିମକାଳ) ଆସି ହୋଇଲା । ୪ ହେ (ଏହି ହେତୁରୁ) ବିଭୀଷଣ (ଅତି ଭୟଙ୍କର) ଅରିଷ୍ଟ (କାକମାନେ) ୫ମନ୍ତ୍ରଣ (ଚିକ୍‌କଣ) 'ହେଲେ' । ଶୁକେ (ଶୁକପକ୍ଷୀମାନେ) ଭାଷି (ଭାଷିଲେ) । ସଖିପକ୍ଷେ 'ଏମନ୍ତ ରୀତି ରାବଣର ଦେଖି' ବିଭୀଷଣ (ରାବଣର ସାନଭାଇ) ଆସି ଏଥିପାଇଁ ହେତୁ ହୀନ ହେଲା ୬ଅରିଷ୍ଟ (ଅଶୁଭକଥା) 'ହେଲା-ବୋଲି' ମନ୍ତ୍ରଣ (ଗୁପ୍ତକଥା) ୭ଶୁକେ(ଶୁକନାମକ ମନ୍ତ୍ରୀ ଆଗରେ) ଭାଷି (କହିଲେ) 'ଏହି ସମୟରେ' ବନରକ୍ଷ (କୋଷ୍ଠପାଳକମାନେ) ବାଣୀନ୍ୟାସେ(କହିବାରେ) ପୁନଃ (ପୁନର୍ବାର) ଜଡ଼କୃତି (ଜଡ଼ହୋଇ ରହିଲା) 'ଏଥିରେ' ୮ ଜଡ଼-

---

୧—ଅତ ସାତତ୍ୟଗମନେ ଧାତୋରପ୍ରତ୍ୟୟେ ଅତିଃ ।
୨—ବ୍ୟୋମ ପୁଷ୍କରମମ୍ବରମିତ୍ୟମରଃ ।
୩—ପୁଷ୍କରଂ ସର୍ବତୋମୁଖ ମତ୍ୟମରଃ ।
୪—ହେ ହୈ ସମ୍ବୋଧନେ ହେତୌ ଇତି ମେଦିନୀ ।
୫—ମନ୍ତ୍ରଣଂ ଗୁପ୍ତଚିକ୍‌କଣେ ଇତି କୋଷଃ ।
୬—ଅରିଷ୍ଟମଶୁଭେଚକ୍ରେ ଇତି ମେଦିନୀ
୭—ଶୁକୋ ବ୍ୟାସପୁତ୍ରେ କୀରେ ରାବଣସ୍ୟ ଚ ମନ୍ତ୍ରିଣି ।
୮—ମୂଢୀମଃ ଶିଶିରୋଜଡ଼ ଇତ୍ୟମର ।

ବାଣ୍ଡକଷଣ ଅରଣ୍ଯ ମସୃଣ ଶୁକେ ଭାଷି ଯେ । ବନରକ୍ଷ ବାଣୀନ୍ୟାସେ ପୁନଃ ଜର୍ଜ୍ଜରିତ । ବଶେଷିତେ ଚିତ୍ତେ ଗଲ୍ ପ୍ରବର୍ତ୍ତି ଶୀତାର୍ତ୍ତି ଯେ ।୯।

ବସନ୍ତେ ଭଳିବା କିଂ ଶୁକର ପ୍ରକାଶିତ । ବିନାଶ ହୋଇବ ଗିର-ସମ କାଳପ୍ରାନ୍ତ ଯେ । ବ୍ରହ୍ମାଙ୍କୁ ପୁଚ୍ଛିଲ ଶାଖାମୃଗେ କାହୁଁ ଆସି । ବିଶ୍ୱ-ତରେ ମୃଗରାଜ କାନନେ ବଳସି ଯେ । ବୋଲେ ସେ ହେବ ସୁଗ୍ରୀବ ଅବା ହନୁମାନ । ବାଳି ବୋଲନ୍ତାଇଁ ରାମବାଣେ ସେନିଧନ ଯେ ।୧୦।

ବିସ୍ମୟ ହରଷ ଶୁଣି ବହୁ ସୈନ୍ୟ ପେଷି । ବାନ୍ଧି ଆଣିବଟି ନ ବିନାଶି ଏହା ଭାଷେ ଯେ । ବିଭୂ ହୋଇ ସେ କଙ୍କରଗଣ-ଦଣ୍ଡଦାମ

---

କୃତ ( ଶିଶିରକାଳର ଧର୍ମ ହେଲା ) । ବଶେଷିତେ ( ବଶେଷରେ ) ଶୀତାର୍ତ୍ତି ( ପୀଡ଼ା ଦେଉଥିବା ଦୁଃଖ ) ଶୀତାର୍ତ୍ତି ( ଶୀତରେ ପୀଡ଼ିତ ) 'ହୋଇ' ଚିତ୍ତେ ( ମନରେ ) ପ୍ରବର୍ତ୍ତି ଚଳି । ୯ ।

୧୦ମ ପଦ—ରାବଣ ମୋହଠାରୁ 'ଉଠି' ବସନ୍ତେ କିଂ ( କି କଥାଏ ) 'ଏମନ୍ତ' ଭଳିବା ଶୁକର ( ଶୋଭନକର ହୋଇ ) ପ୍ରକାଶିତ 'ହେଲ' ଅଥଚ— ବସନ୍ତେ (ବସନ୍ତକାଳହୁଅନ୍ତେ) କିଂଶୁକର ( ପଳାଶର ) 'ପ୍ରକାଶିତ' 'ହେବାକଥା' ଭଳିବା କି ? ( ଭଳିବା ନାହିଁ ସେ ସହଜରେ ପ୍ରକାଶ ପାଏ ) । ଗିରସମ ( ରାବଣର ) କାଳ ପ୍ରାନ୍ତ ( ମରଣ ନିକଟ ) 'ହେବାରୁ' ବିନାଶ ହୋଇବ । ଅଥଚ ଗିରସମ ( ଗ୍ରୀଷ୍ମ ) ପ୍ରାନ୍ତ ( ଶେଷରେ ) କାଳ ( ସମସ୍ତ ) ବିନାଶ ହୁଅଇ । 'ଋତୁଚର୍ଯ୍ୟାପୁଷ୍ଟହୃଷ୍ଟ ଏହିନ୍ୟାୟରୁ ସମସ୍ତ ସରଇ ଏହିଭାବ' । ବ୍ରହ୍ମାଙ୍କୁ ପୁଚ୍ଛିଲ ( ପଗ୍ଭରିଲ ) ଶାଖାମୃଗେ (ଗୋଟାଏ ବାନର) କାହୁଁ ଆସି ବିଶ୍ୱତରେ ( ନିର୍ଭୟରେ ) ମୃଗରାଜ କାନନେ ( ସିଂହବନରେ ) ବଳସି ( ବଳସୁଛି ) । ସେ ( ବ୍ରହ୍ମା )-ବୋଲେ ( ବୋଇଲେ ) ସୁଗ୍ରୀବ ଅବା ହନୁମନ୍ତ ( ହନୁମାନ୍ ) ହେବ; ବାଳି ବୋଲନ୍ତାଇଁ ( ବାଳି ବା କହନ୍ତେ ) ସେ ( ବାଳି ) ରାମବାଣେ ( ରାମଙ୍କ ବାଣରେ ) ନିଧନ 'ହେଲା' ( ମଲା ) ।।

୧୧ଶ ପଦ—'ବାଳୀ ମାରିବା' ଶୁଣି 'ରାବଣ' 'ତାଠାରୁ ପରାଜୟ ପାଇଥିବା ହେତୁ' ହରଷ ( ହର୍ଷ ) 'ଓ ରାମ ବାଳିକି ମାଇଲେଣି ମୋତେ ମାରିପାରବେ ଏଣୁ' ବିସ୍ମୟ ହେଲା । 'ତଦନ୍ତେ' ବହୁ ( ବହୁତ ) ସୈନ୍ୟ

ବାହୁ ମୋଡ଼ି କେଶ ଧରି ପ୍ରାଣ ନେଲ ଯେଉଁ ଯେ । ବିଭଞ୍ଜନ ଶାଲ-
କଟର ପବନଜନିତ । ବଧି ଶାର୍ଦ୍ଦୂଳାଦି ପାଞ୍ଚ ସେକେଶରୀସୁତହେ ।୧୧
ବହି ମୃତ୍ୟୁମୂର୍ତ୍ତି ଜମ୍ବୁମାଳୀ ଅନ୍ତମାଳ । ବିଲମ୍ବାଇ ଗଲେ ପ୍ରଶସ୍ତର
ଗର୍ବ ଦଳି ସେ । ବଳ ପୁଚ୍ଛି ବୋଲେ ତବ ପ୍ରାଣସଖ ଯୋଖ ।

---

ଯେଣି ( ଯେଉଁ ଲୋକ ) । 'ସେ ଚାକରକୁ' ନ ବିନାଶ ( ନ ମାର ) ବାନ୍ଧି ଆଣିବଟି; ଏହା ଭାଷି ( କହିଲ ) 'ରାବଣ କଥାରେ ଅଶୀସହସ୍ର କିଙ୍କରଗଣ ଗଲେ' । ସେ ( ହନୁମାନ୍ ) ବିଭୁ ( ରାଜା ) ହୋଇ କିଙ୍କରଗଣ ଦଣ୍ଡିଲାନ୍ତି ( କିଙ୍କରଗଣଙ୍କୁ ଦଣ୍ଡ ଦେଲେ ) 'କିରୂପ ଦଣ୍ଡ' ? କେଶ ଧରି ବାହୁ ମୋଡ଼ି ପ୍ରାଣ 'ଚୂର୍ଣ୍ଣ' କରି ( ଖଣ୍ଡଣ ) ହରନ ( ନେଲେ ) । ରାଜା ଯେପରି କାହାକୁ ବାହୁ ମୋଡ଼ିବା କେଶ ଧରିବା ରୂପ ଦଣ୍ଡ ଦେଇ ନିଗ୍ରହ କରନ୍ତି ହନୁମାନ୍ ସେହିପରି କାହାକୁ କେଶଧରି ବା କାହାକୁ ବାହୁ ମୋଡ଼ି ମାରି ପକା-ଇଲେ ଏହି ସରଳାର୍ଥ ।' ପବନ ଜନିତ ( ଜାତ ହେଲେ ) ୧ଶାଲ ( ବୃକ୍ଷ-ମାନଙ୍କୁ ବିଭଞ୍ଜନ ( ଭାଙ୍ଗିଲେ ) । ପବନ ଜନିତ ( ହନୁମାନ୍ ) ଶାଲ (ଶାଲକ ଟଙ୍କୁ) ବିଭଞ୍ଜନ ( ମାରିଲେ ) । କେଶରୀସୁତ ( କେଶରୀନାମା କପିର ପୁତ୍ର ହନୁମାନ୍ ) ସେ କେଶରୀ ସୁତ ( ସିଂହଶାବକପରି ) ଶାର୍ଦ୍ଦୂଳାଦି ପାଞ୍ଚ ( ଶାର୍ଦ୍ଦୂଳ ପ୍ରଭୃତି ପାଞ୍ଚସେନାପତିଙ୍କୁ ପଶ୍ଚାତ୍କଳ୍ପ ) ବଧି ( ବଧିଲେ ) । ପବନ ଶାଲବୃକ୍ଷ ଆଦି ଗଛ ଭାଙ୍ଗିଲା ପରି ହନୁମାନ୍ ଶାଲକଟଙ୍କୁ ମାରିଲେ ଓ ସିଂହ ଶିଶୁ ଶାର୍ଦ୍ଦୂଳ ଆଦି ସନ୍ତ୍ରାନ୍ତ ବଧ କଲାପରି ଶାର୍ଦ୍ଦୂଳ ପ୍ରଭୃତି ପାଞ୍ଚଜଣଙ୍କୁ ବଧିଲେ ଏହି ସରଳାର୍ଥ' ୧୧ ।

୧୨ଶ ପଦ—ମୃତ୍ୟୁ ମୂର୍ତ୍ତି ( କାଳମୂର୍ତ୍ତିକି ) ବହି ( ଧରି ) ଜମ୍ବୁମାଳୀ 'ଦୈତ୍ୟର' ଅନ୍ତମାଳ ( ଅନ୍ତ୍ର ମାଳାକରି ) ଗଲେ ( ଗଳାରେ ) ବିଲମ୍ବାଇ ( ଲମ୍ବାଇଲେ ) । ପ୍ରଶସ୍ତର ( ପ୍ରଶସ୍ତ ସେନାପତିର ) ଗର୍ବ ଦଳି ( ଦଳିଲେ ) ସେ ବାନରଙ୍କ ଏହିମତ । 'ତାହାଠାରୁ ଶୁଣି ରାବଣ' ବଳ ପୁଚ୍ଛି ( କପିର ବଳ କେତେ ପଚାରନ୍ତେ ) ବୋଲେ ( ପ୍ରଶସ୍ତ କହିଲ ) ତବ ୧ପ୍ରାଣ ସଖ ଯୋଖ ( ଆପଣଙ୍କଙ୍କୁଳ୍ୟ

---

୧—ଶାଲାଃସ୍ୟୁର୍ଭୂଜରୁଃ ପତ୍ନୀ ଇତ୍ୟମରଃ । ଅନ୍ତଦ୍ଧାବଙ୍ଗଃ କ୍ଷୁଠଃ ଶାଲଇତି
୧—ପ୍ରାଣୋ ଗନ୍ଧରସେ ବୋଲେ କାବ୍ୟଜୀବେଃନଳେ ବଳେ ଇତିମେଦିନୀ

ବିଗ୍ରହ ତ ଉଦଯ୍ଯାଦ୍ରି ବାଳଭାନୁ ମୁଖ ଯେ । ବିଭୂଷା ମୁକୁଟ ଊର୍ଦ୍ଧ୍ୱମୁଖ
କାରଣ କି । ବିଳସେ ତହିଁ ଲାଙ୍ଗୁଳ ଆସି କି ବାସୁକି ଯେ । ୧୨ ।
ବିଧ୍ୱଂସ ତମସ ଦମ୍ଭ ସେ ପ୍ରଭା ଅନାଇଁ । ବଢ଼ଧର୍ମେ ଦୂର ମୁଁ ଦର୍ଦ୍ଦୁର
ପଥା ହୋଇ ଯେ । ବଇଷ୍ଟ୍ରବଣେ ଶ୍ରବଣେ ପେଷିଲ ଅକ୍ଷୟ । ବିସ୍ମିତଲି
ନାହିଁ ବଧ ବୋଲି ନିଃସଂଶୟ ଯେ । ବ୍ୟାଧ ଅଦ୍ରଙ୍କାରେ ଶାଖାମୃଗବୁଦ୍ଧି
କରି । ବେଢ଼ାଇ ମେ ଈସୈନ୍ୟଜାଳ କଳମ୍ବ ପ୍ରହାର ଯେ । ୧୩ ।

---

ବଳ ) । ତାର୍ହ୍ନିର ବିଗ୍ରହ ( ଦେହ ତ ) ଉଦଯ୍ଯାଦ୍ରି ( ଉଦୟପର୍ବତ ପରି ) ।
ମୁଖ ବାଳଭାନୁ ( ବାଳସୂର୍ଯ୍ୟପରି ) । ବିଭୂଷା ମୁକୁଟ ( ଶି- ରି ତ ମୁକୁଟ )
'ବାଳଭାନୁର' ଊର୍ଦ୍ଧ୍ୱମୁଖ କାରଣ କି ? ( ଉ-ରକୁ ଯାଉଥିବା ସୂର୍ଯ୍ୟକିରଣ
ପରି ) । ତହିଁ ( ତାଠାରେ ଥିବା ) ଲାଙ୍ଗୁଳ 'ରୂପରେ' ବାସୁକି ( ସର୍ପରାଜ )
ଆସି ବିଳସେ କି ? । ୧୨ ।

୧୩ଶ ପଦ--ସେ (ମୁଖର) ପ୍ରଭା ( ଦୀପ୍ତି କି ) ଅ ାଇଁ ତମସ ( ଅନ୍ଧ-
କାର ପରି ) ଦମ୍ଭ ( ମୋ ଧୈର୍ଯ୍ୟ ) ବିଧ୍ୱଂସ ( ଶେଷ ହେଲା ) । ବଢ଼ଧର୍ମେ
( ଧର୍ମବଳରେ ) ମୁଁ ୧ ଦର୍ଦ୍ଦୁର ( ଭେକ ) ପଥା ହୋଇ ଦୂର 'ହେଲି'
( ପଳାଇ ଅଇଲି ) । '୨ମନ୍ତ୍ର' ଶ୍ରବଣେ ( ଶ୍ରଣିଦ୍ ଠାରୁ ଶୁଣିଲେ ) ବଇଶ୍ରବଣ
( ରାବଣ ) ଅକ୍ଷୟ ( ଅକ୍ଷୟ-ନାମା ପୁତ୍ରକୁ ପେଷିଲା ( ପଠାଇଲା ) ] । ବିସ୍ମିତଲି
ବଧ ନାହିଁ ( ଏ ଅକ୍ଷୟ ଏହାର କ୍ଷୟ ନାହିଁ ) ବୋଲି ନିଃସଂଶୟ ( ସନ୍ଦେହ
ହୀନ ) 'ହେଲି' । ସେ ( ଅକ୍ଷୟ ) ବ୍ୟାଧ ଅଦ୍ରଙ୍କାରେ ( ବ୍ୟାଧପଣଗର୍ବରେ
ଯାଇ ) ଶାଖାମୃଗ ( ସାମାନ୍ୟ କପି ) ବୁଦ୍ଧି କରି ( ମନେ ଭାବି ) ସୈନ୍ୟ
୨ଜାଳ ( ଜାଲରୂପ ଜାଲରୁ ) ବେଢ଼ାଇ ( ଘେରାଇ ) ୩କଳମ୍ବ ( ଶର )
ପ୍ରହାର ( ବିନ୍ଧିଲା ) । ୧୩ ।

---

୧—ଶାଲୂର ପ୍ଲବ ଦର୍ଦ୍ଦୁରା ଇତ୍ୟମରଃ ।
୨—ଜାଳଂ ଗବାକ୍ଷ ଆନାୟେ କ୍ଷାରକେ କପଟେ ଘଣ ଇତି ।
୩—କଳମ୍ବ ମାର୍ଗଣ ଶରା ଇତ୍ୟମରଃ ।

ବଳୀମୁଖବଳୀ ଶଲ୍ୟ ଝିଳିକ ବହିଲ । ବିମାନଭଗନେ ଚକ୍ରଧର ସେ ହୋଇଲ ସେ । ବାନର ମଧ୍ୟରେ ସ୍ୱତଃ ମୁହିଁ ହନୁମାନ । ବିଜୟରେ ବିଭୂତିରେ କରିବେ କଥନ ସେ । ବହି ଖଡ଼ଗ ଫଳକ ଅସୁର ଭୈରବ । ବହୁତ ପ୍ରକାରେ ହେଲ ସଂଗ୍ରାମ ସମ୍ଭବ ସେ । ୧୪ ।

ବାଜି ବେନି ଶିରେ ବେନି ଆୟୁଧହିଁ ହତ । ବିଗ୍ରହରେ ବିଗ୍ରହକୁ ବିଗ୍ରହେ ଜଡ଼ିତ ସେ । ବନତାନନ୍ଦନଦ୍ୱନ୍ଦ୍ୱ ଦ୍ୱନ୍ଦ୍ୱ କଲା ପ୍ରାୟେ । ବେପଥୁବହ ବହନ ବିଶ୍ୱମ୍ଭର ହୋଏ ସେ । ବିଘାତେ ଖରନଖର ଖର ରକ୍ତ ସ୍ରବ । ବିକଶି ନଦରେ କୋକନଦ ଖ୍ୟାତ ଭବ ସେ । ୧୫ ।

୧୪ଶ ପଦ— ବଳୀମୁଖବଳୀ ( କପିବୀର ) 'ଶରଚାଳିବାରୁ' [୧]ଶଲ୍ୟ ଝିଳିକ ବହିଲ ( ଝିଙ୍କ ପକ୍ଷୀ ପ୍ରାୟ ଦିଶିଲ ) । ସେ ( ହନୁମାନ୍ ) ବିମାନଭଗନେ ( ବିମାନ ଭାଙ୍ଗି ଚକ ଧରିବା ଦ୍ୱାରା ) ଚକ୍ରଧର ( ବିଷ୍ଣୁ ) ହୋଇଲେ କାହିଁକି ନା ? ବିଷ୍ଣୁ ବିମାନ ( ବିଶେଷରେ ମନ ) ଭଗ୍ନ କରନ୍ତି । 'ହନୁମାନଙ୍କୁ ଚକ୍ରଧର ବୋଲିବା ଯୁକ୍ତ ନୁହେ ଏମନ୍ତ ବୋଲିବ' ବାନର ମଧ୍ୟରେ ସ୍ୱତଃ ( ନିଶ୍ଚୟ ) ମୁହିଁ ହନୁମାନ୍ ଏମନ୍ତ ଶ୍ରୀକୃଷ୍ଣ ବିଭୂତିରେ (ଗୀତାର ବିଭୂତି ଅଧ୍ୟାୟରେ ) ବିଜୟରେ ( ଅର୍ଜୁନଙ୍କୁ ) କଥନ କରିବେ (କହିବେ) । 'ଏଥିରେ ଦୋଷ ନାହିଁ' । ଭୈରବ ( ଭୟଙ୍କର ) ଅସୁର ( ଅକ୍ଷୟ ) ଖଡ଼ଗ ଫଳକ ( ଖଡ଼୍ଗ ଫଳ ) 'ଏ ଦୁହିଁଙ୍କି' ବହି ( ବହିବାରୁ ) ଭୈରବ ( ଶିବଙ୍କ ଭୈରବ ମୂର୍ତ୍ତି ପରି ) 'ଦିଶିଲା' 'ଏଣୁ' ବହୁତ ପ୍ରକାରେ ସଂଗ୍ରାମ ସମ୍ଭବ (ଜାତ) ହେଲା । ୧୪ ।

୧୫ଶ ପଦ— ବେନି ଶିରେ ( ଦୁହିଙ୍କ ମସ୍ତକରେ ) ବେନି ଆୟୁଧହିଁ (ଦୁହିଙ୍କ ଶସ୍ତ୍ରହିଁ ) ବାଜି ହତ ହେଲା । ବିଗ୍ରହରେ ( ସଂଗ୍ରାମରେ ) ବିଗ୍ରହକୁ ବିଗ୍ରହେ ( ଦେହକୁ ଦେହ ) ଜଡ଼ିତ ହେଲା । ବନତାନନ୍ଦନ ଦ୍ୱନ୍ଦ୍ୱ ( ଗରୁଡ଼ ଅରୁଣ ) [୧]ଦ୍ୱନ୍ଦ୍ୱ ( କଳି ) କଲା ପ୍ରାୟେ, ବହନ ( ଶୀଘ୍ର ) ବିଶ୍ୱମ୍ଭର ( ମହୀ ) ବେପଥୁବହ ହେଲା ( କମ୍ପ ବହିଲା ) [୨]ଖର ( ତୀକ୍ଷ୍ଣ ) ନଖର ( ନଖ )

୧—ଶ୍ୱାବିଧ୍ ଶଲ୍ୟ ଇତ୍ୟମରଃ ।

୧—ଦ୍ୱନ୍ଦ୍ୱଂ ରହସ୍ୟେ କଲହେ ଦ୍ୱନ୍ଦ୍ୱଂ ମିଥୁନ ଯୁଗ୍ମୟୋ ଶବ୍ଦମେଦିନୀ ।

୨—ଖରଃ ଖରତରେ କ୍ଲେଶୟୁଃ ଖରଃ ସ୍ୟାତ୍ ପୁର୍ ପୁଂତ୍ତୋତ୍ତମ ଇତ୍ୟନେକାର୍ଥ ଧ୍ୱନିମଞ୍ଜରୀ ।

ବରଷା ଗ୍ରୀଷମ ନଦୀ ମାରୁତି ଅକ୍ଷୟୁ । ବୃଦ୍ଧି ହେଲ ସଲିଳ
ଜୀବନ ହେଲା କ୍ଷୟ ଯେ । ବ୍ୟୂହ ବ୍ୟୂହ ସୈନ୍ୟ ମୀନ ସଙ୍ଗୀ ନାଶ
ପୂର୍ଣ । ବଚନେ ଆର୍ତ୍ତସ୍ୱର ଶୂରଗଣ ପଳାଇଣ ଯେ । ବଚନକର୍ମ ଶ୍ରବଣେ
ଇନ୍ଦ୍ରଜିତେ ପେଷି । ବିମାନ ଆରୋହି ମାନମାନସେ ସେ ଆସି ଯେ ॥
ବିପିନରେ ପାପ୍ତ ନୋହି ଛପି ଦ୍ୱିପୀ ପର । ବୁଲି ଜବ୍ୟାଦେ
ଖୋଜନ୍ତି ରାଜାଙ୍କୁ ଉଚ୍ଚେ ଯେ । ବାଜି ଚଢ଼ି ଇନ୍ଦ୍ରଜିତ ଭ୍ରମେ ଉଚ୍ଚେ

ବିଘାତରେ ଖରେ (ବେଗରେ) ରକ୍ତ ସ୍ରବ (ସ୍ରବିଲା) । ନଦରେ (ନଦୀରେ)
ବିକଶିତ (ଫୁଟିଥିବା) ରକ୍ତୋତ୍ପଳ (ରକ୍ତପଦ୍ମ ପରି) ଖ୍ୟାତ ଶ୍ରବ ଦିଶିଲା ।୧୫।

୧୬ଶ ପଦ—ମାରୁତି ଅକ୍ଷୟୁ ( ହନୁମାନ୍ ରାବଣ ପୁତ୍ର ଦୁହେଁ ) ବରଷା
(ବର୍ଷାକାଳରେ) ଗ୍ରୀଷମ ( ଗ୍ରୀଷ୍ମକାଳ ) ନଦୀ "ପ୍ରାୟ ହେଲେ" । "ବର୍ଷା
କାଳ ନଦୀ ପ୍ରାୟ ମାରୁତିର" ସଲିଳ ଜୀବନ ( ଲୀଳା ସହିତ ପ୍ରାଣ ); ସଲିଳ
( ଜଳପରି ) ବୃଦ୍ଧି ହେଲା । ଗ୍ରୀଷ୍ମକାଳ ନଦୀ ପ୍ରାୟ ଅକ୍ଷୟୁର ଜୀବନ (ପ୍ରାଣ)
[1]ଜୀବନ ( ଜଳପ୍ରାୟ ) କ୍ଷୟ ହେଲା । ସଙ୍ଗୀ ( ସଙ୍ଗରେ ଥିବା ) ବ୍ୟୂହ ବ୍ୟୂହ
( ବୃନ୍ଦ ବୃନ୍ଦ ) ସୈନ୍ୟ ମୀନ 'ସମ୍ପୂର୍ଣ୍ଣ' ପୂର୍ଣ ନାଶ ହେଲେ । 'ତା ଦେଖି'
ଶୂରଗଣ ପଳାଇଣ ( ପଳାଇ ଯାଇ ) ଆର୍ତ୍ତସ୍ୱର ( କାତର ଧ୍ୱନି ) କହେ
(କଲେ) । 'ହନୁମାନର' ବଚନ କର୍ମ ( ଅକ୍ଷୟୁ ନାଶ ରୂପ ଆଶ୍ଚର୍ଯ୍ୟ କର୍ମ )
ଶ୍ରବଣେ (ଶୁଣନ୍ତେ) ରାବଣ ଇନ୍ଦ୍ରଜିତେ ( ଇନ୍ଦ୍ରଜିତକୁ ) ପେଷି (ପେଷିଲା) ।
ଆଶ୍ଚର୍ଯ୍ୟ କର୍ମ କରିଥିବା [2]ଇନ୍ଦ୍ରଜିତକୁ ( ଅନ୍ତରୀକ୍ଷ ଜିତ ଜନକୁ ) ପଠାଇଲା
ଏହି ଭାବ । ସେ ( ରାବଣର ଜ୍ୟେଷ୍ଠ ପୁତ୍ର ଇନ୍ଦ୍ରଜିତ ) ମାନମାନସେ ( ଗର୍ବ
ମନରେ ) ବିମାନ ଆରୋହି ( ରଥ ଚଢ଼ି ) ଆସି ( ଆସିଲା ) । ୧୬ ।

୧୭ଶ ପଦ—ବିପିନରେ ( ମଧୁବନରେ ) 'ହନୂମାନ୍' ଦୀପ୍ତ ନୋହି
( ଦେଖା ନ ଦେଇ ) ଦ୍ୱୀପୀ ( ବ୍ୟାଘ୍ର ) ପରି ଛପି ରହିଲେ । "ବ୍ୟାଘ୍ର
ଛପିଲେ ମାରଇ ଏହି ଭାବ" । କବ୍ୟାଦେ ( ରାକ୍ଷସମାନେ ) ବୁଲି (ଚୋଟା-
ପାଟକରି) ରାଜାଙ୍କୁ ଉଚ୍ଚେ ଖୋଜନ୍ତି । ଇନ୍ଦ୍ରଜିତ ବାଜି ( ଅଶ୍ୱ ) ଚଢ଼ି

୧—ଜୀବନଂ ବୃତ୍ତିର୍ନେ ନୀରପ୍ରାଣଧାରଣୟୋରପୀତି ମେଦିନୀ ।

୨—ଇନ୍ଦ୍ରଃ ଶକ୍ରେ ଦୈତ୍ୟଭେଦେ ଯୋଗଭେଦାନ୍ତରାତ୍ମସୁ ଇତି ମେଦିନୀ ।

ଡାଳ । ବଢ଼ କନ୍ଧେ ବନ୍ଦୀ କପିଇନ୍ଦ୍ର ଗଲ ଶଙ୍କେ ଯେ । ବୃକ୍ଷେ ଗୁପ୍ତେ
ଥିଲ ଟେର ରେକାର କର ରଢ଼ି । ବାଜରବେ କାକ ପ୍ରାପ୍ତ ସୈନ୍ୟ
ଗର୍ବ ଗ୍ଲାଢ଼ ଯେ । ୧୭ ।

ବପି ସୁରଭିବଢ଼େ ସେ ଶିବ ଅଛୁ ହୋଇ । ବିଶାଖା ଶନ୍ଧାରି
କରୁଁ ବାଣକୁ ବଞ୍ଚାଇ ଯେ । ବଭୁଷି ସ୍ଥାଣୁ ଶିରକୁ ଇନ୍ଦ୍ରପ୍ରସ୍ଥ ଖ୍ୟାତେ ।

---

ହୃଦଛ ଡାଳ ଭୂମେ (ଖୋଳେ) । ଚନ୍ଧି (ସେ ଡାଲରେ) ବନ୍ଦୀ ( ଭଟ୍ଟ ) ବଢ଼
( ସ୍ତୁତିବଚନ ) କହେ ଇନ୍ଦ୍ର ଶଙ୍କିଗଲା 'କପି ଗ୍ଭର କେବେ ମାତ୍ର ପଳାଇ
ଗଲାଣି ଏହିଭଳି' 'ବନ୍ଦ୍ର ବଢେ ବନ୍ଧ ଦପିଇନ୍ଦ୍ର ଗଲା ଶଙ୍କେ' 'ଏମନ୍ତ କେହି
କହନ୍ତି ଏରୂପ ଅର୍ଥ କରନ୍ତି ଯଥା'—ବନ୍ଧ (ସ୍ତୁତି ପ ଠକ) ବଦେ ( କହେ )
ବନ୍ଧ 'ଏତେବେ କପିଇନ୍ଦ୍ର ( ହନୁମାନ ) ଶଙ୍କିଗଲା । 'ବନ୍ଧ ହେବା ଶଙ୍କା
କଲା ଏହିଭଳି' । 'ଏମନ୍ତ ଶୁଣି ହନୁମାନ' ବୃକ୍ଷେ ଗୁପ୍ତେ ଥିଲା ( ବୃକ୍ଷରେ
ଲୁଚିଥିଲା) ଟେର ରେକାର କଢ଼ି କଲ (କଲା)' ବାଜରବେ (ବାଜପକ୍ଷୀରବରେ)
କାକ ପ୍ରାପ୍ତ ସୈନ୍ୟ ଗର୍ବ ଛାଡ଼ିଲେ । ୧୭ ।

୧୮ଶ ପଦ—ସେ ( ହନୁମାନ ) ୧ସୁରଭିବରେ ( ଶ୍ରେଷ୍ଠ କାଇଁଫଳ
ବୃକ୍ଷରେ) ବସି ସୁରଭିବରେ (ବୃକ୍ଷ ଉପରେ ବସିଥିବା) ଶିବ ( ମହାଦେବ )
ହୋଇଅଛୁ । ଶନ୍ଧାରି (ଇନ୍ଦ୍ରଜିତ) ବିଶାଖା ଜରୁଁ ( କାଇଁଫଳ ଗଛର ଡାଳ
ଛେଦକଲେ ) ବାଣକୁ ( ଶରକୁ ) ବଞ୍ଚାଇ "ଆଉ ହୋଇ ଗିବାରୁ ଶର
ଦେହରେ ନ ବାଜିଲା ଏହିଭଳି" । ଶିବପକ୍ଷେ—୧ଶନ୍ଧ ( ବୈକୁଣ୍ଠ )
'ଲକ୍ଷିତ ଲକ୍ଷଣାରେ କୃଷ୍ଣ' 'ତାହାଙ୍କର' ଅରି ( ଚକ୍ର ) ବିଶାଖା କରୁଁ
( ବାଣାସୁରର କର ଛେଦକଲେ ) ଅଥବା ୩ଶନ୍ଧ ( ଅର୍ଜୁନ ବୃକ୍ଷ ) ତାହାର
ଅରି (ଶତ୍ରୁ ) 'ଅର୍ଜୁନ-ଭଞ୍ଜନ କୃଷ୍ଣ' ବିଶାଖାକରୁଁ ( ବାଣାସୁର କର)
ଛେଦକଲେ "ଶିବ" ବାଣକୁ (ବାଣାସୁରକୁ) ବଞ୍ଚାଇ ( ରଖିଲେ

---

୧—ସୁରଭିଃ ଶଲ୍ଲକୀ ମାତୃଭେଦସ୍ତ୍ରୀ ଗୋଷ୍ଠୁପୋଷିତି । ତ ବସନ୍ତେ ଚ
ତଥା ଜାତୀଫଳେ ପୁମାନିତି ମେଦିନୀ ।

୨—ବୈକୁଣ୍ଠଃ କୃଷ୍ଣଶନ୍ଧସ୍ତୋଗତି ମେଦିନୀ ।

୩— ଶନ୍ଧଃ ପୁମାନ୍ ଦେବରାଜେ କୁଟଜାର୍ଜୁନ ଭୂରୁହୋରିତି ମେଦିନୀ ।

ବନ୍ଧ ବୋଲେ ଗୁରୁଶିକ୍ଷା ଶର ଅଛୁ ଯେତେ ରେ । ବଢ଼ାଇ କ୍ରୂତେ ଭୁଜଙ୍ଗ ପ୍ରୟୋଗ ସେ କଲା । ବନ୍ଧ କ ସେ ଶୂରମଣି ସେ ପାଶେ ହୋଇଲା ଯେ । ୧୮ ।

ବଳୀବର୍ଦ୍ଦେ କାନ୍ଧୁ ପର ନେବା ମଲ୍ଲେ ବୋଲେ । ବାହୁ ରଜ୍ଜୁ ଲଗାଇଲେ ସ୍ୱଇଚ୍ଛାରେ ଗଲେ ଯେ । ବଷବୈଦ୍ୟ ଯଥା, ସର୍ପଭୂଷଣରେ ଆସେ । ବଳବାନ ବଡ଼ ଦେଖିଲାର ଜନ ଭାଷେ ଯେ । ବେଢ଼ିଛନ୍ତି ଯାତୁଧାନ ମଧ୍ୟେ ହନୂମାନ । ବନ୍ଧନ କରି ତସ୍କର ଆଣିଲେ ବଧାନ ଯେ ॥

ସ୍ଥାଣୁ ( ମହାଦେବ ) ଶିରଙ୍କୁ ବ ଭୂଷି ( ଅଳଂକୃତ କରିବାରୁ ) ଇନ୍ଦୁପ୍ରଭ ( ଚନ୍ଦ୍ରପ୍ରଭ )ᐟ ଖ୍ୟାତେ ( ଖ୍ୟାତ ହୋଇଅଛୁ ) 'ସେହିପରି' ⁴ସ୍ଥାଣୁ ( ଲଣ୍ଡାବୃକ୍ଷ ଉପରକୁ ) 'ହନୂମାନ୍ ଭୂଷିତ କରିବାରୁ ଚନ୍ଦ୍ରପ୍ରାୟ ହୋଇଅଛୁ ।' ବୋଲେ ( ହନୂମାନ୍ କହିଲ ) ରେ ! 'ରାକ୍ଷସ' ଗୁରୁ ଶିକ୍ଷା ( ଗୁରୁଠାରୁ ଶିଖିଥିବା ) 'ତୋର' ଶର ଯେତେ ଅଛୁ ବନ୍ଧ ଏମନ୍ତ ବଢ଼ାଇ କ୍ରୂତେ ( କହନ୍ତେ ) ସେ ( ଇନ୍ଦ୍ରଜିତ ) ⁵ଭୁଜଙ୍ଗ ( ନାଗପାଶ ସ୍ୱରୂପ ) ବାଣ ସ୍ୱରୂପକୁ ପ୍ରୟୋଗ କଲା । ସେ ଶୂରମଣି ( ବୀରଶ୍ରେଷ୍ଠ ହନୂମାନ୍ ) ସୁରମଣୀ (ଉତ୍ତମରମଣୀ) ହେଲା ସେ ପାଶେ 'ରମଣୀ ଧାଶରୂପ' (ସେହି ନାଗପାଶରେ) ବନ୍ଧ ( ବନ୍ଧନ ) ହୋଇଲା କ ? । 'ଉତ୍ତମରମଣୀ ବାଣ ପାଶରେ ⁶ବନ୍ଧକୀ ( ବାଟପୀ ) ହୁଅଇ । ୧୮ ।

୧୯ଶ ପଦ—ବଳୀବର୍ଦ୍ଦେ (ବଳଦମାନେ) କାନ୍ଧୁ 'ନେଲା' ପରି ନେବା 'ଏମନ୍ତ' ମଲ୍ଲେ ( ମଲ୍ଲଙ୍କୁ ) 'ଇନ୍ଦ୍ରଜିତ' ବୋଲନ୍ତେ ( ବୋଲନ୍ତେ ) ମଲ୍ଲମାନେ ହନୂମାନ୍‌ର ବାହୁ (ଭୁଜରେ) ରଜ୍ଜୁ (ଦଉଡ଼ି) ଲଗାଇଲେ (ଲଗାଇବାମାତ୍ରେ) ସ୍ୱଇଚ୍ଛାରେ 'ହନୂମାନ୍' ଗଲେ (ଗଲାଏ) । ବଷବୈଦ୍ୟ (ସାପୁଆକେଳା) ସର୍ପ ଭୂଷଣରେ ଯଥା ( ଯେରୂପେ ) ଆସେ 'ସେରୂପେ ଗଲେ' । ଦେଖିଲା ର ଜନ ( ବାଟରେ ଦେଖିବାଲୋକେ ) ବଡ଼ ବଳବାନ୍ 'ଏମନ୍ତ' ଭାଷେ ( କହିଲେ ) । ଯାତୁଧାନ ( ରାକ୍ଷସମାନେ ) ବେଢ଼ିଛନ୍ତି; ମଧ୍ୟେ (ମଧ୍ୟରେ)

---

୪—ସ୍ଥାଣୁର୍ବା ନା ଧ୍ରୁବଃ ଶଙ୍କୁ ରିତ୍ୟମରଃ ।

୫—ଭୁଜଙ୍ଗଃ ସର୍ପ ବିଟୟୋରିତ୍ୟଜୟଃ ।

୬—ପୁଂଶ୍ଚଲୀ ଧର୍ଷିଣୀ ବନ୍ଧକ୍ୟସତୀ କୁଳ ଟେଟ୍ୱରୀତ୍ୟମରଃ ।

ବିଚିତ୍ର କପିଂ ଦେଖିବା ବୋଲି ଲଙ୍କବାସୀ ବାଳ ବୃଦ୍ଧ ଯୁବା ସ୍ତ୍ରୀ ପୁଂସ ମିଶାମିଶି ଯେ । ବୋଲଇ କେ ବନାଶିଲ୍ଲ ମୋ ଭ୍ରାତ ଜନକ । ବଧ କଲ୍ ମୋ ଧବ ବୋଲି କେ କରେ ଶୋକ ଯେ । ବୋଟଲ୍ କେ ରଖିଛ ଜମ୍ପା ସଜାଡେ ନଗରେ । ବେଗରେ ଗର୍ତ୍ତେ ପକାଇ ପୋତିବା ନଗରେ ଯେ । ୨୦ ।

ବିକେ ଯେ ସଭ୍ୟରେ ରାକ୍ଷସେନ୍ଦ୍ର ସେ ଚତ୍ବରେ । ବନ୍ଦୀ ପର-ବେଶ କରନ୍ତେ ଅନାଇ ସତ୍ବରେ ଯେ । ବୋଟଲେ ରେ କପି ! ଆସିଲୁ ଏଥେଁ ମରିବାକୁ । ବୋଲିବା ଆଦ୍ୟରେ ବଧ ବୋଲେ ଆକାରକୁ ଯେ । ବଦନ ହଲାଇ କହେ କି ବଳିଷ୍ଟ ତୁମ୍ଭ ? ବାଳୁତ୍ତଂବାନ୍ଧି ଆଣିଲା କହୁଛ୍ରୁ ବଢ଼ାଇ ରେ । ୨୧ ।

---

ହନୂମାନ୍ 'ଅଛୁ' । ତସ୍କର ( ଚୋରକୁ ) ବନ୍ଧନ କରି ଆଣିଲା ବିଧାନ ( ବିଧିରେ ) ନେଲେ । ୧୯ ।

୨୦ଶ ପଦ—୧ବିଚିତ୍ରକପି ଦେଖିବା ବୋଲି ଲଙ୍କବାସୀ (ଲଙ୍କାପୁରଜନେ) ବାଳ ବୃଦ୍ଧ ଯୁବାସ୍ତ୍ରୀ ( ସ୍ତ୍ରୀ ) ପୁରୁଷ ମିଶାମିଶି 'ହେଲେ' । କେ ( କେହି ) ବୋଲଇ ମୋ ଭ୍ରାତ ( ମୋ ଭାଇକୁ ) ଆଉ ମୋ ଜନକ ( ପିତାକୁ ) ବିନାଶିଲା । କେ ( କେହିସ୍ତ୍ରୀ ) ମୋ ଧବ ( ମୋ ପତିକୁ ) ବଧ କଲା ବୋଲି ଶୋକ କରେ । କେ ( କେହି ) କ୍ହବାଲେ ନଗରେ ( ପୁରମଧ୍ୟେ ) ଏ ( କପିକୁ ) ସଜାଡେ ( ନ ମାରୁ ) କପାଁ ରଖିଛ । ବେଗରେ ଗର୍ତ୍ତେ ପକାଇ ନଗରେ ( ପଙ୍କତ ) ପକାଇ ପୋତିବା । ୨୦ ।

୨୧ଶ ପଦ—ରାକ୍ଷସେନ୍ଦ୍ର ( ରାବଣ ) ଯେ ( ଯେଉଁ ) ସଭ୍ୟରେ ବିକେ 'କରିଥିଲେ' 'ସେହିଗୃହର' ଚତ୍ବରେ ( ଅଗଣାରେ ) ବନ୍ଦୀ (ବନ୍ଧା ହୋଇଥିବା ହନୂମାନ୍‌କୁ ) ପରବେଶ କରନ୍ତେ ( ପ୍ରବେଶ କରନ୍ତେ ) ସତ୍ବରେ ( ଶୀଘ୍ର ) ଅନାଇଁ 'ରାବଣ' ବୋଲେ ରେ କପି ! ଏଥେଁ ( ଏଠାକୁ ମରିବାକୁ ) ( ମରିବାପାଇଁ ) ଆସିଲୁ । 'ଏମନ୍ତ ଶୁଣି ହନୂମାନ୍' ବୋଲେ 'ତୋ' ବୋଲିବା ପଦ ଆଦ୍ୟରେ ଆକାରକୁ ବଧ ( ମାରିବାକୁ ) 'ଏମନ୍ତ ଶୁଣି

---

୧ – ବିଚିତ୍ର କର୍ମକୃତବାନ୍ କପିଃ ବିଚିତ୍ରକପିଃ ।

ବାଣୀ ନ୍ୟାସ କରେ ଜନ୍ତୁ କ୍ଷୁଧାତୁର ହୋଇ । ବିମ୍ବ ବୋଲି
ବାଳାର୍କକୁ ଜନନୀ ଦେଖାଇ ଦେ । ବାନ୍ଧିଲି ଲାଙ୍ଗୁଳେ ଭାନୁ ସେ ଦୋଷରୁ
ବନ୍ଧା । ବିଧ୍ୱଂସିବି ଲଙ୍କା ଏହିକ୍ଷଣି ଦଶମୂର୍ଦ୍ଧା ରେ ! ବିଶ୍ରବାନନ୍ଦନ ବୋଲେ
ଅମର କିନ୍ନର । ବିନୟ ସେ ହାରି କିସ କରିବୁ ବାନର ରେ । ୨୨।

ବାନର ପ୍ରାଭବ ମନ୍ଦୁ ଗଲୁ କି ପାସୋରି । ବାଳିଶ ରେ ବାଳି
ଯାହା କରିଛି ବିଚାରରେ ଏ ବାଣେକେ ସେ ବାଳିକି ନାଶିଲେ ରଘୁବୀର ।
ବଳକ୍ଷି ଆଣିଛୁ ତାଙ୍କ କାହିଁ ରକ୍ଷା ତୋରରେ । ବନ୍ଧାଇ ହୋଇ ସୁଗ୍ରୀବେ
ମିତ୍ରବଳ ସାଜି ବାରିଧି ପଲ୍ୱଳ ଡେଇଁ ଆସିଛି ମୁଁ ଖୋଜି ଏ ।୨୩।

---

ରାବଣ' ବଦନ ହସାଇ କହେ; ତୁନ୍ଦ୍ର କି ବଳିଷ୍ଠ ? ବାଳୁତ (ମୋର ବାଳକ ପୁତ୍ର) 'ତୋତେ' ବାନ୍ଧି ଆଣିଲା ରେ ! ତୁ ପୁଣି ବଡ଼ାଇ କହୁଛୁ ।୨୧।

୨୨ଶ ପଦ—'ଏମନ୍ତ ଶୁଣି ମାରୁତି' ବାଣୀ ନ୍ୟାସ କରେ (କହିଲେ) ଜନ୍ତୁ (ମୁଁ ଜନ୍ମମାତ୍ରେ) କ୍ଷୁଧାତୁର ହୋଇ (ହୋଇଲି) । 'ମୋର' ଜନନୀ ବିମ୍ବ (ବିମ୍ବଫଳ ଏ) ଏମନ୍ତ ବୋଲି ବାଳାର୍କକୁ (ବାଳସୂର୍ଯ୍ୟଙ୍କୁ) ଦେଖାଇ 'ଦେଲେ' । 'ମୁଁ ବଢ଼ିଯାଇ' ଭାନୁ (ସୂର୍ଯ୍ୟଙ୍କୁ) ଲାଙ୍ଗୁଳେ ବାନ୍ଧିଲି ସେ ଦୋଷରୁ 'ଆଜି' ବନ୍ଧା 'ହେଲି' । ରେ ଦଶମୂର୍ଦ୍ଧା (ରାବଣ) ଏହିକ୍ଷଣି ଲଙ୍କା ବିଧ୍ୱଂସିବି । 'ତହିଁକି ବିଶ୍ରବାନନ୍ଦନ (ରାବଣ) ବୋଲେ ଅମର (ଦେବତା) କିନ୍ନର (ଯକ୍ଷ) 'ସେମାନେ' ହାରି ବିନୟ (ମୋତେ ବିନତି) କରନ୍ତି ରେ ବାନର ! 'ତୁ ମୋହର' କିସ କରିବୁ ? (କିଛି କରି ପାରିବୁ ନାହିଁ) ।୨୨।

୨୩ଶ ପଦ—'ଏମନ୍ତ ଶୁଣି ହନୁମାନ୍ ବୋଇଲେ' ବାନରପ୍ରାଭବ (ବାନରଠାରୁ ପରାଭବ ପାଇଥିବା କଥା) ମନ୍ଦୁ (ମନରୁ) ପାସୋରି ଗଲୁ କି ? ରେ ବାଳିଶ ! (ମୂର୍ଖ) ବାଳି (ବାନରରାଜା) ଯାହା କରିଛି ବିଚାର (ମନରେ ବିଚାର କର) । ରଘୁବୀର (ରାମ) ସେ ବାଳିକି ବାଣେକେ (ଏକ ନାରାଚରେ) ନାଶିଲେ । ତାଙ୍କ ବଳକ୍ଷି ଆଣିଛୁ ରେ ! ତୋର ରକ୍ଷା କାହିଁ ? (ନାହିଁ) । ସୁଗ୍ରୀବେ (ସୁଗ୍ରୀବ ସଙ୍ଗରେ) ମିତ୍ର ବନ୍ଧାଇ (ହୋଇଲେ) 'ତେଣୁ ସେ ସୁଗ୍ରୀବ' ବଳ (ସୈନ୍ୟ) ସାଜି [ସାଜିଲେ) । ବାରିଧି

ବୋଲନ୍ତେଁ ମାରୁତ ବୋଇଲା ଦଶଗ୍ରୀବ ହସି । ବ୍ୟାଧ ଜଳଘାଟ ଜଗି
ଶାର୍ଦ୍ଦୂଳ ବନାଶି ଯେ । ବନୌକା ସଙ୍ଗେ ବନୌକା ନୁହନ୍ତି କି ମିତ ।
ବୁଡ଼ିଥିଲା ପଙ୍କେ ମୁଁ ମାଣିକ୍ୟ ଉଦ୍ଧରିତ ଯେ । ବରହି ମୃଗ ପଛରେ
ପୁଚ୍ଛକୁ ଲୁଚ୍ଛଇ । ବସୁଧାପତି ନେଇ ତା ମସ୍ତକେ ଚଳାଇ ଯେ ।୨୪।
ବାରିଧି ଡେଇଁ ଆସିବା ବଢ଼ାଇ କି ଭାବୁ । ବତାସଯୋଗରେ।
ଯୋଗେ ଉଡ଼ି ପଡ଼ିଥିବୁରେ । ବଇଶ୍ରବଣବଚନେ ବୋଇଲା ସେ ପୁଣ

---

(ସମୁଦ୍ରକୁ) ୧ ପଲ୍ୱଳ ( କ୍ଷୁଦ୍ର ଜଳାଶୟ ତୁଲ୍ୟ ) ଡେଇଁ ମୁଁ 'ସୀତାଙ୍କୁ'
ଖୋଜି ଆସିଛୁ । ୨୩ ।

୨୪ଶ ପଦ—ମାରୁତି ବୋଲନ୍ତେଁ (ଏମନ୍ତ ବୋଲନ୍ତେ) ଦଶଗ୍ରୀବ (ରାବଣ) ହସି
ବୋଇଲା ବ୍ୟାଧ ଜଳଘାଟ ଜଗି ଶାର୍ଦ୍ଦୂଳ ବନାଶି (ମାଇଲାପରି) 'ବାଳିକି ଲୁଚି
ମାଇଲା ଏଥିରେ ତାହାର କି ବୀରପଣ ଦିଶିଲା' ? ବନୌକା (ମର୍କଟଙ୍କ)
ସଙ୍ଗେ ବନୌକା (ବନବାସୀ ଜନେ) ମିତ ନୁହନ୍ତି କି ? 'ସୁଗ୍ରୀବ ସଙ୍ଗେ
ରାମର-ମିତ ହେବା କି ବଡ଼ କଥା' । ପଙ୍କରେ ମାଣିକ୍ୟ ବୁଡ଼ିଥିଲା 'ତାହାକୁ'
ମୁଁ ଉଦ୍ଧରି (ଉଦ୍ଧାର ଆଣିଲି) 'ମାଣିକ୍ୟ ତୁଲ୍ୟ ସୀତାଙ୍କୁ ବନରୁ ଆଣିବା କଥା
କି ମୋହର ନିନ୍ଦା ହେଲା' । ବରହି ( ମୟୂର ) ମୃଗ 'ଏ ଦୁହେଁ' ପଛରେ
(ପଛଆଡ଼େ) ପୁଚ୍ଛକୁ (ଲାଙ୍ଗୁଡ଼କୁ) ଲୁଚ୍ଛଇ 'ଥାନ୍ତି' 'ଗୁଟେଚନ୍ତି'' ବସୁଧାପତି
(ରାଜା) ତାହା (ସେ ପୁଚ୍ଛକୁ) ନେଇ ମସ୍ତକେ ଚଳାଇ ( ଶିର ଉପରେ ଚାଳନ
କରେ) । 'ସେହିପରି' ବନେ ଲୁଚ୍ଛଇ ଥିବା ସୀତାଙ୍କୁ ଆଣି ମୁଁ ଘରେ ରଖିଛୁ
'ଏହିଭାବ' । ୨୪ ।

୨୫ଶ ପଦ—ବାରିଧି ( ସମୁଦ୍ର ) ଡେଇଁ ଆସିବା 'କଥାକୁ' ବଢ଼ାଇ
ଭାବୁ କି ? (ବଡ଼କଥା ମନେ କରୁଛ କି ? ) ଯୋଗେ (କାଳେ ଅବା)
ବତାସ ଯୋଗରେ ( ପ୍ରଚଣ୍ଡ ପବନ ବଳରେ )ରେ 'କପି ତୁ' ଉଡ଼ି 'ଆସି'
'ଏଠାରେ' ପଡ଼ିଥିବୁ । ବଇଶ୍ରବଣ ( ରାବଣର ) ବଚନେ ସେ
(ମାରୁତି ) ପୁଣ ( ପୁନରପି ) ବୋଇଲା ରେ ଏହିକ୍ଷଣ ମୋହର୍ଦ୍ଦ କାର-

---

୧—ପଲ୍ୱଳଂ ସ୍ୱଲ୍ପ ସର୍ବୈବାପୀ ତୁ ଦୀର୍ଘିକା ଇତ୍ୟମରଃ ।

ବାରପଣ ମୋହର ଜାଣନ୍ତୁ ଏହି କ୍ଷଣରେ । ବାହୁଯାକ ଉପାଡ଼ି ମୋଡ଼ନ୍ତୁ
ଶିର ଦଶ ॥ ବୃଜମା ଭୂ ପତିତପାବନ ତୋରେ ବଶ ଯେ । ୧୫ ।

ବୋଲୁଛନ୍ତି ମୁଁ ମାରିବି ଧନୁଶର ଛୁଇଁ । ବିଭୁ ଆଜ୍ଞା ଭଙ୍ଗି କିକା
କରି ଭୃତ୍ୟ ହୋଇ ଯେ । ବଂଶଲୋଚନ ଏ ବଚନରେ କୋପୀ ଜବ ।
ବଡ଼ାଇ ନ ଗ୍ରୁଟେ କପି ବଧି କେ ରଖିବ ଯେ । ବୋଲେ ଖଡ଼ଗ ପ୍ରହାରୁ
ଖଡ଼ଗ ପରାଯ୍ୟେ । ବିଶ୍ୱାଏଁ ନ ଭେଦି ଦେହେ ବିକମ୍ପିତ ହୋଏ ଯେ ॥

ବିଘାତ ମୁଦ୍‌ଗର ଅନ୍ୟ ଶସ୍ତ୍ରମାନଙ୍କର । ବର୍ଷୋପଳ ବୃଷ୍ଟି ପରି
ମହୀଧର ଶିର ଯେ । ବିକୋଷକ ଛୁରିକ ଭଲ୍ଲିକ ଯେବେ ମାରି । ବିକା-

---

ପଣ ଜାଣନ୍ତୁ । 'ତୋହର' ବାହୁଯାକ ( ଜୋଡ଼ିହାତ ) ଉପାଡ଼ି ·ଦଶଶିର
ମୋଡ଼ନ୍ତୁ । ଭୂ ବୃଜମା (ପାତକୀ) ପତିତପାବନ (ରାମ) ତୋରେ (ତୋଠାରେ)
ବଶ 'ହୋଇଛନ୍ତି' 'ତୋତେ' ସ୍ୱହସ୍ତରେ ମାରି ଉଦ୍ଧାରିବେ ଏହିଭାବ । ୧୫ ।

୧୬ଶ ପଦ—ସେ ଧନୁଶର ଛୁଇଁ 'ନମସ୍କରି' ବୋଲୁଛନ୍ତି ମୁଁ
'ସ୍ୱହସ୍ତେ ରାବଣଙ୍କୁ' ମାରିବି, ଭୃତ୍ୟ ହୋଇ ବିଭୁ ( ପ୍ରଭୁ ) ଆଜ୍ଞା କି କରି
( କେମନ୍ତେ ) ଭଙ୍ଗିବି । ଏ ବଚନରେ ( ଏକଥା ଶୁଣି ) ବଂଶଲୋଚନ
( ରାବଣ ) ଜବ ( ଶୀଘ୍ର ) କୋପୀ (କୋପହୋଇ) 'ବୋଲେ' କପି ବଡ଼ାଇ
( ବଡ଼ପଣ ) ନ ଗ୍ରୁଟେ ବଧ ( ବଧିକରି ) 'ଏହାଙ୍କୁ' କେ (କେଉଁଲୋକ)
ରଖିବ ? ବୋଲେ ( ଏମନ୍ତ ବୋଲନ୍ତେ ) ·ଖଡ଼ଗ ( ଖଡ୍‌ଗ ) ପ୍ରହାରୁଁ
( ପ୍ରହାର କରନ୍ତେ ) ଖଡ଼ଗ ( ଗଣ୍ଡାପଶୁ ) ଦେହେ ବିଶ୍ୱାଏ ନ ଭେଦିଲା
ପରାଯ୍ୟେ 'ହନୁମାନର' ଦେହେ ବିଶ୍ୱାଏ ନ ଭେଦ୍ରୁ ବିକମ୍ପିତ ହୋଏ
'କୋପରେ କମ୍ପିଲା ଏହିଭାବ' । ୧୬ ।

୧୭ଶ ପଦ—ମୁଦ୍‌ଗର ଓ ଅନ୍ୟ ଶସ୍ତ୍ରମାନଙ୍କର ବିଘାତ ( ଆଘାତ )
ମହୀଧର ଶିର ( ପର୍ବତ ଉପରେ ) ବର୍ଷୋପଳ (କରକା-କୁଆପଥର) ବୃଷ୍ଟି
'ହେଲା' ପରି 'ମାରୁତିର' ଶିର ( ଶିରରେ ) ହେଲା । ବିକୋଷକ ( ଖୋପ ନ
ଥିବା ) ଛୁରିକ ( ଛୁରୀ ) ଭଲ୍ଲିକ ( ଭଲ ) ଯେବେ ମାରି (ମାରନ୍ତି) 'ତେତେ-

---

୧—ଖଡ୍‌ଗୋ ଗଣ୍ଡକ ଶୃଙ୍ଗାସୀଡ଼ ମେଦନୀ ।

ଶଇ ଆତ୍ମଶତକଙ୍କୁ ଭଲ କରି ଯେ ୀ ବିଗୃଣିଲା ଠାଣି କରୁଥିଲେ ନାଗ ପାଶ । ବିବନ୍ଧ୍ ମୁକ୍ତ ନୋହିବ ପୂର୍ବକର୍ମ ଦୋଷ ଯେ । ୨୭ ।

ବୋଇଲା ବଧରେ ମୋର ଇଚ୍ଛା କଲ୍ ଯେବେ । ବଚନକୁ ମୋର ସତ୍ୟ କର ପାଳ ତେବେ ରେ । ବସ୍ତ୍ର ବେଢ଼ାଇ ଲାଙ୍ଗୁଳେ ଜଡ଼ାଇ ତଇଲେ । ବହ୍ନି ଜାଳ ଦେଲେ ନାଶ ଅଛି ଶାପବଳେ ଯେ । ବୋଲୁଁ ବୋଲେ ଗ୍ରମଦୂତ ସତ୍ୟ ଏ କହିଲା । ବାପ୍ତାବୋଲେ ଇନ୍ଦ୍ରଜିତ ଶସ୍ତ୍ର ସଂହରିଲା ଯେ । ୨୮ ।

ବାନ୍ଧି ପାଇ ଅଶୋକକଳିକା ସୀତା ଗ୍ରାହି । ବନ୍ଧା ଫିଟି ହନୁମାନ ମାନସେ ମନାସି ଯେ । ବଞ୍ଚୁଳେ ଅଶୋକ ନାମ ପ୍ରସିଦ୍ଧେ ରହିଲା । ବାଖି-

ବେଳେ ତୁସେ ମାରୁତି ଭଲ କର ୧ଆତ୍ମଶତକଙ୍କୁ (ହାସକୁ) ବଢାଇ । 'ଏପରି ନାନାଦଣ୍ଡ ପାଇବାରୁ ହନୁମାନ୍' ବିସ୍ମରିଲ ଠାଣ 'କଥା' କହୁଥିଲେ ନାଗପାଶ ବିବନ୍ଧ (ବନ୍ଧନରୁ) ମୁକ୍ତ ନୋହିବ ଏ ମୋର ପୂର୍ବ କର୍ମ ଦୋଷ । ୨୭ ।

୨୮ଶ ପଦ--'ଶକସ୍ୱରେ' ବୋଇଲା ମୋର ବଧରେ ଯେବେ ତୁ ଇଚ୍ଛା କଲୁ ତେବେ ମୋର ବଚନକୁ ସତ୍ୟକରି ପାଳ । ଲାଙ୍ଗୁଳେ ବସ୍ତ୍ର ବେଢ଼ାଇ ତଇଲେ ଜଡ଼ାଇ ବହ୍ନି (ଅଗ୍ନି) ଜାଳି ଦେଲେ ଶାପବଳେ (ଶାପଯୋଗୁଁ) ମୋର ନାଶ ଅଛି । 'ଅନ୍ୟପ୍ରକାର ମୁଁ ନ ମରିବି ଏହିକ୍ଷଣ' ବୋଲୁଁ (ହନୁମାନ୍ ଏମନ୍ତ ବୋଲନ୍ତେ) ରାବଣ କହିଲା ଏ ଗ୍ରମଦୂତ ସତ୍ୟ କହିଲା । 'ମିଥ୍ୟାନୁହେଁ' । ୧ତପ୍ତାବୋଲେ (ପିତାର ବୋଲରେ) ଇନ୍ଦ୍ରଜିତ ଶସ୍ତ୍ର ସଂହରିଲା । ୨୮ ।

୨୯ଶ ପଦ—'ହନୁମାନ୍ ବନ୍ଧସଙ୍କଟା' ବାନ୍ଧି ପାଇ ସୀତା ଅଶୋକ କଳିକା ଗ୍ରାହି ମାନସେ (ମନରେ) ହନୁମାନ୍ ବନ୍ଧା ଫିଟୁ 'ଏମନ୍ତ' ମନାସି (ମନାସିଲେ) । 'ସେହିବନରୁ' ବଞ୍ଚୁଳେ (ବଞ୍ଚୁଳବୃକ୍ଷରେ) ଅଶୋକ ନାମ ପ୍ରସିଦ୍ଧେ (ପ୍ରସିଦ୍ଧ ହୋଇ) ରହିଲା । ସେହିଦିନ ଅଶୋକ କଳିକା

୧—ସ୍ୟାତାତ୍ମଶତକଂ ହାସ ଇତ୍ୟମରଃ ।
୧—ତପ୍ତା ପିତରି ବାପକେ ଇତ୍ୟମରଃ ।

ଷଣ ଏହିକାଳେ ଲଙ୍କେଶେ କହିଲେ ଯେ । ବଧ ନୁହଇଟି ଦୂତ କରିବା
ବିବେକ ହି ବିଂଶବାହୁ ଭାଷେ ଦୂତର ଦୂରେ କି ପାତକ ଯେ । ୨୯।

ବଧି ଧନଦ ଦୂରକୁ ପୁଷ୍ପକେ ବଳସି । ବୈଦେହୀ ଭୋଗ କରିବ
ଏହାକୁ ବିନାଶି ଯେ । ବାରିଧି କି ସରିତ ପରି ଲଙ୍ଘନ ହୋଇ
ବିଭୀଷଣ ମଉନ ହୋଇଲେ ଏତେ କହି ଯେ । ବିତର୍କି ଶୁକ ବୋଇଲେ
ଶଙ୍କା ଏଥେ ଅଛି । ବିନାଶ ହେତୁ କେ କାହାକୁ ନ କହିଛି ଯେ ।୩୦

---

ଜଳସହିତ କଣ୍ଟ ପିଇଲେ ଶୋକନାଶ ହୁଏ* । ବିଭୀଷଣ (ରାବଣର ସାନଭାଇ)
ଏହିକାଳେ ଲଙ୍କେଶେ (ରାବଣଙ୍କୁ) କହିଲେ । ଦୂତ ବଧ ନୁହଇଣ† (ଦୂତଅବଧ୍ୟ)
'ଏକଥା' ବିବେକ (ବିଚାର) କରିବା । ବିଂଶବାହୁ (ରାବଣ) ଭାଷେ (କହେ) ।
ଦୂତ ଦୂରେ (ଦୂତଙ୍କୁ) 'ମାଇଲେ' କି ପାତକ ? (କିଛି ପାପନାହିଁ) ।୨୯।

୩୦ଶ ପଦ—'ପୁଣି ଏମନ୍ତ କହିଲେ' ଧନଦ (କୁବେରର) ଦୂତକୁ ବଧି
ପୁଷ୍ପକେ (ବିମାନରେ) ବଳସି (ବସିଲ) । ଏହାକୁ ବିନାଶି ବୈଦେହୀ (ସୀତାଙ୍କୁ)
ଭୋଗ କରିବ । ସରିତ ପରି (ନଦୀସମାନରେ) ବାରିଧି (ସମୁଦ୍ର) ଲଙ୍ଘନ ହୋଇ
କି ? (ହୁଏଇ ନାହିଁ) । କୁବେର ନଦୀପରି । ରାମ ସମୁଦ୍ରପରି । ଏତେକ କହି
ବିଭୀଷଣ ମଉନ (ତୁନି) ହୋଇଲେ । 'ଏ ସମୟେ' ଶୁକ (ଶୁକନାମା ମନ୍ତ୍ରୀ)
ବିତର୍କି (ତର୍କକରି) ବୋଇଲେ ଏଥେ (ଏଥିରେ) ଶଙ୍କା (ଆଶଙ୍କା) ଅଛି । ବିନାଶ
ହେତୁ (ନାଶକାରଣରୁ) କେ (କେହି) କାହାକୁହିଁ ନ କହିଛି (କହିନାହିଁ) ।
ଏହାଦ୍ୱାରା ମନ୍ତ୍ରିର ପରମ ଗୁଣ୍ଡ 'ସୂଚିତ ହେଲା' * ୩୦ ।

---

*—ଅଶୋକକଳିକା ଗୃଷ୍ଟ୍ୱୋ ଯେ ପିବନ୍ତି ପୁନର୍ବସୌ ।
ଚୈତ୍ରେମାସେ ସୀତାଷ୍ଟମ୍ୟାଂ ନ ତେ ଶୋକମବାପ୍ନୁୟୁରିତି ।

†—ଯଦୁକ୍ତଂ ଧର୍ମଶାସ୍ତ୍ରେ—
ଦୂତୋ ମ୍ଲେଚ୍ଛୋଽପ୍ୟବଧ୍ୟଃ ସ୍ୟାଦ୍ରାଜା ଦୂତମୁଖୋ ଯତଃ
ସର୍ବାଃ ବଧଭବେନ୍ ଦୂତଃ ସର୍ବଂ ହି ଜଳ୍ପତୀତି ।

*—ତଦୁକ୍ତଂ ନୀତିଶାସ୍ତ୍ରେ—
ସ୍ୱଧୀସ୍ତୁପୂରିତାର୍ଥେଷୁ ବିତର୍କୋ ଜ୍ଞାନନିଷ୍ଠୟୁଃ ।
ଦୃଢ଼ତା ମନ୍ତ୍ରିଗୁପ୍ତିଶ୍ଚ ମନ୍ତ୍ରିଣଃ ପରମୋଗୁଣ ଇତି ।

ବଳମ୍ବ ନ କର ଉଚେ ହନୁମାନ ଭାଷେ । ବ୍ୟାଧିରୂପେ ସଲଙ୍ଗୂଳା ପରକଟ ଆସେ ଯେ । ବାସ ପଧାନରେ ପୁଚ୍ଛ ଦ୍ରବ୍ୟ କନ୍ୟା ପରି । ବଶେଷତ ଦସ୍ପୃତ ତହିଁରେ ସ୍ନେହ ଭର ଯେ । ବଭାବସୁ ଯୋଗକୁତେ ପାଦକୁ ବଢ଼ାଇ । ବସଲ ମଣ୍ଡପପରେ ଜ୍ୟୋତର୍ମନ୍ତ ହୋଇ ଯେ ।୩୧।

ବୋଇଲ ସେ ଘର୍ଘ କର ଆରେ ଦଶଗ୍ରୀବ । ବୁଦ୍ଧି ବଳ ତୋହର କଳନା କଲି ସବ ଯେ । ବଡ଼ କରି ଲଙ୍କେଶ୍ୱର କଲି ପ୍ରତ୍ୟୁତ୍ତର । ବୈଶ୍ୱାନର ଦେଖି ନ ଉଡ଼ନ୍ତ କି ଚକୋର ଯେ । ବରହବାନପଦବୀ ତର୍ଜନରେ ଲବ । ବ୍ରହ୍ମାଗ୍ନି କପାଳୁଁ ଜାତକଲି ବର ଭାବ ଯେ । ୩୨ ।

୩୧ଶ ପଦ—ହନୁମନ୍ତ (ମାରୁତ) ବଳମ୍ବ ନ କର 'ଏହା' ଉଚେ ଭାଷି (ଉଚ୍ଚରେ କହିଲେ) ବ୍ୟାଧିରୂପେ ସଲଙ୍ଗୂଳା ଆସି ପରକଟ (ମୋର ସଲାଙ୍ଗୂଳା ବ୍ୟାଧି ପ୍ରବେଶିଲ) । ବାସ ପିଧାନରେ (ବସ୍ତ୍ର ଗୁଡ଼ାଇବାରେ) ପୁଚ୍ଛ (ଲାଙ୍ଗୂଳ) ଦ୍ରବ୍ୟ କନ୍ୟାପରି 'ହେଲା' । ଦସ୍ପୃତ (ନାସ୍ତିକ) 'କନ୍ୟାଠାରେ' ସ୍ନେହ (ଅନୁରାଗ) ବଶେଷତ (ବଶେଷରୂପରେ) ଭର 'ଥାଏ' 'ତଦ୍ରୂପ ପୁଚ୍ଛ' ଦଇତ (ରାବଣ) ସ୍ନେହ (ତେଲ) ବଶେଷତ (ବଶେଷ ରୂପରେ) 'ପୁଚ୍ଛରେ' ଭର (ଭରିଲା) । 'କନ୍ୟା' ବଭାବଶୁଁ (ବିଭା ହେବା ବଶରୁ) ଯୋଗକୁତେ (ଯୋଗକରନ୍ତେ) ପାଦକୁ ବଢ଼ାଇ ମଣ୍ଡପରେ ଜ୍ୟୋତର୍ମନ୍ତ ହୋଇ ବସେ । 'ପୁଚ୍ଛରେ' ବଭାବସୁ (ଅଗ୍ନିକୁ) ଯୋଗକୁତେ (ଯୋଗ କରନ୍ତେ) ପାଦକୁ ବଢ଼ାଇ ମଣ୍ଡପରେ ଜ୍ୟୋତର୍ମନ୍ତ ହୋଇ 'ମାରୁତ' ବସିଲା ।୩୧।

୩୨ଶ ପଦ—ସେ (ହନୁମାନ) ଘର୍ଘକର (ଉଚ୍ଚରେ) ବୋଇଲା ଆରେ ଦଶଗ୍ରୀବ ! ତୋହର ବୁଦ୍ଧି ବଳ ସବ (ସବୁ) ମୁଁ କଳନା କଲି ତହିଁ କି ଲଙ୍କେଶ୍ୱର (ରାବଣ) ବଡ଼ କର ପ୍ରତ୍ୟୁତ୍ତର କଲା ବୈଶ୍ୱାନର (ଅଗ୍ନିକି) ଦେଖି ଚକୋର (ପକ୍ଷୀ) ନ ଉଡ଼ନ୍ତ କି ? ୧ ବରହବାନପଦବୀ (ଅଗ୍ନିର ଦାହିକାଶକ୍ତି) 'ରାବଣରେ' ତର୍ଜନରେ ଲବ ଗଲା; ତା 'ଦେଖି' (ହନୁମାନ) ବର (ପୂର୍ବରେ ପାଇଥିବା ବରକୁ) ଭାବ ଭାଲୁଁ (କପାଳରୁ) ବ୍ରହ୍ମାଗ୍ନି ବାହାର କଲା ।୩୨।

୧—ବର୍ହି-ବାନ୍-ଶିଖାବାନ୍-ଅଗ୍ନି ।

ବଚନ୍ଦ୍ରକର୍ମା ତ କପି ବୋଇଲ୍ ପ୍ରଶସ୍ତ । ବଞ୍ଚକ ଅଗ୍ନି ଦେଖାଇ
ମୁଖେକବଚନ ଯେ । ବୋଲୁଁ ରାବଣ ଜ୍ୱଳିତ ହୋଇଲା ନଗର । ବାହା-
ରିଲେ ଶୂକର କର୍ଣ୍ଣାଇ ପଇକାର ଯେ । ବନ୍ଧ କକ୍ଷେ କରେ ଧରି ଶିଶୁ
ବାମାବାର । ବୋଲନ୍ତି ଅଘର ବଶୁଁ ହୋଇଲୁ ଅଘର ଯେ । ୩୩ ।
ବଳିଗଲା ଶିଖିଶିଖା ଧ୍ରୁବମଣ୍ଡଳକୁ । ବଳେ ପଶି ଧୂମ ପୂର୍ଣ୍ଣ କଲା
ପାତାଳକୁ ଯେ । ବାସୁକୀ ନୟନ ସେହିକାଳେ ଜଳସ୍ଥାନ । ବୈନତେୟ
ଘଲେ ଭଲା ସ୍ଫୁଟ ଜବା ମନଯେ । ବହିଲା ଉତ୍ତରେ ରଥ ଘାସ୍କର
ଉତ୍ତରେ । ବାଡ଼ବାନଳ ନାଭିନ ଭଜେ ପାଦ୍ୱାରେ ଯେ ।୩୪।

---

୩୩ଣ ପଦ—'ହନୁମାନ୍ ଆଲ ଦେଶରୁ କୃଷ୍ଣାଗ୍ନି ବାହାରି କରିବା
ଦେଖି' ପ୍ରଶସ୍ତ 'ସେନାପତି' ବୋଇଲ ଏ କପିତ ବଚନକର୍ମୀ, 'ରାବଣ
ବୋଇଲ' ବଞ୍ଚକ ( ବଲୁଆ ) ମୁଖେ ( ମୁଖରେ ) ଅଗ୍ନି ଦେଖାଇ ସେହି-
ପରି ଏ ଦେଖାଇବ' କ ବଚନ ( ଆଶ୍ଚର୍ଯ୍ୟ ) ହେଲା । ବୋଲୁଁ ( ଏମନ୍ତ
ବୋଲନ୍ତେ ) ନଗର ଜ୍ୱଳିତ ହୋଇଲା ( ଜଳିଲା ) । ତେଣୁ ବାମାବର
( ରମଣୀ ସମୂହ ) ଶିଶୁ ( ବାଳକଙ୍କୁ ) କକ୍ଷେ ( କାଖରେ ) ବନ୍ଧ କରେ
( ହସ୍ତରେ ) ଧରି ସୂକର କର୍ଣ୍ଣାଇ ପରକାର ( ହାତରେ କର୍ଣ୍ଣାଇ ଧରିଥିଲା
ପରି ) ବାହାରିଲେ । ବୋଲନ୍ତି ( ସେ ବାମାଏ ଏହା କହନ୍ତି ) ଅଘର
ବଶୁଁ ( ପାପୀ ରାବଣରେ ପରସ୍ତ୍ରୀହରଣ ପାପ ବଶରୁ ) ଆମ୍ଭେ ଅଘର
( ଗୃହଶୂନ୍ୟ ) ହୋଇଲୁଁ । ୩୩ ।

୩୪ଣ ପଦ—ଶିଖିଶିଖା ( ଅଗ୍ନି ଶିଖା ) ଧ୍ରୁବମଣ୍ଡଳକୁ ବଳି କରି
ଗଲା । ବଳେ ( ଶକ୍ତିରେ ) ପଶି ଧୂମ ( ଧୂଆଁ ), ପାତାଳକୁ ପୂର୍ଣ୍ଣ
କଲା । ସେହିକାଳେ ବାସୁକିନୟନ ଜଳସ୍ଥାନ ହେଲା ( ବାସୁକି ନୟନରୁ
ପାଣି ବହିଲା ) । ଅଗ୍ନିକି ଦେଖି ବୈନତେୟ ( ଅରୁଣ ) ଘଲେ
( ସ୍ତବଲା ) ୧ଜବାବନ ( ମନ୍ଦାର ଫୁଲ ବନ ) ଭଲା ସ୍ଫୁଟ ( ଫୁଟିଥିବା )
ଘାସ୍କର ( ସୂର୍ଯ୍ୟଙ୍କ ) ଉତ୍ତରେ ( କଥାରେ ) ଉତ୍ତରେ ( ଉତ୍ତରଦିଗକୁ )

---

୧—ଓଡ଼ ପୁଷ୍ପଂ ଜବା ଚୈତ୍ୟମଦ୍ରୁଃ ।

ବଞ୍ଚିବା ଭରସା ଅପସରସାଏ ତେଜ । ବେଦବଣେ ଯେଣୁ ତା ନୃତ୍ୟରେ ଥିଲେ ମଗ୍ନ ଯେ । ବିଷମୃତ୍ୟୁବଂଶ ସଖି ଯିବା ପ୍ରାୟେ ବୁଲି । ବିଚଳିତ ଅର୍ଚ୍ଚିରୁଚ ଖେଳେ କ ବିଜୁଳୀ ଯେ । ବାହୁଡ଼ନ୍ତ ଅଳୀ ପ୍ରାୟେ ମିଳଣ ସାରଙ୍ଗେ । ବିଦଗ୍ଧ କାଳବଶରେ ପୁରବର ରଙ୍ଗେଯେ ।୩୫। ବିଧିବାକ୍ୟେ ପୁଷ୍କରେ ସକୁଣ୍ଠମ୍ନେ ବସି । ବୋଧମାରୁତ ବୋଲି ରାବଣଧାତା ପେଷିଯେ । ବିବୁଧାଳୟେ ଚଳନ୍ତେ ଯଥା ପାବନରେ ।

---

ଇଥ ବାହୁଲ । ପାଣିବାରେ ( ସମୁଦ୍ରରେ ) ୨ବାଡ଼ବାନଳ ( ବାଡ଼ବାଗ୍ନି ) ନନ୍ଦନ ( ନନ୍ଦନଙ୍କୁ ) ଭଜେ । ୩୪ ।

୩୫ଶ ପଦ—ଅପସରସା ( ସ୍ୱର୍ବେଶ୍ୟାମାନେ ) 'ଅଗ୍ନି ଭୟରୁ' ବଞ୍ଚିବା ଭରସା ତେଜ ( ଛାଡ଼ିଲେ ) ଯେଣୁ 'ରାବଣରେ' ବେଦବଣେ ( ସତ୍ତ୍ୱରେ ) ନୃତ୍ୟରେ ମଗ୍ନ ଥିଲେ 'ତେଣୁ ଯାଇ ନ ପାରିବାବୋଲି ଭରସା ତେଜିଲେ । ୧ବିଷ ମୃତ୍ୟୁବଂଶ ( ଚକୋର ସମୂହ ) ସଖି ଯିବା ପ୍ରାୟ ବୁଲି ( ସଖି ନାଶ ଅଗ୍ନିର ଗ୍ରାସଆଡ଼େ ଯେପରି ବୁଲଇ ) 'ସେହିପରି ଅଗ୍ନିକଣ ଭକ୍ଷଣ ଲୋଭରେ' ବୁଲିଲେ ; ବିଚଳିତ ଅର୍ଚ୍ଚିରୁଚ ( ଜ୍ୱଳନପ୍ରଭା ) ବିଜୁଳୀ ପ୍ରାୟ ଖେଳେ କ ( ଖେଳୁଅଛି କ ? ) 'ଏମନ୍ତ ଭାଳି ଚକୋରବଂଶ ପଶି ନ ପାରିଲେ' । 'ସତୀ ନାଶ' କାଳବଶରେ ( ମୃତ୍ୟୁ ବଶରେ ) ୨ପୁରବର ୩ରଙ୍ଗେ ( କାନ୍ତର ପୂର୍ବ ଅନୁରାଗରେ ) ବିଦଗ୍ଧ 'ହେବାରୁ' 'ସଙ୍ଗେ ଯାଇଥିବା' ୪ଆଳି (ସଖୀ) ବାହୁଡ଼ିବା ପ୍ରାୟେ 'ବିଜୁଳୀ ତୁଲ୍ୟ ଜ୍ୱାଳା ଦେଖି' ରଙ୍ଗେ ( ରଙ୍ଗରେ ) ମିଳି ( ପ୍ରବେଶ ହୋଇ ) ୫ ସାରଙ୍ଗେ (ଗୃହକମାନେ) ପୁରବର ( ଲଙ୍କା ) ବିଦଗ୍ଧ 'ହେବାରୁ' ବାହୁଡ଼ନ୍ତ । ୩୫ ।

୩୬ଶ ପଦ—ବିଧିବାକ୍ୟେ ( ବ୍ରହ୍ମାଙ୍କ କଥାରେ ) ପୁଷ୍କରେ ( ପୁଷ୍କର-ବିମାନରେ ) ସକୁଣ୍ଠମ୍ନେ (କୁଣ୍ଠମ୍ନ ଯେନ) ବସି ରାବଣ ମାରୁତ (ହନୂମାନ୍‌ଙ୍କୁ

---

୨—ବାଡ଼ବୋ ବଡ଼ବାନଳ ଇତ୍ୟମରଃ ।

୧—ଜୀବଂଜୀବୋ ବିଷମୃତ୍ୟୁର୍ଜୀବର୍ଜୀବ ଇତି ଅମରକୋଷେ ।

୨—ପୁରୋଽବ୍ୟସ୍ତଂ ପୂର୍ବକ ଲେ ଇତିବିଶ୍ୱଃ ।

୩—ରଙ୍ଗୋ ନା ରାଗେ ନୃତ୍ୟେ ରଣକ୍ଷିତୀଇତି ମେଦିନୀ ।

୪—ଆଳୀ ସଖୀ ବୟସ୍ୟା ଚ ଇତ୍ୟମରଃ ।

୫—ସାରଙ୍ଗଶ୍ଚାତକେ ଭୃଙ୍ଗେ କୁରଙ୍ଗେ ଚ ମତଙ୍ଗଜେ ଇତି ଶବ୍ଦାର୍ଣ୍ଣବେ ।

ବୋଲେ ସେ ସୂଦୟା କର ରାମଭାବନାରେ ଯେ । ବାଧା ନ କରୁ
ଭୀଷଣ ପ୍ରଚଣ୍ଡ ତପନ । ବଇଦେହୀ ନାମ ରମ୍ୟସରରୁ ଜୀବନ ଯେ ॥
ବିଧାତା କଥିତ ଚନ୍ଦ୍ରସ୍ୱରୂପା ରମ୍ଭୋରୁ । ବେଳେ ଅସୁର ଗ୍ରହର
ଗ୍ରାସଣ ପୂର୍ବରୁ ଯେ । ବର୍ତ୍ତମାନ ସେ ଯୋଗ ଏ ସମ୍ଭବରେ ନାହିଁ ।
ଚିହ୍ନନ ତୁ ରାମ ଆଣ ସନ୍ଦେଶକୁ କହି ଯେ । ବିଭୀଷଣ କୁମ୍ଭକର୍ଣ୍ଣ ମଉର
ନ ଜାଣି । ବଟମାର୍କଣ୍ଡେୟ କର ପ୍ରଳୟ ସଦୃଶୀ ଯେ ।୩୭।

---

ବୋଧ (ବୋଧକର) ବୋଲି (କହି) ଧାତା (ବ୍ରହ୍ମାଙ୍କ) ସେଣି (ପଠାଇଲ) ।
'ବ୍ରହ୍ମା' ବର୍ତ୍ତିଧାଲୟେ (ସ୍ୱର୍ଗକୁ) ଚଳନ୍ତେ ପାବନରେ (ତାହରେ ହନୁମାନ
ସଙ୍ଗେ) କଥା ହେଲେ (ପ୍ରବୋଧ କଣ କହିଲେ) । ସେ (ହନୁମାନ) ବୋଲେ
(ବ୍ରହ୍ମାଙ୍କ କହେ) ରାମ ଭାବନାରେ (ସୀତାଠାରେ) ସୁଦୟା କର । ଭୀଷଣ
(ରାବଣ) ପ୍ରଚଣ୍ଡ ତପନ (ଗ୍ରୀଷ୍ମକାଳ ସୂର୍ଯ୍ୟରୂପ) ବୈଦେହୀ ନାମ (ନାମକ)
ରମ୍ୟସରରୁ (ସୁନ୍ଦର ପୁଷ୍କରଣୀରୁ) ଜୀବନ (ଜଳର-ପ୍ରାଣର) ବାଧା ନ କରୁ ।
'ପ୍ରଚଣ୍ଡ କିରଣ ବୈଦେହୀ ନ ମନ ସରୋବରରୁ ଜଳ ଶୋଷିଲାପରି ରାବଣ
ବୈଦେହୀର ପ୍ରାଣ ନ ଶୋଷୁ ଏହିକି ଦୟା କର' । ଏହି ଭାବ ।୩୭।

୩୭ଶ ପଦ- ବିଧାତା କଥିତ (ବ୍ରହ୍ମା କହିଲେ) ରମ୍ଭୋରୁ (ହେ ସୀତା)
ଚନ୍ଦ୍ର ସ୍ୱରୂପା (ସୁବର୍ଣ୍ଣକାନ୍ତି ଯୋଗୁଁ ଚନ୍ଦ୍ରସ୍ୱରୂପାହେଲେ) [1]ପର୍ବରୁ (ପ୍ରତିପଦା
ପୂର୍ଣ୍ଣିମା ସନ୍ଧିରୁ) ଅଥବା [2]ପର୍ବରୁ (ଗ୍ରହଣରୁ) ବେଳେ (ଅରେ) ଅସୁର
(ରାବଣରୂପ) ଗ୍ରହର ଗ୍ରାସ ହେଲା । ବର୍ତ୍ତମାନ ଏ ସମ୍ଭବରେ ସେ ଯୋଗ
ନାହିଁ । ଚିହ୍ନନ (ଶିଘ୍ର) ତୁ ସନ୍ଦେଶକୁ (ସୀତାଙ୍କ ବାର୍ତ୍ତା) କହି ରାମ ଆଣ ।
'ତାହା ଶୁଣି ହନୁମାନ' ପ୍ରଳୟକାଳ ସଦୃଶୀ (ସମାନ ହୋଇ) ବିଭୀଷଣ
କୁମ୍ଭକର୍ଣ୍ଣ ମଉର ବଟ ମାର୍କଣ୍ଡେୟ ଚିହ୍ନି ନ ଜାଣି (ନ ପାରିଲେ) । 'ପ୍ରଳୟରେ
କଳ୍ପବଟ ମାର୍କଣ୍ଡେୟ ଋଷି ରହିଥିଲେ' ଲଙ୍କାଦାହରେ 'ବିଭୀଷଣ କୁମ୍ଭକର୍ଣ୍ଣ
ଘର ରହିଲା ଏହି ଭାବ' ।୩୭ ।

---

[1]—ସପର୍ବ ସନ୍ଧି ପ୍ରତିପତ୍ତି ।
[2]—ପର୍ବଂ ଗ୍ଲର୍ବଂ ଚ ପ୍ରସ୍ତାବେ । ଇତି ।

ବାୟୁଜ ଶାନ୍ତକ ଭଜ ଅଗ୍ନିକ ସଂହର । କଦେହଭୂପଜା ଦେଖି ନିଜନ୍ଥା ତଆର ଯେ । ବସୁମଣ୍ଡଦୁହିତା ହିତରେ ଥିବୁ ଭୂହି । ବୀରେନ୍ଦ୍ର ଶ୍ରୀରାମଚନ୍ଦ୍ର ଶ୍ରୁମୁଁରେ ଜଣାଇ ଯେ । ବିଭୀଷଣେ କରାଇବ ଲଙ୍କାରେ ଅଧିପ । ବୈବସ୍ୱତପୁରେ ଯିବେ ଦୁଷ୍ଟ କର୍ବୁରପ ଯୋଦ୍ଧା ।

ବଙ୍କୃତବକ୍ତ୍ରରେ ପୁଣ ରାକ୍ଷସୀଙ୍କି ବଦେ । ବନ୍ଧ ଥିବ ଭଲଯୋଗ ଥିଲେ ସୀତାପାଦେ ଯେ । ବଦନ୍ତେ ମଣିବକ୍ଷସ୍ୱ ଫେଡ଼ି ଦେଖାଇଲ । ବସନାଞ୍ଚଳରେ ପୁଣି ଗଣ୍ଠିରେ ରଖିଲ ଯେ । ବାହୁ ବସ୍ତ୍ରାଣ ଗଗନେ ଗଲ ସେ ସୁବେଳେ । ବଂଶପାଣି ଦଗ୍ଧଶେଷ ଦ୍ରବ୍ୟ ଆଯୁ କଲେ ଯେ ॥

ବୀର ହର ଲଙ୍କା ପୋଡ଼ି ଧୂମସ୍ତୋମ କ ନସ । ବହର ସେ ହର ସନ୍ଧ୍ୟା ଦୋଳ କ ଆକାଶେ ଯେ । ବହ୍ନି ରକ୍ତବର୍ଣ୍ଣ ବହ୍ନି ଜେ୍ୟାତ୍ସ୍ନା

---

୩୮ ଶ ପଦ—'ବନ୍ଧାବାଦ୍ୟରେ' ବାୟୁଜ (ହନୁମାନ) ଶାନ୍ତ କ ଭଜ ଅଗ୍ନିକ ସଂହର ବଦେହଭୂପଜା (ସୀତାଙ୍କୁ) ଦେଖି ନିଜନ୍ଥା 'ରାକ୍ଷସୀରୁ' ତଆର 'ରହିଲ'ଉଦ୍ଧ ବସୁମଣ୍ଡ ଦୁହିତା (ସୀତା) ହିତରେ ଥିବୁ । ବୀରେନ୍ଦ୍ର (ବୀରଶ୍ରେଷ୍ଠ) ଶ୍ରୀରାମଚନ୍ଦ୍ର ଶ୍ରୁମୁଁରେ ଜଣାଇ ବିଭୀଷଣେ (ବିଭୀଷଣେ) ଲଙ୍କାରେ ଅଧିପ (ରାଜା) କରାଇବ । ଦୁଷ୍ଟ କର୍ବୁରପ (ଦୁଷ୍ଟ ଅସୁରେ) ବୈବସ୍ୱତପୁରେ (ଯମପୁରେ) ଯିବେ । ୩୮ ।

୩୯ ଶ ପଦ—ପୁଣ ବଙ୍କୃତବକ୍ତ୍ରରେ (ବଙ୍କୃତ ମୁଖରେ) ରାକ୍ଷସୀଙ୍କି (ରାକ୍ଷସୀଙ୍କି) ବଦେ (କହେ) 'ତୁମ୍ଭମାନଙ୍କ' ଭଲଯୋଗ ଥିଲେ ସୀତା ପାଦେ (ସୀତାଙ୍କ ପାଦରେ) ବନ୍ଧ ଥିବ (ସ୍ତୁତି କରୁଥିବ) । 'ସୀତା' ମଣି ବକ୍ଷସ୍ୱ ବଦନ୍ତେ (ମଣି ରଖିବା କଥା ପଚାରନ୍ତେ) ଫେଡ଼ି (ଫିଟାଇ) ଦେଖାଇଲ ପୁଣି ବସନାଞ୍ଚଳରେ (ପିନ୍ଧା କାନିରେ) ଗଣ୍ଠିରେ (ଗଣ୍ଠି ପକାଇ) ରଖିଲ । 'ତହୁଁ' ସେ (ହନୁମାନ) 'ଆପଣାର' ବାହୁ ବସ୍ତ୍ରାଣ ଗଗନେ (ଗଗନମାର୍ଗରେ) ସୁବେଳେ (ସୁବେଳ ପର୍ବତକୁ) ଗଲ । ବଂଶପାଣି (ଗୃହିଣୀ) ଦଗ୍ଧଶେଷ (ଅବଶିଷ୍ଟ ପୋଡ଼ା) ଦ୍ରବ୍ୟ ଆଯୁ କଲେ । ୩୯ ।

୪୦ ଶ ପଦ—ବୀର ହର (ବୀର ହନୁମାନ) ଲଙ୍କା ପୋଡ଼ି 'ଦେବାରୁ ଜାତ ହୋଇଥିବା' ଧୂମସ୍ତୋମ (ଧୂମସମୂହ) ବି-(ଆକାଶରେ) ହର

ଘେନି ଅଛି । ବଧ୍ୱରବା ନିଶାଚରଙ୍କର ପ୍ରବୃତ୍ତୁଛି ଯେ । ବିଦିତ ହୋଇବେ ରାମ ଲକ୍ଷ୍ମଣ ସେ ଅନ୍ତେ । ବିଶ୍ୱକର୍ମା ପେଷେ ଧାତା ଲଙ୍କାକୁ ତ୍ୱରିତେ ଯେ । ୪୦ ।

ବିଶ୍ରବାନନ୍ଦନ ପାଶେ ହୋଇଲା ପ୍ରବେଶ । ବିସ୍ତାରି ଅମୋଘ-ମଣିରେ କରି ତୋଷ ଯେ । ବିଜନରେ ପୁର ସର୍ଜନରେ ହେଲା କ୍ଷମ । ବିଚମ୍ମାୟୁ ନୋହିଲା ତହିଁର ମନୋରମ ଯେ । ବଣା ହେଲେ ସତ କି ସ୍ୱପନ ବୋଲି ଜନେ । ବୋଲେ କେ କ୍ଷମ ହୋଇବ ଏ ପୁର ଦହନେ ଯେ । ୪୧ ।

---

(ସୂର୍ଯ୍ୟଙ୍କ) ଶ୍ରୀ (ଶୋଭାକୁ) ହରି (ହରଣକରି) ସନ୍ଧ୍ୟା ହୋଇ ହୋଇଲାଣି ? ‘କିବା ଏମନ୍ତ ହୃଦ୍‌ପ୍ରେକ୍ଷା କଲା’ । ‘ହେ ସାଧୁଜନେ’ ! ବୃଦ୍ଧ (ବନ୍ଧୁରଙ୍କର) ବହ୍ନି ଜ୍ୟୋସ୍ନା (ଅଗ୍ନି ର ଜ୍ୟୋତ୍ସ୍ନାକୁ) ଘେନି (ଘେନିବାରୁ) ଆକାଶେ (ଆକାଶରେ) ରକ୍ତବର୍ଣ୍ଣ ଅଛି । ‘ସନ୍ଧ୍ୟାକାଳରେ ଆକାଶ ରକ୍ତବର୍ଣ୍ଣ ଦିଶେ ଏହି ଭାବ *। ନିଶାଚରଙ୍କର (ରାକ୍ଷସମାନଙ୍କର) ବଧ୍ୱରବା ପ୍ରବୃତ୍ତୁଛି ‘ସନ୍ଧ୍ୟା ରାକ୍ଷସଙ୍କ ବଧ୍ୱାରକୁ ପ୍ରବୃତ୍ତ କରୁଥାଏ ଏହି ଭାବ । ସେ ଅନ୍ତେ (ତଦନ୍ତେ) ରାମ ଲକ୍ଷ୍ମଣ, (ଶଶାଙ୍କ-ଚନ୍ଦ୍ର) ‘ପର’ ବିଦିତ ହୋଇବେ (ପ୍ରକାଶ ପାଇବେ) ଏକାଳେ ଧାତା (ବ୍ରହ୍ମା) ବିଶ୍ୱକର୍ମା (ବିଶ୍ୱକର୍ମାଙ୍କୁ) ‘ଲଙ୍କା ନିର୍ମାଣ କରିବ’ ତ୍ୱରିତେ (ଶୀଘ୍ର) ଲଙ୍କାକୁ ପେଷେ (ପଠାଇଲେ) ।୪୦।

୪୧ଶ ପଦ—‘ବିଶ୍ୱକର୍ମା’ ବିଶ୍ରବାନନ୍ଦନ (ରାବଣ) ପାଶେ (ପାଖରେ) ପ୍ରବେଶ ହୋଇଲା । ଅମୋଘମଣିରେ (ଅମୋଘ ନାମକ ମଣି ଦେଇ) ‘ତାଙ୍କୁ’ ବିସ୍ତାରି (ତରଳାଇ ଦେଇ) ତୋଷିକରି ବିଜନରେ (ଜନରବ ନଥିବା ସମୟରେ) ପୁର ସର୍ଜନେ (ନିର୍ମାଣରେ) କ୍ଷମ (ସମର୍ଥ) ହେଲା । ତହିଁର (ସେ ନବନିର୍ମିତ ପୁରର) ମନୋରମ (ସୌନ୍ଦର୍ଯ୍ୟ) ବିଚମ୍ମାୟୁ ନୋହିଲା (ଅକଥନୀୟ ହେଲା) । ଜନେ (ଲୋକମାନେ) ସତ କି ସ୍ୱପନ (ଦେଖି ଏ କଥା ସତ୍ୟ କିବା ସ୍ୱପ୍ନ) ବୋଲି ବଣା ହେଲେ । କେ (କେହୁ) ବୋଲେ

---

*—ଅକାଳସନ୍ଧ୍ୟା ମିବଧାକୁ ନକ୍ଷତ୍ରମିତ କୁମାରସମ୍ଭବେ ।

ବୋଲେ କେ ପୋଡ଼ିଛୁ ଧନ୍ୟ ରାବଣ ବଡ଼ାଇ । ବିଶ୍ୱକର୍ମାକରେ ଦେଲେ ବିବୁଧେ ଗଢ଼ାଇ ଯେ । ବୋଲେ କେ ଯାହା ଶ୍ୱଶୁର ମୟ ମହାସୁର । ଭଳନ ନୁହଇ ଏମାନଙ୍କ ହୋଇବାର ଯେ । ବିପ୍ଳାଳଶପଦ ଗ୍ଭଦ ନମାନ୍ତ ସାଧୁମନ୍ତ । ବିକାରେ ବିଧାନ ଉପଇନ୍ଦ୍ରଭଞ୍ଜ କୃତ ଯେ ।୪୨

— —

## ସପ୍ତତ୍ରିଂଶ ଛାନ୍ଦ ।

ରାଗ ନଳିନୀଗୌଡ଼ା ।

ବୁଧେ ଶୁଣ ଏକଲୟେ । ବାତସୂତ ସୁବଳୟେ ।
ବଞ୍ଚିଲା ସୁଖେ ଡାମଣୀ । ବାସର ପ୍ରବେଶ ଆସି ।୧।

---

(କହେ) ଏ ପୁର ଦହନରେ (ଏ ପୁର ପୋଡ଼ିବାକୁ) କେ (କେଉଁଲୋକ) କ୍ଷମ (ସମର୍ଥ) ହୋଇବ ? (ହୋଇ ପାରିବ ନାହିଁ) । ୪୧ ।

**୪୨ ଶ ପଦ—'ପୁରକୁ ଦେଖି' କେ (କେହି) ବୋଲେ (କହେ) କେ (କେଉଁ ଲୋକ ଏହାକୁ ପୋଡ଼ି ଅଛୁ) ? ରାବଣ ବଡ଼ାଇ (ରାବଣର ବଡ଼ପଣ) ଧନ୍ୟ ! ବିବୁଧେ-(ଦେବତାମାନେ) ବିଶ୍ୱକର୍ମା କରେ (ହସ୍ତରେ) ଗଢ଼ାଇଦେଲେ । କେ ବୋଲେ (କେହି କହେ) ଯାହା ଶ୍ୱଶୁର ମହାସୁରମୟ ଅଟଇ । 'ଡାକୁପ୍ରତି' ଏମାନଙ୍କ (ଏକଥାମାନ) ହୋଇବାର (ହେବା) ବିଚନ (ଆଶ୍ଚର୍ଯ୍ୟ) ନୁହଇ । ବିପ୍ଲାଳଶ ପଦ 'ଏହି' ଗ୍ଭଦ ସାଧୁମନ୍ତ (ସାଧୁମାନଙ୍କ ମନ)-ମୋହନ୍ତି । ବିକାରେ (ବି ଅର୍ଥରେ) ବିଧାନ 'ହୋଇଅଛି' । ଉପଇନ୍ଦ୍ର ଭଞ୍ଜ କୃତ (ଉପଇନ୍ଦ୍ର ଭଞ୍ଜ କବି କରିଅଛନ୍ତି) । ୪୨ ।**



ସପ୍ତତ୍ରିଂଶ ଛାନ୍ଦ

**୧ମ ପଦ—ବୁଧ ! (ହେ ପଣ୍ଡିତମାନେ) ଏକଲୟେ ଏକଚିତ୍ତରେ ଶୁଣ ବାତସୁତ (ହନୁମାନ) ସୁବଳୟେ (ସୁବେଳ ପର୍ବତରେ) ୧ଡାମସୀ (ରାତ୍ରି) ସୁଖେ (ସୁଖରେ) ବଞ୍ଚିଲା (କଟାଇଲା); ବାସର (ଦିବସ) ଆସି ପ୍ରବେଶ 'ହେଲା' । ୧ ।**

---

**୧—ତମିସ୍ରା ତାମସୀ ରାତ୍ରି ରିତ୍ୟମରଃ ।**

ବିବସ୍ୱାନ ଉଦେ ଗୃହିଁ । ବାହାର ଓଳଗ ବହି ।
ବିଯୁଦ୍ଗତ ହନୁମାନ । ବୋଲ୍ଲବୋଲ ଦେଖି ଜନ । ୨ ।
ବଜଦ୍ରୁ ହେଉଁ ଧୂର୍ଜଟୀ । ନେତ୍ରନେତ୍ର ଅଛି ଫିଟି ।
ବୁଜନ୍ତି ନୟନ ସତ । ବିଶେଷିତ ଅଳସିତ । ୩ ।
ବିଚନ୍ଦ୍ର ପ୍ରଭାତ ଆଜ । ବିଦିତ ତ ନେତ୍ର ସୂର୍ଯ୍ୟ ।
ବିମାନୁ ଧନୁର ଚେଉଁ । ବିନତାସୁତ କି ଯାଇ । ୪ ।

---

୨ୟ ପଦ—ବିବସ୍ୱାନ ( ସୂର୍ଯ୍ୟ ) ଉଦେ ( ଉଦୟ ହେବାର ) ଗୃହିଁ (ଦେଖି) * ଓଳଗ ( ପ୍ରଣାମ ) ବହି ( କରି ) ହନୁମାନ ବାହାର 'ହେଲେ' । ବିଯୁଦ୍ଗତ ( ଆକାଶରେ ଗମନ କରୁଥିବେ ) ଜନ ( ଲୋକମାନେ ) ଦେଖି ବୋଲ୍ଲବୋଲ ( ଭୁହାଭୁହ ) ହେଲେ । ୨ ।

୩ୟ ପଦ—ଧୂର୍ଜଟୀ ( ମହାଦେବ ) ବଜଦ୍ରୁ ହୋଇ ( ନିଦ୍ରାଭଙ୍ଗ ହେବାରୁ ) ନେତ୍ର ନେତ୍ର ଫିଟିଅଛି ( ଚନ୍ଦ୍ର ସୂର୍ଯ୍ୟାତ୍ମକ ଚକ୍ଷୁ ଦୁଇ ଫିଟିଅଛି ) ନୟନ ( ଅଗ୍ନି ଏକ ଭାଲ ନେତ୍ର ) ବୁଜନ୍ତି ( ବୁଜି ଅଛନ୍ତି ) ସତ ( ଏହା ମିଥ୍ୟା ନୁହେ ) 'ବଜଦ୍ରୁହେବା ଲୋକ ଚକ୍ଷୁ ବୁଜିଆସେ' ବିଶେଷିତ ( ବିଶେଷରେ ) ଅଳସିତ ( ଆଳସ୍ୟ ) ହୋଇଆସେ ( ଜନ୍ମିଆସେ ) । 'ମହାଦେବ ଶିତିକଣ୍ଠ ଅଟନ୍ତି' ବିଷେ ( ଗରଳରେ ) ଅସିତ ( କୃଷ୍ଣବର୍ଣ୍ଣ ) ଅଟନ୍ତି † । 'ହନୁମାନଙ୍କୁ ଲୋକେ କଳାଧଳା ରଙ୍ଗବର୍ଣ୍ଣ ଦେଖି ଶିବନେତ୍ର ମନେ କଲେ ଏହିଭାବ' । ୩ ।

୪ର୍ଥ ପଦ—ଆଜ ବିଚନ୍ଦ୍ର ପ୍ରଭାତ ( ଆଶ୍ଚର୍ଯ୍ୟ ପ୍ରାତଃକାଳ ) ହେଲା । କାହିଁକି ? ନେତ୍ର ( ଦୁଇ ) ସୂର୍ଯ୍ୟ ତ ବିଦିତ ( ଉଦୟ ହୋଇଛନ୍ତି । ) 'ହନୁମାନଙ୍କୁ ଆଉ ଏକସୂର୍ଯ୍ୟ ମନେକରି ନେତ୍ର ସୂର୍ଯ୍ୟ କହିଲେ । ହନୁମାନର ଦେହ ସୁବର୍ଣ୍ଣ ବର୍ଣ୍ଣ ମୁଖ ପାଟଳ, ସୁବର୍ଣ୍ଣକୁ ଲୋହିତ ବର୍ଣ୍ଣନା

---

*—ଗୁରୁମଗ୍ନିଂ ତଥା ସୂର୍ଯ୍ୟଂ ପ୍ରାତଃ ପଶ୍ୟେତ୍ତୁ ସଦା ନରଃ ।
†—ଯସ୍ୟ ବର୍ଣ୍ଣିତମୀଦନାଧିପପସ୍ୟଃ ପିବେଦ୍ଭିଃ ଦ୍ରୁମୁସ୍ତା ।
ଯତ୍ସାନ୍ତେ ଢୁଣ୍ଢିଶାନ୍ୟ ଗର୍ଭବିଭବେ ଗାଙ୍ଗେୟ ମାହାତ୍ମ୍ୟଂ ।

ବୋଧ କେ ତହିଁରେ ସ୍ଥାପି । ବିଧ୍ୱଂସିଲା ଲଙ୍କା କପି ।
ବ୍ୟୋମମାର୍ଗେ ଯିବା ଗୃହିଁ । ବ୍ୟୋମ-ଭଗ୍ନୀପତି କହି । ୫ ।
ବାହିନୀ କେହି ପ୍ଲବଗ । ବଧି ଦିଅନ୍ତା ମୋ ଆଗ ।
ବଳସନ୍ତା ସେହି ଯୋଧା । ବଧାଇ ପାଇଁ ଅଯୋଧ୍ୟା । ୬ ।
ବିଭୀଷଣ ଭଷେ ଗିର । ବାମନ ବଢ଼ାଇ କର ।
ବିଧୁ ଧରିବାକୁ ମନ । ବିନ୍ୟାସ କରେ ଯେସନ । ୭ ।

---

କର୍ଣ୍ଣପାଏ' * । 'ପୁଣି ମନେ କଲେ' ଭାନୁଂ ବିମାନୁ (ସୂର୍ଯ୍ୟଠାରୁ) ଜେଠି ବିନତା ସୁତ (ଅରୁଣ) ଯାଇକ ? ( ଯାଉଅଛୁ କ ) । ୪ ।

୫ମ ପଦ— ତହିଁରେ ( ସେହି ଦେଖିବା ଲୋକଙ୍କ ମଧ୍ୟରେ ) କେ ( କେହି ) ବୋଧ ସ୍ଥାପି ( ବୋଧ ହେଲା ) 'ଯାହା ହେଲା ଏ କଛୁ ନୁହେଁ' । ଏ ଲଙ୍କା ବିଧ୍ୱଂସିଲା କପି । 'ଏ ସନ୍ଦେହାଲଂକାର ଓ କଷ୍ଟସ୍ଥଳଙ୍କାର ହେଲା '†। 'ହନୂମାନର' ବ୍ୟୋମମାର୍ଗେ ( ଆକାଶ ପଥରେ ) ଯିବା ଗୃହିଁ ବ୍ୟୋମ (ବ୍ୟୋମାସୁରର) ଭଗ୍ନୀପତି ( ଭଉଣୀର ସ୍ୱାମୀ ) କହିଲା । ୫ ।

୬ଷ୍ଠ ପଦ—କେହି ¹ବାହିନୀ ( ସେନା ) ପ୍ଲବଗ ( ଏହି ବାନରକୁ ) ବଧି (ମାରି) ମୋ ଆଗ ( ମୋ ଆଗରେ ) ଆଣନ୍ତା ( ଆଣି ଦିଅନ୍ତା ) ସେହି ²ଯୋଧା ଅଯୋଧ୍ୟା 'ପୁର' ବଧାଇ ( ପୁରସ୍କାର ) ପାଇ ବିଳସନ୍ତା ( ତହିଁରେ ବିହାର କରନ୍ତା ) । ୬ ।

୭ମ ପଦ—'ଏମନ୍ତ ଶୁଣି' ବିଭୀଷଣ ଗିର ଭଷେ ( କହିଲେ ) ବାମନ ( ଖର୍ବ, ବାଙ୍ଗର ମନୁଷ୍ୟ) କର (ହସ୍ତ) ବଢ଼ାଇ ବିଧୁ ( ଚନ୍ଦ୍ର ) ଧରିବାକୁ ମନ ବିନ୍ୟାସ କରେ ଯଥା ( ଗଛ୍ଛା କଲା ପରି ) 'ତୁମ୍ଭ କଥା ଉପହାସମାତ୍ର' । ୭ ।

---

*—ତଦୁକ୍ତଂ ଦବକଳ୍ପଲତାୟାଂ—
ପୀତ ଲୋହିତୟୋଃ ସୃଷ୍ଟି ପରମଗ୍ନି ଶିଖାହସ୍ତିତ ।
ଆଞ୍ଜନେୟ ମତି ପାଟଳାନନଂ କାଞ୍ଚନାଦ୍ରି କମନୀୟବିଗ୍ରହ ମିତି ।

†—କମିନ୍ଦୁଃ କଂ ପଦ୍ମଂ କମ୍ପୁ ମୁକୁଟବିମ୍ବଂ କମ୍ପୁ ମୁଖମିତି ।

¹—ଧ୍ୱଜିନୀ ବାହିନୀ ସେନାପୃତନାନୀକିନୀବସୁ ଶତ୍ୟମରଃ

²—ଭଟା ଯୋଧାଶ୍ଚ ଯୋଧାଭ ଇତ୍ୟମରଃ ।

ବିଲଙ୍ଘି ପଲ୍ୱଳ ଯେହ୍ନ । ବଧିରେ ନ ପାରେ ସେହ୍ନ ।
ବାରିଧି ତରିବା ଚିନ୍ତି । କଥିରିବା ସେହ୍ନମତି । ୮ ।
ବିଘାପ୍ତ ଧାପ ଯେମନ୍ତ । ବିନା ତୈଳେ ହୋଇ ହତ ।
ବଂଶାର୍ଦ୍ଧମୁଖ ତେମନ୍ତ । ବିହାୟସେ ହନୂମନ୍ତ । ୯ ।
ବିନ୍ଧ୍ୟପର୍ବତେ ପ୍ରବେଶ । ବହିଲ ପରି ବିଭାସ ।
ବନ୍ଦି ଜାମ୍ବବେ ଓଳଗ । ବସି ବାଳିସୁତ ଆଗ । ୧୦ ।
ବିନାଶ ସନ୍ଧ୍ୟାସମୟ । ବିୟତ ଶୋଭା ଉଦୟ ।
ବାନର ସଙ୍ଘ ହୋଇଲେ । ବିଧାନ ଶ୍ଳେଷ ବହିଲେ । ୧୧ ।

---

୮ମ ପଦ—ଯେହ୍ନ (ଯେଉଁ ଲୋକ) ବଧିରେ ପଲ୍ୱଳ (କ୍ଷୁଦ୍ରଜଳାଶୟକୁ) ବିଲଙ୍ଘି ନ ପାରେ ( ଡେଇଁଯାଇ ନ ପାରେ ) ସେହ୍ନ ( ସେ ଲୋକ ) ବାରିଧି ( ସମୁଦ୍ର ) ତରିବା ଚିନ୍ତି ( ତରିବାକୁ ମନ କଲା ପରି ) 'ତୁମ୍ଭ' କଥିରିବା 'କଥା' ସେହ୍ନ ମତ ( ସେହ୍ନପରି ) । ୮ ।

୯ମ ପଦ—'ବାହାର କଥା ଶୁଣି' ବିଘାପ୍ତ ( ଜଳୁଥିବା ) ଧାପ ଯେମନ୍ତ ବିନା ତୈଳ ( ତୈଳ ବାତି ବିନେକରେ ) ହତ ( ମଳିନ ପଡ଼ିଯାଏ ) ତେମନ୍ତ ବଂଶାର୍ଦ୍ଧମୁଖ ( ରାବଣର ଦଶମୁଖ ) 'ହେଲା' । 'ଏ ସମୟେ' ହନୁମନ୍ତ (ହନୂମାନ୍) ବିହାୟସେ (ଆକାଶରେ) 'ଗଲେ' । ୯ ।

୧୦ମ ପଦ—ବିଭାସ ବହିଲ ପରି ( ବିଭାସ ହେଲା ପ୍ରାୟ ) ବିନ୍ଧ୍ୟପର୍ବତେ ପ୍ରବେଶ 'ହେଲେ' । 'ତଦନ୍ତେ ହନୁମାନ' ଜାମ୍ବବେ ( ଜାମ୍ବବ ମନ୍ତ୍ରିକୁ ) ଓଳଗ ବନ୍ଦି ( ନମସ୍କାର କରି ) ବାଳିସୁତ ( ଅଙ୍ଗଦ ) ଆଗ ( ଆଗରେ ) ବସି (ବସିଲେ) । ୧୦ ।

୧୧ଶ ପଦ—ସନ୍ଧ୍ୟାସମୟ ( ସନ୍ଧ୍ୟାବେଳେ ) ବିନାଶ 'ପାଇ' ବିୟତ ( ଆକାଶରେ ) ଶୋଭା ଉଦୟ 'ହେଲା ପ୍ରାୟ' ବାନର ( ଅଙ୍ଗଦ ପ୍ରଭୃତି ଅନ୍ୟ ବୀରଙ୍କ ) ସଙ୍ଘ ହୋଇଲେ । 'ସେ ସବୁ' ଶ୍ଳେଷ ବିଧାନ ( ଏହି ଶ୍ଳେଷବିଧାନ ) ବହିଲେ । ୧୧ ।

ବିକାଶି ଫାଳପ୍ରଭୃତ । ବିଶେଷ ତାରାଜନିତ ।
ବିଦ୍ଧିତ ଯେ ରୁକ୍ଷବର । ବିଦ୍ୟ ମଙ୍ଗଳ ସଞ୍ଚାର । ୧୨ ।
ବାଗ୍ରି ହନୂମନ୍ତ ଜନ୍ମ । ବାରାଂନିଧି ଯାଉଁ ତେଣି ।
ବିଘ୍ନ କରି ଗିଳଦେଲା । ବିଧୁନ୍ତୁଦମାତା ମଲା । ୧୩ ।
ବିରୋଧୀ ହୋଇ ସୁରସା । ବକିଲା ନାହିଁ ଭରସା ।
ବୋଧିଆସି ମଇନାକ । ବୁଡ଼ିଲ ସିନ୍ଧୁଉଦକ । ୧୪ ।

---

୧୨ଶ ପଦ—ଏ ପଦ ଶ୍ଳେଷ—ଆକାଶପକ୍ଷେ-'ଯହିଁରେ' ଫାଳପ୍ରଭୃ (—କୃତ୍ତିକାଦି) ବିକାଶି ତ ( ବିକାଶ ପାଏ ) ଓ ବିଶେଷ ( ଅସଂଖ୍ୟ ) ତାରା (ନକ୍ଷତ୍ରଙ୍କର) ଜନିତ ( ଉତ୍ପନ୍ନ ହୁଏ ) ଆଉ ଯେ ଋକ୍ଷବର ( ଚନ୍ଦ୍ର ) ବିଦିତ ( ଉଦିତ ହୁଅନ୍ତି ) । ଏବଂ ମଙ୍ଗଳ 'ଗ୍ରହ' ସଞ୍ଚାର ବିଦ୍ୟ ( ବିଦ୍ୟମାନ ହୋଇଥାଏ ) । ସୈନ୍ୟପକ୍ଷେ—'ଯହିଁରେ କ ଫାଳ ( ସେନାପତି ର ) ପ୍ରଭୃ ବିକଶିତ ( ବିକାଶ ପାଇଛନ୍ତି ) ବିଶେଷ ( ବିଶେଷରେ ) ତାରାଜନିତ ( ଅଙ୍ଗଦ ) ଋକ୍ଷବର ( ଜାମ୍ବବ ) 'ଯହିଁରେ' ବିଦିତ ( ବିଖ୍ୟାତ ) ମଙ୍ଗଳ ସଞ୍ଚାର (ଶୁଭସଞ୍ଚାର) 'ଯହିଁରେ' (ବିଦ୍ୟମାନ ହୋଇଅଛି) । ୧୨ ।

୧୩ଶ ପଦ—ହନୂମନ୍ତ (ହନୂମାନ୍) ବାଗ୍ରି ଜନ୍ମ (ଜନ୍ମିଲା) ବାରାଂନିଧି ( ସମୁଦ୍ର ) ତେଣି ଯାଉଁ [୧]ବିଧୁନ୍ତୁଦ ମାତା ( ରାହୁମାତା—ସିଂହିକା ) ବିଘ୍ନ କରି ( ବାଧାଦେଇ ) 'ମୋତେ' ଗିଳଦେଲା 'ପୁଣି ମୋ ଯୋଗୁଁ ସେ ମଲା' 'କିଛି ବିଘ୍ନ କରି ନ ପାରିଲା' । ୧୩ ।

୧୪ଶ ପଦ—ସୁରସା (ନାଗମାତା) ବିରୋଧୀ ହୋଇ (ବାଧାଦେବାକୁ ଆସି 'ମୋ ସଙ୍ଗେ ବିରୋଧ କରିବାକୁ' ଭରସା ବକିଲା ନାହିଁ । ମଇନାକ ( ମୈନାକପର୍ବତ ) ବୋଧି ଆସି ( ମୋତେ ପ୍ରବୋଧିବା ପାଇଁ ଆସିଲା ) 'ମୁଁ ଉହିଁରେ ବିଶ୍ରାମ କରନ୍ତେ' 'ମୋ ଭରି ନ ସହି' ସିନ୍ଧୁଉଦକ ( ସମୁଦ୍ର ଜଳରେ) ବୁଡ଼ିଲା । ୧୪ ।

---

[୧]—ସୈଂହିକେୟୋ ବିଧୁନ୍ତୁଦ ଇତ୍ୟମରଃ ।

ବେଳାସ୍ତେ ସୁବେଳ ହୋଇ । ବନମି ଲଙ୍କାକୁ ଯାଇ ।
ବାଧା ଲଙ୍କିମା ପାଇଲ । ବୈଦେହୀ ଥିବା କହିଲ । ୧୫ ।
ବିଚିତ୍ର ହୋଇ ସେ ପୁର । ବେଶରେ ସଚିତ୍ର ସାର ।
ବିଶାଳ ସେ ଭୂରିଶାଳ । ବିଲୋକ ଲୋକରେ ମେଳ । ୧୬ ।
ବହୁ ଜଗତୀରେ ନାହିଁ । ବହୁ ଜଗତୀରେ ଶୋହି ।
ବିହ୍ନାନ ପୁଣ୍ୟଜନରେ । ବ୍ୟାପିତ ପୁଣ୍ୟଜନରେ । ୧୭ ।

---

୧୫ଶ ପଦ— ବେଳାସ୍ତେ ( ବେଳ ଅସ୍ତ ସମୟରେ ) ସୁବେଳ 'ଗିରିରେ' ହୋଇ ( ଯାଇ ପ୍ରବେଶ ହେଲ ) । 'ସେଠାରୁ' ବନମି ଲଙ୍କାକୁ ଯାଇ ('ଗଲ) 'ବାଟରେ' ଲଙ୍କିମା ( ଲଙ୍କାଦେବୀ ) 'ପତ୍ନୀରୂପେ' ବାଧା 'ମୋଠାରୁ' ପାଇଲ । ବୈଦେହୀ ଥିବା 'କଥା' କହିଲ । ୧୫ ।

୧୬ଶ ପଦ— 'ଏଠାରୁ ଅଠର ପଦ ଦ୍ୱିପାଦ ପର୍ଯ୍ୟନ୍ତ ବିରୋଧାଭାସ' । ସେ ( ଲଙ୍କା ) ପୁର ବିଚିତ୍ର ( ଚିତ୍ରହୀନ ) 'ପୁଣି' ବେଶରେ ସଚିତ୍ର ସାର ( ଉତ୍କୃଷ୍ଟ ଚିତ୍ର ସହିତ ) 'ହୋଇଅଛି' 'ଏମନ୍ତେ ବିରୋଧ ହେଲ' । ପରିହାର-ସେପୁର ବିଚିତ୍ର ( ଆଶ୍ଚର୍ଯ୍ୟ ) ବେଶରେ ସଚିତ୍ର ( ଚିତ୍ର ପ୍ରତିମା ସହିତ ) ହୋଇ 'ଥିବାରୁ' ସାର ( ଶ୍ରେଷ୍ଠ ) 'ହୋଇଅଛି' । ବିଶାଳ ( ଶାଳ ଶୂନ୍ୟ ) ପୁଣି [1]ଶାଳରେ [2]ଭୂରି ( ପ୍ରଚୁର ଶାଳ ସହିତ ) ବିଲୋକ ( ଲୋକ ରହିତ ) ପୁଣି ଲୋକରେ ମେଳ ( ବହୁତ ଲୋକ ) ଏମନ୍ତେ ବିରୋଧ ହେଲ । ପରିହାର ବିଶାଳ ( ବଡ଼ ) ଭୂରିଶାଳ ( ବହୁତ ଗୃହ ବା ସୁବର୍ଣ୍ଣ ଧାତୁଗୃହ ) ବିଲୋକ ଲୋକରେ ( ଦେଖିଲ ଜନମାନଙ୍କରେ ) 'ସେ ପୁର' ମେଳ ହୋଇଅଛି ।୧୬।

୧୭ଶ ପଦ—ବିରୋଧ ପରିହାର ବହୁ ଜଗତୀରେ ( ବହୁତ ପୃଥ୍ୱୀରେ ) ନାହିଁ 'ଏମନ୍ତ' ବହୁ ଜଗତୀରେ ( ବହୁତ ଅଟ୍ଟାଳିକାରେ ) ଶୋହି ( ଶୋଭିତ ହୋଇଅଛି ) । ପୁଣ୍ୟ ଜନରେ ( ସଜ୍ଜନମାନଙ୍କରେ ) ବିହ୍ନାନ 'ହୋଇଅଛି' ।

---

୧—ଶାଲଃ ସର୍ଜ୍ଜରସେ ବୃକ୍ଷେ ପ୍ରାକାରେଽପି ପ୍ରଯୁଜ୍ୟତେ ଇତ୍ୟଜୟଃ ।

୨—ଭୂରିର୍ନା ବାସୁଦେବେ ଚ ହରେ ଚ ପଲମେଷ୍ଟିନି ।
ନପୁଂସକଂ ସୁବର୍ଣ୍ଣେ ଚ ପ୍ରାଜ୍ୟେଽସ୍ୟାଦାଚ୍ୟ ଲିଙ୍ଗକଃ । ଇତିମେଦିନୀ ।

ବଜ୍ର ପ୍ରଭାରେ ଜ୍ୱଳିତ । ବଜ୍ର ପ୍ରଭା ଅବାରିତ ।
ବୁଲି ଏମନ୍ତ କଟକେ । ବାସେ ନ ଗୃହ୍ଣ ଛଟକେ । ୧୮ ।
ବଂଶକର ଅନ୍ତପୁରେ । ବୁଲି ଖୋଜିଲା ଉତ୍ତରେ ।
ବଣାଏ ଅଶୋକ ନାମା । ବଡ଼ ରମ୍ୟ କି ଉପମା । ୧୯ ।
ବିରଜେ ମଧ୍ୟେ ଜଗତୀ । ବିଜେ ଜନକଦୁହିତୀ ।
ବଜୁଲୀ ଝିଣ୍ଟିକ ମାଧ । ବୁଜ ହୋଇ ଯଥା ନେଧ । ୨୦ ।
ବିଲୋକ ଉତ୍ତମ କରି । ବିଧିରେ ମୁଁ ଯେ ନ ପାରି ।
ବଇକୁଣ୍ଠ ଶିରୀ ଶିରୀ । ବିସ୍ତାରଥିଲାର ପରି । ୨୧ ।

---

ପୁଣ୍ୟଜନରେ (ରାକ୍ଷସମାନଙ୍କରେ) ବ୍ୟାପିତ ( ବେଷ୍ଟିତ ) 'ହୋଇଅଛି' ।୧୭।

୧୮ଶ ପଦ—ବିରୋଧ ପରିହାର ବଜ୍ର ( ହୀରକ ) ପ୍ରଭାରେ ଜ୍ୱଳିତ ( ଉଜ୍ଜ୍ୱଳ ) ଏବଂ ବଜ୍ର ( ବଜ୍ରାସ୍ତ୍ର ) ପ୍ରଭା ( ଦୀପ୍ତିକ ) ଅବାରିତ ( ଜାଣନ୍ତି ନାହିଁ ) 'ଇନ୍ଦ୍ରରେ ବନ୍ଦ୍ର ବଜ୍ର ମାରେ ନାହିଁ ଏହିଭାବ' । ଏମନ୍ତ କଟକେ (ପୁରରେ ) ଛଟକେ ବାସେ ନ ଗୃହ୍ଣ ( ପ୍ରତି ଘର ) ବୁଲି (ଖୋଜିଲି ।୧୮।

୧୯ଶ ପଦ—ବଂଶକର ( ରାବଣର ) ଅନ୍ତଃପୁରେ ବୁଲି ( ଭ୍ରମି କରି ) ଖୋଜିଲା ଉତ୍ତରେ ଅଶୋକନାମା ବଣାଏ ( ବନ ଗୋଟିଏ ) 'ଦେଖିଲି' 'ସେ ବନ' ବଡ଼ ରମ୍ୟ ( ସୁନ୍ଦର ) କି ଉପମା ? ( ତାକୁ ଉପମା ଦେବାକୁ ନାହିଁ ) । ୧୯ ।

୨୦ଶ ପଦ—ମଧ୍ୟେ (ସେହି ଅଶୋକବନ ମଧ୍ୟରେ) ଜଗତୀ (ଅଟ୍ଟାଳିକା) ବିରଜେ । 'ତହିଁରେ' ଜନକଦୁହିତା ( ଜନକଦୁହିତା ) ବିଜେ 'କରିଛନ୍ତି' । ବଜୁଲୀ ଝିଣ୍ଟିକ ମାଧ ( ଝିଣ୍ଟିକମାନେ ) ନେଧ ବୁଜହୋଇ 'ଯାଏ' ଯଥା (ଯେପରି) 'ସେହିପରି ତାଙ୍କୁ ଦେଖିଲାମାତ୍ରେ ନେଧ ବୁଜ ହୋଇଗଲା ।୨୦।

୨୧ଶ ପଦ—ବିଧିରେ ମୁଁ ଯେ ଉତ୍ତମକରି ବିଲୋକ ( 'ତାଙ୍କୁ ଦେଖି ) ନ ପାରି ( ନ ପାରିଲି ସେ କିପରି ଦିଶୁଥିଲେ ) । ବଇକୁଣ୍ଠ ଶିରୀ ( ଶ୍ରୀଲକ୍ଷ୍ମୀ ଶିରୀ ( ଶ୍ରୀ-ଶୋଭା ) ବିସ୍ତାରଥିଲାର ପରି ( ବିସ୍ତାରିଲା ପ୍ରାୟେ ) 'ଶୋଭା ବିସ୍ତାର ଅଛନ୍ତି' । ୨୧ ।

ବିସ୍ମିତ ଶୋଭସାଗର । ବିଧାତା ମନ୍ଥୁ ବାହାର ।
ବାରିଧିରୁ ଯେତେ ଦ୍ରବ୍ୟ । ବିଜନ୍ୟ ସେ ଏକଠାବ । ୨୨ ।
ବିସ୍ମୟରେ ଅଧିକ ଏହି । ବୁଧେ ତାକୁ ଧିକ କହି ।
ବଦନ ସର୍ବଦା ପୂର୍ଣ୍ଣ । ବିଧୁ କଳଙ୍କବିହୀନ । ୨୩ ।
ବୋଲିବ ଏମନ୍ତ ବିଧୁ । ବିଭବସ୍ଥରେ ସେ ସାଧୁ ।
ବିଭାବରୁ ନିଶାକର । ବୋଲିଅଛି ବେଦବର । ୨୪ ।
ବାସର ବିଶରେ ସର । ବାଳା ଆନନ ମାଧୁରୀ ।
ବିମଳ ହାସ କରଣ । ବିଧାନ ସେ ଅନୁକ୍ଷଣ । ୨୫ ।
ବିଭୂଷା ବିନେଶ ସେହି । ବହୁନେଶଭୂଷା ଏହି ।
ବିଦ୍ବାଇ ସେ ଶିଳାଏ । ବହୁଶୀଳା ଏ ଦ୍ୱିବାଏ । ୨୬ ।

---

୨୨ଶ ପଦ—ବିସ୍ମିତ ( ମୁଁ ତାଙ୍କୁ ଦେଖି ବିସ୍ମିତଲି ) ବିଧାତା ଶୋଭ୍ୟ-ସାଗର ( ଶୋଭସିନ୍ଧୁ ) ମନ୍ଥୁ ( ମନ୍ଥନକଲାନ୍ତେ ) 'ଏ ଗ୍ରମା' ବାହାର 'ହେଲ' ବାରିଧିରୁ ( ସମୁଦ୍ରରୁ ) ବିଜନ୍ୟ (ଜାତହେବା) ଦ୍ରବ୍ୟ ଯେତେ ସେ 'ସବୁ' ଏକଠାବେ ( ଏକସ୍ଥାନରେ ) 'ରହିଲେ' । ୨୨ ।

୨୩ଶ ପଦ—ବିସ୍ମୟରେ ( ମୁଁ ବିସ୍ମୟକରେ ) ଏହି 'ବାମା ତହିଁରୁ' ଅଧିକ । ବୁଧେ (ପଣ୍ଡିତମାନେ) ତାକୁ ( ସମୁଦ୍ର ଜାତ ପଦାର୍ଥମାନଙ୍କୁ ) ଧିକ 'ବୋଲି' କହି (କହନ୍ତି) । 'ତାଙ୍କ' ବଦନ ବିଧୁ ( ମୁଖଚନ୍ଦ୍ର ) ସର୍ବଦା ପୂର୍ଣ୍ଣ ଓ କଳଙ୍କବିହୀନ । ୨୩ ।

୨୪ଶ ପଦ—ବୋଲିବ ( ଏମନ୍ତ ଅବା କହିବ ) ବିଧୁ (ଚନ୍ଦ୍ର) ସେ ବିଭବସ୍ଥରେ ( ରାତିରେ ) ସାଧୁ ( ସୁନ୍ଦରଦିଶେ ) 'ଉତ୍ସବରେ କାରଣ' ବିଭାବରୁ (ଅଭାବରୁ) ବେଦବର (ବ୍ରହ୍ମା) ନିଶାକର ବୋଲିଅଛି । ୨୪ ।

୨୫ଶ ପଦ—ବାଳା ଆନନ ମାଧୁରୀ ( ସୀତାଙ୍କ ମୁଖଶୋଭା ) ବାସର ବିଶାରେ (ଉଦଗତ) ସର (ସମାନ) ବିମଳ ( ନିର୍ମଳ ) ହାସ କରଣ 'ହେଲ' ସେ ଅନୁକ୍ଷଣ (ସର୍ବଦା) ବିଧାନ 'ହୋଇଅଛି' । ୨୫ ।

୨୬ଶ ପଦ—ସେହି (ଚନ୍ଦ୍ର) କେବଳ' ବିନେଶ ବିଭୂଷା ( ମହା-ଦେବଙ୍କର ଶିରୋଭୂଷଣ) । ଏହି (ମୁଖଚନ୍ଦ୍ର) ବହୁନେଶଭୂଷା ( ବହୁତ-

ବିଦ୍ୟୁତ ଯେ କ୍ଷଣପ୍ରଭା । ବାମାକାନ୍ତି ଚିରଶୋଭା ।
ବଞ୍ଚି ଲୁଚି ସ୍ୱର୍ଗେ ଧିକ । ବାସକୁ ପାରିଜାତିକ । ୨୭ ।
ବଡ଼ ସୁନ୍ଦରୀ ରମ୍ଭା ଯେ । ବପୁରେ ଶରଣ ଭଜେ ।
ବାରଣେନ୍ଦ୍ର ମନ୍ଥେ ଗତି । ବାସବେ ସେହି ବିନତି । ୨୮ ।
ବିଷ୍ଣୁ ମୋହିନୀ ହୋଇବା । ବୁଝ କେତେ ଲକ୍ଷ୍ୟ ଦେବା ।
ବିପୁଳ ପୀୟୂଷ କୁମ୍ଭ । ବକ୍ଷୋରୁହ ଯେ ଆରମ୍ଭ । ୨୯ ।

---

ଲୋକଙ୍କର ନେତ୍ର ଭୂଷଣ) 'ସ୍ୱରୂପ' । ସେ (ଚନ୍ଦ୍ର) ଶିଳାଏ (କେବଳ-ଚନ୍ଦ୍ରବାନ୍ତିକୁ) ବିଦ୍ରବାଇ (ତରଳାଇ ଦିଏ) ଏ (ମୁଖଚନ୍ଦ୍ର) ବହୁ ୧ଶୀଳା (ଉତ୍ତମ ସ୍ୱଭାବ ଲୋକଙ୍କୁ) ଦ୍ରବାଏ (ତରଳାଏ) । ୨୬ ।

୨୭ଶ ପଦ—ବିଦ୍ୟୁତ ଯେ ( ବିଜୁଳୀ ) 'ସେ' କ୍ଷଣପ୍ରଭା 'ନାମଦଣ୍ଡଇ' (ତାହାର ପ୍ରଭା କ୍ଷଣସ୍ଥାୟୀ ) । ବାମା କାନ୍ତି ( ସୀତାଙ୍କ କାନ୍ତି ) ଚିରଶୋଭା 'ଅଟେ' । (ସର୍ବଦା ଶୋଭା ପାଉଅଛି) । ବାସକୁ (ସୀତାଙ୍କ ଅଙ୍ଗ ସୌରଭକୁ) ପାରିଜାତିକ (ପାରିଜାତପୁଷ୍ପ) ଧିକ 'ହେବାରୁ ଲଜ୍ଜପାଇ' ସ୍ୱର୍ଗେ ଲୁଚି ବଞ୍ଚି (ସ୍ୱର୍ଗରେ ଲୁଚିକରି ବଞ୍ଚିଲା) । ୨୭ ।

୨୮ଶ ପଦ—ରମ୍ଭା ଯେ ବଡ଼ ସୁନ୍ଦରୀ, 'ସେ ରମ୍ଭା ଅପ୍ସରା ସୌନ୍ଦର୍ଯ୍ୟ ଗୁଣରେ ସମାନ ନୋହିଁ' ବପୁରେ ( ସୀତାଙ୍କ ଦେହରେ ) ଶରଣ ଭଜେ (ପଶିଲା) । ତେଣୁ ସୀତା ରମ୍ଭୋରୁ ବୋଲାଇଲେ ଏହାଭାବ' । ଗତି ( ସୀତାଙ୍କ ଗମନ ) ବାରଣେନ୍ଦ୍ର (ଐରାବତର) ଗତି (ଗମନକୁ) ମନ୍ଥେ (ମନ୍ଥନ କରିବାରୁ) ସେହି ( ଐରାବତ) ବାସବେ ( ଇନ୍ଦ୍ରକୁ ) ବିନତି କଲା ଏଣୁ ସମୁଦ୍ର ଜାତ ଦ୍ରବ୍ୟରୁ ଅଧିକ ବୋଲି ବୋଲିଲୁ ଏହି ତାତ୍ପର୍ଯ୍ୟାର୍ଥ । ୨୮ ।

୨୯ଶ ପଦ—ବିଷ୍ଣୁ ମୋହିନୀ ହୋଇବା 'କଥା ଏବେ' ବୁଝ 'ତାଙ୍କୁ ଆଉ' କେତେ ଲକ୍ଷ୍ୟ (ଉପମା) ଦେବା, ଯେ (ବାଳାର) ବକ୍ଷୋରୁହ ( ପୟୋଧର ) ବିପୁଳ (ପୃଥୁଳ) ପୀୟୂଷ କୁମ୍ଭ (ସୁଧାକୁମ୍ଭ) 'ତାହାର' ଆରମ୍ଭ 'ହୋଇଅଛି' ୨୯ ।

---

୧—ଶୀଳଂ ସ୍ୱଭାବେ ସଦ୍‌ବୃତ୍ତେ ଇତି ବର୍ଣ୍ଣଃ ।

ବଇଶ୍ରବଣ ଆସିଲା । ବସି ବିନୟେ ଭାଷିଲା ।
ଅଜ୍ଞ ଅର୍ଥ ବଚନ । ବିଜ୍ଞଜନରେ ଯେସନ । ୩୦ ।
ବିନାୟକନନ୍ଦନ । ବଧୂ କୃତ ତା ବଚନ ।
ବୋଧକର ବିନା ଦାନେ । ବାହୁଡ଼ିଲାର ସମାନେ । ୩୧ ।
ବନ୍ଦନ ତେଜି ନନ୍ଦନ । ବହିଗଲା ଦଶାନନ ।
ବିଯୋଗ ହେଉଁ ତାମସୀ । ବିଗତ ପାଶୁଁ ରାକ୍ଷସୀ । ୩୨ ।
ବାଗ୍ମି କନ୍ଧ ହେଲ ମୂଧ । ବାଳକାମଣି ପ୍ରମୋଦ ।
ବିନୟେ ଭଣିଲ ଶୁଣି । ବଲ୍ଲଭଙ୍କୁ ମୁଦ୍ରାମଣି । ୩୩ ।

---

୩୦ଶ ପଦ—'ଏହି ସମୟରେ' ବଇଶ୍ରବଣ ( ରାବଣ ) ଆସିଲା, ବସି ( ତାଙ୍କ ପାଖରେ ବସି ) ବିନୟେ ( ବିନୟରେ ) ଭାଷିଲା ( କହିଲା ) ଅଜ୍ଞବଚନ ( ମୂର୍ଖକଥା ) ବିଜ୍ଞଜନରେ ( ପଣ୍ଡିତଙ୍କଠାରେ ) ଯେସନ ( ଯେପରି ) ଅନର୍ଥ ( ବିଫଳ ) 'ସେହିପରି ରାବଣର ବିନୟ କଥା ହେଲା' ।

୩୧ଶ ପଦ—ତା ବଚନ ( ରାବଣ କଥାକୁ ) ବିନାୟକ ନନ୍ଦନ ( ଗଣେଶ ଚତୁର୍ଥୀ ଚନ୍ଦ୍ର ) ବଧୂ * କୃତ ( ଚନ୍ଦ୍ରପ୍ରାପ୍ତ କଲେ ) । 'ତାହା ମୁଖ ନ ଶୁଣିଲେ ଏହି ଭାବ' । ବୋଧକର ( ଭାଟ ) ବିନାଦାନେ (ଦାନ ନପାଇ) ବାହୁଡ଼ିଲାର ସମାନେ ( ବାହୁଡ଼ିବାପରି) ବାହୁଡ଼ିଗଲା । ୩୧ ।

୩୨ଶ ପଦ—ଭାଟ ଯେପରି ବନ୍ଦନ ( ସ୍ତୁତି ) ତେଜି ( ଛାଡ଼ି ) ନନ୍ଦନ ( ନନ୍ଦା ) 'କରେ ସେହିପରି ରାବଣ ସୀତାଙ୍କୁ ନ ବନ୍ଦି ନନ୍ଦିକରି ଗଲା' ତାମସୀ ( ରାତି ) ବିଯୋଗ ହେଉଁ ( ପାହିଯାନ୍ତେ ) ରାକ୍ଷସୀ (ରକ୍ଷାଅସୁରୀଏ ) ପାଶୁଁ ( ପାଖରୁ ) ବିଗତ ( ଅନ୍ତର ହେଲେ ) । ୩୨ ।

୩୩ଶ ପଦ—'ସୀତାଙ୍କୁ ଏକାନ୍ତରେ ଦେଖି' ବାଗ୍ମି କହି ମୁଦ ହେଲ । 'ମୁଦ୍ରପାଇ' ବାଳକାମଣି ( ସୀତା ) ପ୍ରମୋଦ ( ଆନନ୍ଦିତା ହେଲେ ) । ଶୁଣି ବିନୟେ ( ବିନୟରେ ) ଭଣି (କହିଲେ) । ବଲ୍ଲଭ ( କାନ୍ତଙ୍କ ) ମୁଦ୍ରା ମଣି ( ମଥାମଣି ) ଦେଲେ । ୩୩ ।

---

*—ଚନ୍ଦନ ତନୁଜେନ ଶ୍ରମଂ ମମାସ୍ତୁ ମିଥ୍ୟାପବାଦୋଽପି । ଇତି ମୁକ୍ତରୂପଂ ଶ୍ୟଦବଲା ଭାଦ୍ରଚତୁର୍ଥୀକଳାନାଥଂ ଇତି ପ୍ରୟୋଗଃ ।

ବୈଦେହୀ ଦେଖି ଆସିଲି । ବନାସାର ଭଗ୍ନ କଲି ।
ବାଦାରମ୍ଭେ ନିଶାଚର । ବଧ ମୁଁ କଲି ଅପାର । ୩୪ ।
ବୈଶ୍ରବଣ ଏକ ସୁତ । ବିଦାରଣେ ସେ କୁପିତ ।
ବାସବାରି ବରଗିଲା । ବିଳେଶୟେ ବାନ୍ଧି ନେଲା । ୩୫ ।
ବିବିଧ ଦଣ୍ଡ ବିହିତ । ବାଣୀପରୁଷ ରଚିତ ।
ବଢ଼ାଇ ମୁଁ ନ ଗୁଡ଼ିଲି । ବାହୁ ମୋଡ଼ିବ ବୋଇଲି । ୩୬ ।
ବାସ ଲାଙ୍ଗୁଳେ ବେଢ଼ାଇ । ବହ୍ନିରେ ଦେଲା ପୋଡ଼ାଇ ।
ବିଧ୍ୱଂସି ତହିଁ ନଗର । ବୋଧ ଯେନି ଦେବଙ୍କର । ୩୭ ।
ବିଟ୍ଟର ପାରଇ ଯେତେ । ବଳବଶେ କଲି ତେତେ ।
ବୋଲନ୍ତି ବୋଲେ ବାଳିସୁତ । ବନ୍ଧାଇ ମାଗ ଉଚିତ । ୩୮ ।

---

୩୪ଶ ପଦ—ବୈଦେହୀ 'ମଣି' ଦେଖି ମୁଁ ଆସିଲି । ବନାସାର (ମଧୁବନକୁ) ଭଗ୍ନକଲି । ବାଦାରମ୍ଭେ (କଳି ଆରମ୍ଭ ହୁଅନ୍ତେ) ଅପାର ନିଶାଚର (ବହୁତର ଅସୁର) ବଧକଲି । ୩୪ ।

୩୫ଶ ପଦ—ବୈଶ୍ରବଣ (ରାବଣର) ଏକସୁତ ବିଦାରଣେ (ଏକପୁତ୍ର ଅକ୍ଷୟକୁ ମାରନ୍ତେ) ସେ (ରାବଣ) କୁପିତ 'ହୋଇ' ବାସବାରି (ଇନ୍ଦ୍ରଜିତକୁ) ବରଗିଲା (ପଠାଇଦେଲା) 'ସେ ମୋତେ' ବିଳେଶୟେ (ନାଗ ପାଶରେ) ବାନ୍ଧି ନେଲା । ୩୫ ।

୩୬ଶ ପଦ—ବିବିଧ (ନାନାପ୍ରକାର) ଦଣ୍ଡବିହିତ (ଦେଲେ) ପରୁଷ ବାଣୀ (କଟୁକଥା) ରଚିତ (କହିଲେ) । 'ତଥାପି' ମୁଁ ବଢ଼ାଇ (ବଡ଼ପଣ) ନ ଗୁଡ଼ିଲି ତୋ ବାହୁ ମୋଡ଼ିବି 'ଏମନ୍ତ' ବୋଇଲି । ୩୬ ।

୩୭ଶ ପଦ—'ମୋ' ଲାଙ୍ଗୁଳେ (ଲାଙ୍ଗୁଡ଼ରେ) ବାସ (ବସନ) ବେଢ଼ାଇ (ଗୁଡ଼ାଇ) ବହ୍ନିରେ (ଅଗ୍ନିରେ) ପୋଡ଼ାଇ ଦେଲା । ତହିଁ (ସେ ଅଗ୍ନିରେ) ନଗର (ତା ପୁର) ବିଧ୍ୱଂସି (ପୋଡ଼ିଦେଇ) ଦେବଙ୍କର (ଦେବତାମାନଙ୍କ) ବୋଧ (ପ୍ରବୋଧ) ଯେନି 'ଜନ୍ମାଇଲି' । ୩୭ ।

୩୮ଶ ପଦ—ବିଟ୍ଟର (ଋଷ୍ଟେ ରୁଷ୍ଟ) ବଳବଶେ (ବଳ ଅନୁସାରେ) ଯେତେ (ଯେତେଦୂର) ପାରଇ (ପାରିବାର) ତେତେ (ତେତେଦୂର)

ବାତାତ୍ମଜ ତହୁଁ ଭାଷି । ବହୁଦ୍ଧନ ଉପବାସୀ ।
ବାଟିକା କଷ୍ଟିନ୍ଧ୍ୟା ଅଛି । ବହୁଧଫଳେ ଶୋଭୁଛି ।୩୯।
ବୋଧ କରିବା ଉଦର । ବହିବାଁ ରାମ ଛାମୁର ।
ବର୍ଗରେ ସର୍ବେ ଯୋଗାଇ । ବାୟୁରୁ ସତ୍ତ୍ୱରେ ଯାଇ ।୪୦।
ବେଗରେ ବୋଲନ୍ତି ହରି । ବଳେ-ମଧୁ ନାଶ କରି ।
ବୃକ୍ଷମାନ ମନୋରମ । ବହି କଳ୍ପଦ୍ରୁମ ସମ ।୪୧।

---

'ଭାର୍ଯ୍ୟ' କହିଲେ । ବେଳୁଁ ( ହନୁମାନ କହନ୍ତେ ) କାଳପୁତ ( ଅଙ୍ଗଦ ) ବୋଲେ (କହେ) ହୃଦତ (ବେଟେ) ବଧ ଇ (ପୁରସ୍କାର) ପାଗ ।୩୮।

୩୯ଶ ପଦ—ତହୁଁ (ତତ୍ପରେ) ବାତାତ୍ମଜ ( ହନୁମାନ ) ଭାଷି (କହିଲ) 'ଆମ୍ଭେମାନେ' ବହୁଦ୍ଧନ ( ଅନ୍ଧତଦନର ) ଉପବାସୀ ( ଉପବାସରେ ଅଛୁଁ ) କଷ୍କିନ୍ଧ୍ୟା 'ରାଜ୍ୟରେ' ବାଟିକା ( ବାଡ଼ୀ—ମଧୁବନ ) ଅଛି, ସେ 'ବନ' ବହୁଧ ( ନାନାପ୍ରକାର ) ଫଳେ ( ଫଳରେ ) ଶୋଭୁଛି ( ଶୋଭା ପାଉଅଛି ) । ୩୯ ।

୪୦ଶ ପଦ—ଉଦର ବୋଧ କରିବା ( ଆଗ ଉଦର ସନ୍ତୋଷ କରିବା ) 'ପରେ' ରାମ ଛାମୁରେ ( ରାମଙ୍କ ଆଗକୁ ) ବହିବା ( ଯିବା ) । ସର୍ବେ ବର୍ଗରେ ( ସମସ୍ତଙ୍କ ବର୍ଗକୁ ) 'ଏକଥା' ଯୋଗାଇ ( ଅ..କ ) । ବାୟୁରୁ ( ପବନଠାରୁ ) ସତ୍ତ୍ୱରେ (ବେଗରେ) ଯାଇ ( ଗଲେ ) । ୪୦ ।

୪୧ଶ ପଦ—ବେଗରେ ହରି ବୋଲନ୍ତି ( ମର୍କଟମାନେ ହରିନାମକୁ ବହନ୍ତି ); ଏଣୁ ବଳେ ( ବଳପୂର୍ବକ ) ମଧୁ ( ମଧୁବନକୁ ନାଶ କରି (ନାଶ କଲେ ) ଅଥବା ମଧୁ ( ମଦ୍ୟ ) ଭାଙ୍ଗି ପିଇଲେ । ହରି ( ବିଷ୍ଣୁ ) ମଧୁ (ମଧୁ ନାମକ ଦୈତ୍ୟକୁ ) ନାଶ କରି ଥିଲେ 'ଏ ହରିନାମ ବହିବାରୁ ମଧୁକୁ

---

୧—ବାଟିକା ଶବ୍ଦ ବାଡ଼ୀକ ଗୁର୍ଝିଏ ଯଥା—
ଗତଃ କାଳୋ ଯତ୍ର ନ ପଶୁପରମଣୀସଙ୍ଗମକୃତେ ।
ଭବାନ୍ ବ୍ୟଗ୍ରସ୍ତ୍ରନ୍ତୌ ନମସି ଗୃହବାଟୀବଟପିମାଢ ହଂସଦୂତେ ।
୧—ବହୁଧାରୁ ପ୍ରାପ୍ତ୍ୟର୍ଥ—ଯେଯେପ୍ରାପ୍ତ୍ୟର୍ଥାଃ ତେତେ ଗଭ୍ୟର୍ଥାଃ ।
୧—ଯମାନଳେନ୍ଦ୍ର 'ଚନ୍ଦ୍ରାର୍କ ବିଷ୍ଣୁ ସିଂହାଂଶୁ ବାଜିଷୁ ।
ଶୁକାହି କପି ଭେକେଷୁ ହରିନା କପିଳେ ହିତ୍ରୁ ଇତ୍ୟମରଃ ।

ବାଞ୍ଛିତଫଳ ପ୍ରଦାନ । ବରଚନେ ସୁରଞ୍ଜନ ।
ବାଶଧ୍ୱଜା ପର କେତେ । ବସ୍ତଜେ ଅପୂର୍ବ ଚୂତେ ।୪୨।
ବଶ ରମ୍ଭାରେ ତରକ । ବଦ୍ୟ ନଳକୁବର କି ।
ବାହାଷ୍ଟୋଟମାନ କରେ । ବନ୍ଧାଣ ମଲ୍ଲି ପ୍ରକାରେ ।୪୩।
ବହରଲେ ପୁଷ୍ପକରେ । ବଇଶ୍ରବଣ ସମରେ ।
ବନ୍ଧୁ ରଜାବଦନ ଯୋଖ । ବଶ ଦଣ୍ଡେ ଦଧିମୁଖ ।୪୪।

---

କାଶିଲେ[୨] । ବୃକ୍ଷମାନ (ତହିଁରେ ବୃକ୍ଷସବୁ) କଳ୍ପଦ୍ରୁମସମ (କଳ୍ପବୃକ୍ଷ ତୁଲ୍ୟ) ମନୋରମ୍ୟ (ସୌନ୍ଦର୍ଯ୍ୟ) ବନ୍ଧୁ 'ଅଛନ୍ତି' । ୪୧ ।

୪୨ଶ ପଦ—'କଳ୍ପବୃକ୍ଷ ଯେରୂପ' ବାଞ୍ଛିତ ଫଳ ପଦାନ ବରଚନେ (ମନବାଞ୍ଛା ଫଳ ଦେବାରେ) ସୁରଞ୍ଜନ (ସୁନ୍ଦର ହୋଇଥାଏ) 'ସେ ବୃକ୍ଷସବୁ ସେହିପରି' ବାଞ୍ଛିତ (କଳ୍ପିତ) ଫଳ ପ୍ରଦାନ (ଦେବାରେ) ସୁରଞ୍ଜନ (ସୁମନୋହର ହୋଇ ଅଛନ୍ତି) । କେତେ (ତହିଁରୁ କେତେକ ବୃକ୍ଷ) ବାଶଧ୍ୱଜା (ଲକ୍ଷ୍ମୀ) ପର 'ସୁରଞ୍ଜନ'; ଲକ୍ଷ୍ମୀ ଅପୂର୍ବ[୧] ଚୂତେ (ଅତ୍ୟନ୍ତଙ୍କଠାରେ) ବସ୍ତଜେ (ଶୋଭାପାନ୍ତି) ଏ ବନ ଅପୂର୍ବ ଚୂତେ (ଆମ୍ବଗଛରେ) ବସ୍ତଜେ (ବସନ୍ତି) ।୪୨।

୪୩ଶ ପଦ—ରମ୍ଭାରେ [ପାଚିଲକଦଳୀରେ] ବଶ 'ହେବାରେ' ତରକ (ତର୍କ ଥାଇ) ନଳକୁବର (କୁବେରପୁତ୍ର) ବଦ୍ୟ (ଏଠାକୁ ଆସିଲେ) କି? କାହିଁକି ନା ? 'ନଳକୁବର ରମ୍ଭା ବେଶ୍ୟାଠାରେ ବଶ ହୋଇଥାଏ' 'ତସ୍ପୂରେ' ମଲ୍ଲି ପ୍ରକାରେ (ମାଳପ୍ରାୟେ ବାହାଷ୍ଟୋଟମାନ) 'ମାଣ' ବନ୍ଧାଣକରେ (କଲେ) ।୪୩।

୪୪ଶ ପଦ—'ପୁଣି' ସେ ବଇଶ୍ରବଣ ସମରେ (କୁବେର ବା ରାବଣ ପ୍ରାୟ) ହେଲେ ? କୁବେର ବା ରାବଣ ପୁଷ୍ପକରେ (ପୁଷ୍ପକବିମାନରେ) ବହନ୍ତି 'ଏମାନେ' ପୁଷ୍ପକରେ (ପ୍ରତିପୁଷ୍ପରେ ବା ଫୁଲପେଣ୍ଡା ଧରି) ବହରଲେ (ଖେଳିଲେ) ରଜା ବଦନ (ଏ ଦୁହିଙ୍କ) ଯୋଖ ବନ୍ଧୁ (ତୁଲ୍ୟ

---

୧—ବଷାରେ ଦୋଳନ୍ତାହିଁ ସଙ୍କୁଚିତରେ ଦୋଷ ଧରଯାଏ ଏହା ପୂର୍ବରୁ ପ୍ରମାଣ ଦେଇଅଛୁଁ ।

ବାନରଇନ୍ଦ୍ରେ ଗୁହାର । ବନ୍ଦି ଓଲଗ ସେ କର ।
ବନକଲେ ଶୀଘ୍ର ଶୋଭା । ବହ୍ନି ଗ୍ରୀଷ୍ମସୂର୍ଯ୍ୟ ପ୍ରଭା । ୪୫ ।
ବାହୁଡ଼ ଦକ୍ଷିଣଦୂତେ । ବ୍ୟବହାର ଅଦଭୂତେ ।
ବିନାଶେ ଜୀବେ କରୁଣା । ବହୁତ ପ୍ରକାରେ ଊଣା । ୪୬ ।
ବିବସ୍ୱାନସୁତ ଶୁଣି । ବହେ ହରଷ ସେକ୍ଷଣି ।
ବିବେକ ତା ହୃଦପୁରେ । ବିପିନ ଭଗ୍ନ ପ୍ରଗ୍ରେ । ୪୭ ।

ହୋଇ) ୧ଦଣ୍ଡେନ (ଦଣ୍ଡରେ) ଦଧିମୁଖ ( ଦଧିମୁଖ ନାମକ ଉଦ୍ୟାନ ପାଳକୁ ) ବଶ କଲେ ୨ରାଜା (ରାଜା) ଦଣ୍ଡେ ( ସୈନ୍ୟଙ୍କ ଦ୍ୱାରା ) ରକ୍ଷାପାଳଙ୍କୁ ବଶ କରନ୍ତି । ଭଜ (ଭିତର) ଦଣ୍ଡେ (ଲାଠିଏଲାଦ୍ୱାରେ) ବଶ 'ହୋଇଥାଏ' ।୪୪।

୪୫ଶ ପଦ—ସେ ( ଦଧିମୁଖ ) ବାନରଇନ୍ଦ୍ରେ ( ସୁଗ୍ରୀବ ଆଗରେ ) ଓଲଗ ବନ୍ଦି ( ନମସ୍କାର କରି ) ଗୁହାରି 'କଲା' । ଗ୍ରୀଷ୍ମ 'କାଳ' ସୂର୍ଯ୍ୟ ପ୍ରଭା ବହ୍ନି ବନଶୋଭା ଶୀଘ୍ର କଲେ ( ଦକ୍ଷିଣ ଦିଗଦୂତମାନେ ଜଳାଦ-କାଳ ସୂର୍ଯ୍ୟ କିରଣ ବନର ଶୋଭା ଭାଙ୍ଗିଲା ପ୍ରାୟ ତେଜ ପ୍ରକାଶି ତୁମ୍ଭ ମଧୁବନକୁ ଭାଙ୍ଗିଲେ । ୪୫ ।

୪୬ଶ ପଦ—ଦକ୍ଷିଣଦୂତେ ( ଦକ୍ଷିଣ ଦିଗଦୂତମାନେ ) ଅଦଭୂତେ ( ଅକସ୍ମାତ୍ ) ବାହୁଡ଼ି ( କାହୁଁ ଆସି ) ବ୍ୟବହାର ( ମୋହର ଉଦ୍ୟାନ ରକ୍ଷା ଆଦି ବ୍ୟବହାରକୁ) ବିନାଶେ (ବିନାଶିଲେ) ୧ ଜୀବେ ( ପ୍ରାଣିଠାରେ ) କରୁଣା (ଦୟା) ବହୁତ ପ୍ରକାରେ ଊଣା ( ତାଙ୍କର ଜୀବ ପ୍ରତି ଲେଶ ମାତ୍ର ଦୟା ନାହିଁ ) 'ତୁମ୍ଭ ମଧୁ ବନ ଭାଙ୍ଗିଲେ ମୋତେ ମାଡ଼ ମାଇଲେ ଏଣୁ ଭାବ' । ୪୬ ।

୪୭ଶ ପଦ—ଶୁଣି ( ଦଧିମୁଖଠାରୁ କେନ୍ତୁ ଶୁଣି ?) ବିବସ୍ୱାନସୁତ (ସୁଗ୍ରୀବ) ସେକ୍ଷଣି ହରଷ ବହେ ( ଲକ୍ଷଣେ ଆନନ୍ଦିତ ହେଲ ) । ବିପିନ

୧—ଦଣ୍ଡୋଽସ୍ତ୍ରୀ ଲଗୁଡ଼େ ପୁମାନ୍ । ବ୍ୟୂହଭେଦେ ,ପ୍ରକାଣ୍ଡେଽଶ୍ୱେ- କାଳ ମନ୍ଥନଯୋଃ ଅପି । ସୈନ୍ୟେନାଲେ ମାନଭେଦେ ଇତି ମେଦିନୀ
୨—ଜୀବଃ ପ୍ରାଣି ନବୃକ୍ଷେ ଚ ବୃକ୍ଷଭେଦେ ବୃହସ୍ପତୌ ଇତି ମେଦିନୀ ।

ବ୍ୟବହାରୁ ମନେ ହେଜ । ବୈଦେହୀ ପାଇଲେ ଖୋଜ ।
ବେଶ ହେଲ ଏହା ଭଜ । ବପୁରେ ଚନ୍ଦନ ବୋଳି । ୪୮ ।
ବନ୍ଧାଇଁ ଫୁଲେ ଉଷ୍ଣୀଷ । ବଭ୍ରାଜ କଲ ସେ ଶୀର୍ଷ ।
ବଶଦୀପାଟଅମ୍ବର । ବେଢ଼ାଣ ପିନ୍ଧା ସତ୍ୱର । ୪୯ ।
ବଦନ କର୍ପୂରେ ପୂର । ବନୌକାପତି ବାହାର ।
ବମଳ ଶ୍ୱେତଚ୍ଛମର । ବନୋଦୀ ସେ ପଶକର । ୫୦ ।
ବଧୂ ସମ ଛନ୍ନ ଶୋହ୍ଵ । ବବଧ ବାଦ୍ୟ ବାଜଇ ।
ବେଢ଼ି ଦଧିମୁଖ ସୈନ୍ୟ । ବାର୍ତ୍ତିକ ପାଶେ ଗମନ । ୫୧ ।

---

( ମଧୁବନ ) ଭଗ୍ନ ( ଭାଙ୍ଗିବା କଥା ) ଶ୍ରୁତିରେ ( ଶୁଣିବାର ହେଉଅନ୍ତେ ) ତା ହୃଦଯୂରେ (ସେହି ସୁଗ୍ରୀବ ହୃଦୟରେ) ବବେକ (ବଚାର) କଲ । ୪୭ ।

୪୮ଶ ପଦ—ବୈଦେହୀ ( ସୀତାଙ୍କୁ ) ଖୋଜ ପାଇଲେ । ବ୍ୟବହାରୁ (ମଧୁବନ ଜୀର୍ଣ କରିବାରୁ ଓ ଦଧିମୁଖଙ୍କୁ ଦଣ୍ଡଦେଇ ବାହାର କର ଦେବାରୁ) ମନେ (ମନ ମଧ୍ୟରେ) ହେଜ (ହେଜିଲ) । ଏହା ଭଜ ବେଶ ହେଲ ବପୁରେ (ଦେହରେ) ଚନ୍ଦନ ବୋଳି 'ହେଲ' । ୪୮ ।

୪୯ଶ ପଦ—ଫୁଲ ଉଷ୍ଣୀଷ ( ପାଗ ) ବନ୍ଧାଇ ସେ ( ସୁଗ୍ରୀବ ) ଶୀର୍ଷ (ଶିରକୁ) ବଭ୍ରାଜ (ଶୋଭିତ) କଲ । ବଷଦ ପାଟ ଅମ୍ବର (ଶ୍ୱେତପାଟ ଲୁଗା) 'ପିନ୍ଧି' ସତ୍ୱର (ଶୀଘ୍ର) ପିନ୍ଧା ବେଢ଼ାଣ କଲେ ୪୯ ।

୫୦ଶ ପଦ—ବଦନ ( ମୁଖ ) କର୍ପୂରେ ( କର୍ପୂର ବାସରେ ) ପୂର 'ଅଛି' । ବନୌକାପତି ( ବାନର ରାଜ) ବାହାର ( ବାହାରୂପେ ବାହାରିଲେ ) ପଶକର ( ସ୍କନ୍ଧରମାନଙ୍କ ଦ୍ୱାରା ) ବମଳ (ନର୍ମଳ) ଶ୍ୱେତଚ୍ଛମର 'ଧରାଇ' ବନୋଦୀ (କ୍ରୀଡ଼ାଯୁକ୍ତ) ହୋଇଅଛନ୍ତି ୧କ ? (ନଶ୍ଚୟ) । ୫୦ ।

୫୧ଶ ପଦ—ବଧୂସମ ( ଚନ୍ଦ୍ରତୁଲ୍ୟ) ଛନ୍ନ ( ଶ୍ୱେତଛତ୍ର ) ଶୋହ୍ଵ (ଶୋଭିତ ହୋଇଅଛି) ବବଧ ବାଦ୍ୟ ବଜାଇ ଦଧିମୁଖ ସୈନ୍ୟ 'ସୁଗ୍ରୀବ' ବେଢ଼ି 'ଅଛନ୍ତି' । ବାର୍ତ୍ତିକ ( ବାର୍ତ୍ତାବହ ) ପାଶେ ( ପାଖରେ ) ଗମନ କରୁଅଛି' । ୫୧ ।

---

୧—କିଂ ନଶ୍ଚୟ ନଷେଧୟୋଃ ।

ବ୍ରାହ୍ମ ପୃଥପକ୍ଷ ଶାଢ଼ୀ । ବିମନକୁ  ଦେଇ ଗୁଡ଼ ।
ସାରବର ଉପଇନ୍ଦ୍ର । ବିରଚେ ଏ ବାନପଦ ।୫୨।

---

## ଅଷ୍ଟବିଂଶ ଛାନ୍ଦ ।

ରାଗ କଳହଂସକେଦାର ।

ବଦନ୍ନ ପୂରଅଛି ହାସ ହରଷେ । ବିକର୍ତ୍ତନଜ ଯାଇ ଶ୍ରୀରାମ ପାଶେ ଯେ । ବିକର୍ତ୍ତନ ସନ୍ତାପ ହେଲା ପ୍ରଭୁର । ବାହୁଡ଼େ କାର୍ଯ୍ୟ କର ଦକ୍ଷିଣସ୍ୱର ଯେ । ୧ ।

---

୫୨ଶ ପଦ — ଟୀକା ବାଲ୍ମିକ (ଉଦ୍ଧମୁଖ) ସଥାସ୍ଥ ଶାଢ଼ୀ ବ୍ରାହ୍ମ ବିମନକୁ (ଦୁଃଖ ମନକୁ) ଗୁଡ଼ ଦେଇ ଅଛୁ ଶାଢ଼ୀ ପାଇବାରୁ ଉଦ୍ଧମୁଖ ମନରେ କଷ୍ଟ ନାହିଁ 'ଏହୁଭାବ' । ଏ 'ଗୁଡ଼କୁ' ସାରବର ଉପଇନ୍ଦ୍ର (ଉପେନ୍ଦ୍ର ଭଞ୍ଜ କବି) ବାନ ପଦରେ ବିରଚେ ।୫୨।

---

ଅଷ୍ଟବିଂଶ ଗୁଢ଼ ।

୧ମ ପଦ—ବଦନ (ମୁଖ) ହା (ଏହି କ୍ଷେତ୍ରରେ) ପୂରଅଛି 'ଏମନ୍ତ' ଶ୍ରୀରାମ ପାଶେ (ରାମଙ୍କ ପାଖରେ) ବିକର୍ତ୍ତନଜ (ସୁଗ୍ରୀବ) ସହର୍ଷେ (ସହର୍ଷେ-ହର୍ଷଯୁକ୍ତ ହୋଇ) ଯାଇ (ପ୍ରବେଶି) 'କହିଲେ' ଦକ୍ଷିଣ ସ୍ୱର କାର୍ଯ୍ୟ କର ବାହୁଡ଼ି (ବାହୁଡ଼ଲେ) 'ଏମନ୍ତ ଶୁଣି' ପ୍ରଭୁର (ରାମଙ୍କର) ସନ୍ତାପ (ଦୁଃଖ) ବିକର୍ତ୍ତନ (ଦୂର) ହେଲ । ଅଥବା—ବଦନ (ମୁଖ) ହାସି ହରଷେ (ହାସ ପ୍ରସନ୍ନତାରେ) ପୂରଅଛି 'ଏମନ୍ତ' ବିକର୍ତ୍ତନଜ (ସୁଗ୍ରୀବ) ଶ୍ରୀରାମପାଶେ ଯାଇ 'କହିଲେ' ଏଥର ପ୍ରଭୁର ୨ସନ୍ତାପ ବିକର୍ତ୍ତନ (ବିଶେଷ ରୂପେ ଛେଦନ) ହେଲା 'କାହିଁକି ନା' ?

---

୧—ମହାସ୍ତ୍ର ପଦ୍ଧତାବଳୀ ନିପତତା ସହସ୍ରା ସଦା ସହସ୍ରଦଳହ୍ରାସହର୍ଷପ୍ରଦ ବିଲୋଚନଃ ସଭବେତ୍ତ ଭବ ନମ୍ଭୁଃ ।

୨ – ତାପଃ ସନ୍ତାପ  କୃଚ୍ଛ୍ର ଦ୍ୱୋଃଭବଶ୍ଚଃ ।

ବୋଲୁଁ ବୋଇଲେ ରାମ ହେ ମିତ୍ର ! ବସ । ବଡ଼ମଙ୍ଗଳଯୁକ୍ତ ଭାଷତ ଭାଷ ଯେ । ବଧିର ବ୍ୟାଧି ସତେ ଶ୍ରୁତିରୁ ᐧଯିବ । ବୈଦ୍ୟଦୂତ ଉଦନ୍ତ ଔଷଧି ଦେବ ଯେ ।୨।

ବଳମ୍ବିକୁ କ ମହାପିପାସୀ ସହ । ବାରିପୂର୍ଣ୍ଣ କାସାର ଦେଖାଅ

ଦକ୍ଷିଣ ୩ ଗୃହ (ଦକ୍ଷିଣ ଦିଗ ଦୂତମାନେ) କାର୍ଯ୍ୟ କରି ବାହୁଡ଼େ (ବାହୁଡ଼ିଲେଣି) ।୧।

୨ୟ ପଦ—'ସୁଗ୍ରୀବ ଏମନ୍ତ' ବୋଲୁଁ (କହନ୍ତେ) ରାମ ବୋଇଲେ ହେ ମିତ୍ର ବସ, ବଡ଼ ମଙ୍ଗଳ ଯୁକ୍ତ ଭାଷ ତ (କଥା ତ) ଭାଷ (କହୁଅଛ) ? 'ସୀତାଙ୍କ ବାର୍ତ୍ତା ନ ଶୁଣିବାରୁ ଜାତ ହୋଇଥିବା' ବଧିର ବ୍ୟାଧି (କାଲହେବା ରୋଗ) ଶ୍ରୁତିରୁ (କର୍ଣ୍ଣରୁ) ସତେ ଯିବ କି ? ଦୂତ (ଦକ୍ଷିଣ ଦିଗସ୍ଥରେ) ବୈଦ୍ୟ 'ହୋଇ' ୧ ଉଦନ୍ତ (ବାର୍ତ୍ତାରୂପ) ଔଷଧି ଦେବ (ଦେବେ) 'ଏ କଥା ମୋତେ ପ୍ରତୀତ ହେଉନାହିଁ' ।୨।

୩ୟ ପଦ—'ପୁଣି ରାମ କହିଲେ' ମହାପିପାସୀ (ଅତି ତୃଷାତୁର ଜନ) ବଳମ୍ବିକୁ ସହ କ (ସହି ପାରଇ ନାହିଁ) 'ସେହିପରି ମୁଁ ପିପାସୁ, ସୀତାବାର୍ତ୍ତା ଶ୍ରବଣ ରୂପଜଳର ବଳମ୍ବ ସହିବାକୁ ଅକ୍ଷମ ଏହୁଅଛ' । 'ଏଣୁ' ବାରିପୂର୍ଣ୍ଣ ୧ କାସାର (ଜଳପୂର୍ଣ୍ଣ ସରୋବର) କାହିଁ 'ଅଛି' ଦେଖାଅ । ଅଥବା ବାରି ପୂର୍ଣ୍ଣକ ୨ଆସାର (ଜଳପୂର୍ଣ୍ଣ କରୁଥିବା ଧାରା ସମ୍ପାତ—ଜଳ ମୁଷଳ ଧାରା) କାହିଁ 'ଅଛି' ଦେଖାଅ । କିମ୍ବା—ସୀତାଙ୍କ ବାର୍ତ୍ତା ଆଣିବାରେ କା ୩ ସାର (କାହାର ବଳ) ପୂର୍ଣ୍ଣ 'ହୋଇଅଛି' 'ତାକୁ' ବାରି (ବାରଣ କରି ଦେଇ) କାହିଁ 'ଅଛି' ଦେଖାଅ । ଏମନ୍ତ ରାମ ବଚନ ଶୁଣି ସୁଗ୍ରୀବ ବୋଇଲେ

୩—ସ୍ୱରଗୁରୁ ଗୃହପୁରୁଷ ଇତ୍ୟମରଃ ।

୧—ବାର୍ତ୍ତା ପ୍ରବୃତ୍ତି ବୃତ୍ତାନ୍ତ ଉଦନ୍ତଃସ୍ୟାଦିତ୍ୟମରଃ ।

୧—କାସାରଃ ସରସୀସରଃ ।

୨—ଧାରାସଂପାତ ଆସାର ଇତ୍ୟମରଃ ।

୩—ସାରୋବଲେ ସ୍ଥିରାଂଶେ ଚ ନ୍ୟାଯ୍ୟେ କ୍ଲୀବଂ ବରେ ତ୍ରିଷୁକ୍ତି ।

କାହିଁ ଯେ । ବୃହସ୍ପତି ଚଳନେ ବରଷେ ଘନ । ବସୁରେ ତଥା ଧ୍ୱସ୍ତ କଲେ ମୋ ବନ ଯେ । ୩ ।

ବୋଲୁଁ ସୁଗ୍ରୀବ ସତ କରୁଁ ରାଘବ । ବୀର ଅଷ୍ଟ ଅଗ୍ରତେ ପ୍ରବେଶ କଲେ ଯେ । ବିନୟରେ ତାଙ୍କର ନୟ ନ ରଖି । ବକ୍ତ୍ର ହରଷେ ମାତ୍ର ନୟନ ରଖି ଯେ । ୪ ।

---

୪ ବୃହସ୍ପତି ଚଳନେ (ବୃହସ୍ପତି ଚଳନରେ) ଘନ (ମେଘ) ବରଷେ 'ଯଥା' (ମେଘ ମଧ୍ୟକୁ ଆଗ ଜଳରେ ପୂର୍ଣ୍ଣ କରାଇ ଯେ ରୂପ) ୪ତଥା ବସୁରେ (ମୁଁ ବସୁବୃଷ୍ଟ) 'ଆଗ' ମୋ ବନ (ମୋର ମଧୁବନକୁ) ଧ୍ୱସ୍ତ କଲେ (ଭାଙ୍ଗିଲେ) । ପଛେ ଆସି ଦେଖା କରି ସୀତାଙ୍କ ବାର୍ତ୍ତା ଶ୍ରବଣରୂପ ଜଳ ଦେଇ ତୋଷ କରିବେ ଏହି ଫଳିତାର୍ଥ । ୩ ।

୪ର୍ଥ ପଦ—ସୁଗ୍ରୀବ ବୋଲୁଁ (ଏମନ୍ତ ବୋଲନ୍ତେ) ରାଘବ (ରାମ) ସତ କରୁଁ (ସେ କଥା ସତ ମଣିବା ସମୟରେ) ଅଷ୍ଟବୀର (ଅଙ୍ଗଦାଦି ଆଠବୀର) କଲ (ଶୀଘ୍ର) ଅଗ୍ରତେ (ରାମଙ୍କ ସମ୍ମୁଖରେ) ପ୍ରବେଶ 'କଲେ' । ତାଙ୍କର (ସେହି ଆଠବୀରଙ୍କର) ୧ବିନୟରେ (ପ୍ରଣତିରେ) ୨ନୟ (ନୀତି ବସ୍ତୁରକ୍ଷା) 'ରାମ' ନ ରଖିଲେ ୩ମାତ୍ର (କେବଳ) ବକ୍ତ୍ର ହରଷେ ତାଙ୍କ ମୁଖ (ପ୍ରସନ୍ନତାରେ) ନୟନ (ନେତ୍ରକୁ) ରଖି (ରଖିଲେ) । 'କାରଣ ? ସୀତାଙ୍କୁ ଦେଖିଥିଲେ ମୁଖରେ ପ୍ରସନ୍ନତା ଥିବ ନୋହିଲେ ମୁଖ ବିରସ ହୋଇଥିବ' । ୪ ।

---

୪— ଚଳତ୍ୟଙ୍ଗାରକେ ବୃଷ୍ଟି ଧ୍ରୁ ବା ବୃଷ୍ଟିଃ ଶନୈଶ୍ଚରେ । ତାଗପୂର୍ଣ୍ଣାଂ ମହାଂକୃତ୍ୱା ପଶ୍ଚାତ୍ସଂତରଣେ ଗୁରୁଗତି ଜ୍ୟୋତିଃଶାସ୍ତ୍ରେ ।

୪—ଯଥା ତଥା ଶବ୍ଦୟୋର୍ନିତ୍ୟସମ୍ବନ୍ଧଃ ।

୧—ବିନୟଂ ପ୍ରଣତୌ ପ୍ରାହୁଃ ।

୨—ନୟୋ ନୀତୌ ଭୂତଭେଦେ ଇତି ବିଶ୍ୱଃ ।

୩—ମାତ୍ରଂ କାର୍ତ୍ସ୍ନ୍ୟେ ଽବଧାରଣେ ଇତ୍ୟମରଃ ।

ବାଳନନ୍ଦନ ରାମ ହୃଦସ୍ଥମଣି । ବୋଲେ ଖୋଜିଲ ତବ
ହୃଦସ୍ଥ ମଣି ଯେ । ବିବର୍ଦ୍ଧନ କେଶରୀ ପାଳନେ ଯେହୁ । ବିଭେଦକ
ସିନ୍ଧୁର ହୋଇଲା ସେହୁ ଯେ । ୫ ।
ବ୍ୟକ୍ତ କର ଅଞ୍ଜନା ରଞ୍ଜିତ ସିଦ୍ଧି । ବିପଥ ଦୃଶ୍ୟ ତମଜନିତା-

୫ମ ପଦ—ବାଳନନ୍ଦନ (ଅଙ୍ଗଦ) ରାମ ହୃଦସ୍ଥ ମଣି (ରାମଙ୍କ ମନ ଜାଣି ପାର) ବୋଲେ (କହେ) ତବ ହୃଦସ୍ଥମଣି (ସୀତା) ଖୋଜିଲା 'ମଣି କହିବା ପଦାର୍ଥ ତାକୁ ଲୋକେ ଖୋଜନ୍ତି ଏହି ଅର୍ଥ'। ✱ 'ତେବେ ତୁମ୍ଭେ ଛଡ଼ିକି କିଏ ଖୋଜିଲା ?' କେଶରୀପାଳନେ (କେଶରୀନାମା କପି ପାଳିବାରେ) ଯେହୁ (ଯେଉଁ କପି) ବିବର୍ଦ୍ଧନ (ବଢ଼ିଅଛି) ✦ ସେହୁ (ହନୁମାନ୍) ସିନ୍ଧୁର ବିଭେଦକ ହୋଇଲା (ସମୁଦ୍ରକୁ ଭେଦିଲା) । ବାଚ୍ୟାର୍ଥ—କେଶରୀ (ସିଂହ) ପାଳନେ (ପାଳିବା ଦ୍ୱାରା) ବିବର୍ଦ୍ଧନ (ବଢ଼ିଥିବା) 'ସିଂହଛୁଆ' ସିନ୍ଧୁର (ହସ୍ତିର) ବିଭେଦକ 'ହୋଇ ✱ ମୁକ୍ତା ଖୋଜଇ' 'ତଦ୍ରୂପ କେଶରୀପୁତ୍ର ହନୁମାନ୍ ସିନ୍ଧୁ ଭେଦି ସୀତା ଖୋଜିଲେ; ଏହି ଫଳିତାର୍ଥ' । ୫ ।

୬ଷ୍ଠ ପଦ—ଅଞ୍ଜନା (ବାନରୀ ଦ୍ୱାରା) ରଞ୍ଜିତ (ଶୋଭିତ) ହୋଇଥିବା ସିଦ୍ଧି (ପ୍ରତିପାଳିତ ସିଦ୍ଧିକି) ବ୍ୟକ୍ତ (ପ୍ରକାଶିତ) କର ' ଅଞ୍ଜନାପୁତ୍ର ହନୁମାନ୍ ' ବିପଥ ( ଆକାଶମାର୍ଗରେ ) ଦୃଶ୍ୟ 'ହେବା' ତମଜନିତା ରାହୁ

✱—ମୂଂ ତଦ୍ଗତଂ ତଦ୍ଗତଂ ଯଦ ସମୁଦ୍ରସ୍ଥତେ ନଷ୍ଟସ୍ପନ୍ଦେଷ୍ଟୁ ମିଚ୍ଛନ୍ । ଶ୍ରେୟଃସ୍ଥାନେ ଚର୍ଦ୍ଧାରେଣ୍ଡୁଦମାଳଦମଳସ୍ନେହପୂରସ୍ୟପୂର୍ଣ୍ଣେ । ଇତି ନାଗଭୂଷଣ ଶତକେ ।

✦ —ଏତେକେ ହନୁମାନ ଆସିଲା । ଅର୍ଥ ଗୁଡ଼ରେ ସଧୁର୍ମିତା ଗୁଣ ଏ ପଦରେ ହେଲା । ତଦୁକ୍ତମଳଂକାରଶାସ୍ତ୍ରେ—

ଲ୍ଲିବକ୍ତ୍ୱଂ ସୁଶବ୍ଦତ୍ୱଂ ପର୍ଯ୍ୟାୟୋକ୍ତିଃ ସଧର୍ମିତା ।
ଚତ୍ୱାରୋଽର୍ଥଗୁଣାଃ ପ୍ରୋକ୍ତାଃ ପରେ ତ୍ୱନ୍ୟୈର୍ଦ୍ଧ ସଙ୍ଗତା ଇତି ।

ଯତ୍ର ବିଶେଷଣ ଦ୍ୱାରା ବିଶେଷ୍ୟ ଲାଭଃ ସା ମୂର୍ଦ୍ଧମିତା ଯଥା—ଅସ୍ମମୁଦ୍ରସ୍ଥିତ ନଦ୍ଧାଭଞ୍ଜନଃ ପର୍ଦ୍ଦିମୀନାମୁଦସ୍ତିତିବନାଳୀ ବାଳମନ୍ଦାର ପୁଷ୍ପମିତ

✱—ମୁକ୍ତାଫଳାସ୍ତୁ ଭରଣଂ ହରଣଂ ଫଳାସ୍ୱ ଭିତ୍ତ ! ଏ ବେଙ୍କ୍ୟାର୍ଥ— ବାଚ୍ୟାର୍ଥଶାସ୍ତ୍ରି ଳ ବେଙ୍ଗ୍ୟେ ଧନସ୍ତୁକାବ୍ୟମୁତ୍ତମମିତି ସାହିତ୍ୟେ ।

ବର୍ଷେ ସେ । ବିହରଇ ଲଙ୍କାରେ ସ୍ୱଭାବବଶେ । ବନ୍ଧନ ପାଏ
ରକ୍ଷରଜରବାସେ ସେ । ୬ ।

ବୋଇଲେ ଦାଶରଥି ସୀତା ସେ ପୁଣି । ତାଙ୍କ କନ୍ଧ ପଡ଼ିବା
ଯୋଗବାରୁଣୀ ସେ । ବୋଲୁଅ ତୁ ପାବନି ପାବନ କର ।
ବିଧିରେ ତା ମଜ୍ଜନେ ମୁଁ ରତପର ସେ । ୭ ।

---

ମାରୁ ସିଂହିକାକୁ ) ବର୍ଷେ ( ମାରେ ) ସ୍ୱଭାବବଶେ ( ବାନରମାନେ ଶାଖାରେ ବିହରନ୍ତି ସେହି ସ୍ୱଭାବରେ ବଶ ହୋଇ ) ଲଙ୍କାରେ ( ରାକ୍ଷସ ପୁରରେ ) ବିହରଇ (ବିହରିଲେ) ତେଣୁ ରକ୍ଷରାଜବାସେ ( ରାବଣ ଗୃହରେ ) ବନ୍ଧନ ପାଏ । ବେଙ୍ଗାର୍ଥ—ଅଞ୍ଜନ ଆରଞ୍ଜିତ ସିଦ୍ଧି ବ୍ୟକ୍ତ କରି (ଯେପରି ନେତ୍ରକୁ ଝଟେତାଭାବରେ ଅଞ୍ଜନ ଦ୍ୱାରା ରଞ୍ଜିତ କରୁଥିବା ଜନ ) ବିପଥ ( ବିଶେଷ ରୂପରେ ବାଟ ) ଦୃଶ୍ୟ ( ଦେଖେ ) ତମଜନତା ( ଅନ୍ଧାରକଣା ରୋଗକୁ ) ବର୍ଷି ( ନାଶକରେ ) 'ତଦ୍ରୂପ -ଆକାଶପଥ ରୋଧକାରୀ ସିଂହିକାକୁ ମାରିଗଲା ଏହି ଭାବ' । 'ପୁଣି ଯେଉଁ ଜନ' ସ୍ୱଭାବବଶେ (ଦୁଃସ୍ୱଭାବବଶରୁ) ¹ଲଙ୍କାରେ ( କୁଳଟାମାନଙ୍କ ସଙ୍ଗରେ ) ବିହରଇ ( କ୍ରୀଡ଼ାକରେ ) ସେ ପାଏ ( ପାଦ ) ବନ୍ଧନ 'ହୋଇ' ଚୋରବାସେ ( ବନ୍ଦିଘରେ ) ରକ୍ଷ ( ରହେ ) । 'ତଦ୍ରୂପ ହନୁମାନ୍ ଲଙ୍କାରେ ସ୍ୱଭାବବଶରୁ ଡାଳ ଭାଙ୍ଗି ବନ୍ଧହେଲା ଏହିଭାବ' ।୬।

୭ମ ପଦ—ଏମନ୍ତ ଅଙ୍ଗଦେ କହିବାର ଶୁଣି, ଦାଶରଥି ( ରାମ ) ବୋଇଲେ ସେ ପୁଣି ସୀତା ( ଗଙ୍ଗା ) 'ହେଲେ', 'ତାଙ୍କର ତୋହର ପଡ଼ିବା' ତାଙ୍କ *ବାରୁଣୀ ଯୋଗ ପଡ଼ିବା 'ପ୍ରାପ୍ତ' ହେଲା । 'ସେ କାରୁପେ ପଡ଼ିଲା ତାହା' କହ । ତୁ ପାବନ ( ପବନ ପୁତ୍ର ) ବୋଲଅ କିମ୍ବା ପାବନ ( ପବିତ୍ର କରୁ ) ବୋଲଅ 'ଶୁ ମୋତେ ପାବନ ( ପବିତ୍ର ) କର । ମୁଁ ବିଧିରେ ( ଅର୍ଥାତ୍ ହୋଇ ) ତା ମଜ୍ଜନେ ( ସେ ସୀତାଙ୍କ ମଜ୍ଜନ ବିଷୟରେ ) ¹ରତପର ( ଆସକ୍ତ ) ହୋଇଅଛି' । ଯେରୂପେ ଲୋକେ ଗଙ୍ଗାରେ

---

୧—ଲଙ୍କା ଋଷିପୁଷ୍ପଶାଖା ଡାକିନୀ କୁଳଟାସୁ ଚୈତ୍ର ମେଦିନୀ ।

*ମଧୁକୃଷ୍ଣ ତ୍ରୟୋଦଶ୍ୟାଂ ଶନୌ ଶତଭିଷା ଶୁଭେ ଇତି ॥

୧—ରତପରେ ପ୍ରସିଦ୍ଧାସକ୍ତାବିତ୍ୟମରଃ ॥

ନବଗରେ ହନୂମାନ କଥନ ଗୃରୁ । ବରତରୁଣୀ ବାସେ ଚନ୍ଦନ ତରୁ ଯେ । ବେଷ୍ଟିତ ନିଶାଚରୀ ନାଗାବଳୀରେ । ବିଲୋକଲ ଅତ୍ୟନ୍ତ ରମ୍ୟ ବନରେ ଯେ । ୮ ।

ବିଶ୍ୱଜନକଚିତ୍ତହରଣୀ ତହିଁ । ବିଭ୍ରମ ହେଲ ନିଶ୍ଚେ ହିରଣୀ ଏହି ଯେ । ବିରହ ସୂତ ଯୋଗ ସତ ସୁରୂପା । ବାମକର କଟପାଳେ ଚଣ୍ଡୀ ସ୍ୱରୂପା ଯେ । ୯ ।

---

ବାରୁଣୀଯୋଗ ଥିଲେ ପଞ୍ଚେ ହେବାପାଇଁ ବିଧିଅନୁସାରେ ସ୍ନାନ କରିବାକୁ ଉତ୍ସୁକ ହୁଅନ୍ତୁ ମୁଁ ସେହିପରି ଏହି ତାତ୍ପର୍ଯ୍ୟାର୍ଥ । ୭ ।

୮ମ ପଦ – ଏମନ୍ତ ରାମଚନ୍ଦ୍ର କହିବାର ଶୁଣି, ହନୂମାନ୍ ବେଗରେ ଗୃରୁ ( ମନୋହର କଥା ) କଥନ ( କହିଲେ ) । ବରୁଣୀବର ( ସୀତା ) ବାସେ ( ସୌରଭରେ ) ଚନ୍ଦନ ତରୁ 'ତୁଲ୍ୟ' । 'ଚନ୍ଦନବୃକ୍ଷ' ନାଗାବଳୀରେ ( ସର୍ପମାନଙ୍କରେ) ବେଷ୍ଟିତ 'ହୋଇଥାଏ' । 'ଏ ବରାଙ୍ଗନା ସୀତା' ନିଶାଚରୀ 'ରୂପ' ନାଗବଳୀରେ (ନାଗସମୂହରେ) ବେଷ୍ଟିତ ହୋଇଅଛୁ । ଚନ୍ଦନବୃକ୍ଷ ଅତ୍ୟନ୍ତ ରମ୍ୟବନରେ ( ଶ୍ରୀଖଣ୍ଡାଚଳରେ ) 'ଦେଖାଯାଏ' 'ସେ ସୀତାଙ୍କୁ' ଅତ୍ୟନ୍ତ ରମ୍ୟ ( ରମଣୀୟ ) ବନରେ ବିଲୋକଲ ( ଦେଖିଲ ) । ୮ ।

୯ମ ପଦ—[୧]ବିଶ୍ୱଜନକ ( ସଂସାରସ୍ଥ ଜନମାନଙ୍କର ) ଚିତ୍ତହରଣୀ (ମନୋହାରଣୀ) କିମ୍ବା ବିଶ୍ୱଜନ (ସଂସାରସ୍ଥ ଜନମାନଙ୍କର ) [୨]କ (ସୁଖସ୍ୱରୂପ ଆପଣଙ୍କ ) ଚିତ୍ତହରଣୀ ( ମନୋହାରିଣୀ ) 'ଅଟନ୍ତି' । ତହିଁ ( ତାଙ୍କଠାରେ ) ବିଭ୍ରମ ( ମୋହର ବିଶେଷରେ ଭ୍ରମ ) ହେଲ ନିଶ୍ଚେ ଏହି [୩]ହିରଣୀ (ସୁବର୍ଣ୍ଣ-ପ୍ରତିମା ) । 'ଏହାଦ୍ୱାରା ଭ୍ରମ ସୂଚିତ ହେଲ' । ବିରହ ( ବିଚ୍ଛେଦ ) [୪]ସୂତ ( ପାରଦ ) ହେଲ । 'ତାହା' ଯୋଗ ( ସଂଯୋଗରୁ ) ସୁରୂପା ( ଉତ୍ତମ

---

୧—ଜନାନାଂ ସମୂହୋ ଜନକଂ—ସମୂହାର୍ଥେ କ ପ୍ରତ୍ୟୟଃ ।

୨—ସୁଖଶୀର୍ଷ ଜଲେଷୁ କମିତ୍ୟେକାକ୍ଷରଃ ।

୩—ହିରଣୀ ହିରଣ୍ୟାସ୍ୱାଂ ତ ନାରୀ ଭିଦ୍‌ବୃନ୍ଦଭେଦୟୋଃ । ସୁବର୍ଣ୍ଣ ପ୍ରତିମାୟାଂ ଚେତି ମେଦିନୀ ॥

୪—ସୂତସ୍ତୁ ସାରଥୌ ତକ୍ଷଣି କ୍ଷତ୍ରିୟ ବାହୁଣୀସୂତେ । ଗନ୍ଧ ପାରଦୟୋଃ ପୁଂସୀତି ମେଦିନୀ ॥

ବିଷମଶର ବ୍ୟାଧ ହରିଣୀ କରି । ବିଚ୍ଛେଦ ଘାଣ୍ଟ ଜଗି ବାଣ ପ୍ରହାରି ଯେ । ବିଶେଷେ ପୁଙ୍ଖ ବ୍ୟକ୍ତ ଛବିକି ବହି । ବହିବାର କ୍ଷତଜଟି ନୀର ହୋଇ ଯେ । ୧୦ ।

ବିସ୍ମରିଲି ଏ ଚିତ୍ରପ୍ରତିମା ପୁନ । ବିଧାତା କେତେ ବସି କଲେ ଲେଖନ ଯେ । ବାୟୁସଂଯୋଗ ସାର୍ଥ ପଦ୍ମାପଦ । ବିତରଣ କୁସୁମ-ସ୍ୱେଦ ମରନ୍ଦ ଯେ । ୧୧ ।

---

ରୂପବତୀ ସୀତା) ସ୍ୱରୂପା ( ଶୁଦ୍ଧ ରୂପାପରି ) 'ଦିଶୁଅଛନ୍ତି' । 'ସୁନାରେ ପାଣି ଲାଗିଲେ ରୂପାପରି ଦିଶେ' । ସତ ( ଏକଥା ମିଥ୍ୟା ନୁହେ ) । ଏହଦ୍ୱାରା ବୈବର୍ଣ୍ଣ୍ୟ ସୂଚିତ ହେଲା । ବାମକର କପୋଳେ ( ବାମହସ୍ତକୁ ଗଣ୍ଡସ୍ଥଳରେ ଦେବାରୁ ସେ ଚଣ୍ଡୀ ସ୍ୱରୂପା ( କୋପନା ସ୍ତ୍ରୀ ସମାନ ) ହୋଇଅଛନ୍ତି ।୯।

୧୦ମ ପଦ—ବିଷମଶର ( କନ୍ଦର୍ପରୂପ ) ବ୍ୟାଧ ହରିଣୀ ( ମୃଗୀ ) କରି ( ଜ୍ଞାନରେ) ବିଚ୍ଛେଦ 'ରୂପ' ଘାଣ୍ଟ ଜଗି ବାଣ ପ୍ରହାରି ( ପ୍ରହାରୁଛି) । 'ତେଣୁ' ବିଶେଷେ ( ବିଶେଷରେ ) ପୁଙ୍ଖ ( କାଣ୍ଡ ଭେଦଯାଇ ପଛଭାଗରେ ଥିବା ପକ୍ଷ ପ୍ରାନ୍ତ) ବ୍ୟକ୍ତ ଛବିକି ବହି 'ଅଛନ୍ତି' । 'ଏହାଦ୍ୱାରା ରୋମାଞ୍ଚ ସୂଚିତ ହେଲା' । ବହିବାର ( ବୋହିପଡ଼ୁଥିବା ) କ୍ଷତଜ ( ଶରଘାତ ଜନିତ ରକ୍ତ ) [୧]ନୀର ହୋଇ (ସ୍ୱେଦଜଳ ରୂପରେ ବହୁଇ) । ଏହାଦ୍ୱାରା ସ୍ୱେଦ ସୂଚିତ ହେଲା ।୧୦।

୧୧ଶ ପଦ—ପୁନ ( ପୁଣି ) ବିସ୍ମରିଲି ଏ [୧]ଚିତ୍ରପ୍ରତିମା ( ଆଲେଖ୍ୟ ପ୍ରତିମା ) 'ଏହାଙ୍କୁ' କେତେ ବିଧାତା ବସି ଲେଖନ କଲେ ଏ ଏକ ବିଧାତା-ନିର୍ମିତ ନୁହନ୍ତି । ଏହାଦ୍ୱାରା ପୁଣି ଭ୍ରାନ୍ତି ସୂଚିତ ହେଲା । ପଦ୍ମା· 'ଏମନ୍ତ ଯେଉଁ' ପଦ 'ସେ' ବାୟୁସଂଯୋଗ ( ପବନାନ୍ଦୋଳିତ ପଦ୍ମିନୀ ) ସାର୍ଥ (ସଫଳ) 'ହୋଇଅଛି' । ଯେରୂପ ପବନ ଯୋଗରେ ପଦ୍ମଫୁଲ ଥରେ, ସୀତା ସେହିପରି ଥରୁଅଛନ୍ତି' ଏହିଭାବ । 'ଏହାଦ୍ୱାରା ବେପଥୁ ସୂଚିତ ହେଲା' ।

---

୧—ବପୁର୍ଜଳୋଦ୍‌ଗମଃ ସ୍ୱେଦୋ ରତିଘର୍ମଶ୍ରମାଦିଭିଃ ଇତି ॥

୧—ଚିତ୍ରଂ ସ୍ୟାଦଦ୍ଭୁତାଲେଖ୍ୟ ଚିତ୍ରକେଷୁ ବିହାୟସୀତି ବିଶ୍ୱଃ ।

ବଚନେ ଆଣେ ଅବା ଈଶ ସେ ଈଶୀ । ବାର ନୁହଇ ଯେଣୁ ବିଗତ ଶଶୀ ଯେ । ବହରୁଅଛୁ ଭିନ୍ନରୂପେ ପ୍ରଳୟ । ବାଧିବାରୁ ସାତ୍ତ୍ୱିକ୍ୟ ସେ କ୍ଷୀଣକାୟ ଯେ । ୧୨ ।

ବରହ୍ୱଣୀ ଏ ପୁରେ ଆଉ ସେ ବିନା । ବାମା କପାଇଁ ଥିବ କଲି କଳ୍ପନା ଯେ । ବରହ୍ୱଣୀ ବା ଥିବ ଏ ଶୋଭା ପର । ବାରବେଦ ଭୁବନେ କାହିଁ ସୁନ୍ଦରୀ ଯେ । ୧୩ ।

---

ପଦ୍ମ ( ଲତା )ʼକୁସୁମ ( ପଦ୍ମଫୁଲକୁ ) ʼମଦେ ( ମକରନ୍ଦ ) ବିଗରଣ ( ଭାଳ ) 'କରେ'; 'ସୀତା ନେତ୍ର ପଦ୍ମକୁ' ଅଶ୍ରୁ ( ଜଳ ) ବିଗରଣ 'କରୁଅଛନ୍ତି' । ଏହାଦ୍ୱାରା ଅଶ୍ରୁ ସୂଚିତ ହେଲା । ୧୧ ।

୧୨ଶ ପଦ—ସେ ( ସୀତା ) ବଚନେ (ବାକ୍ୟରେ) ଈଶ ( ଦେ ଈଶ ହେ ନାଥ ) 'ବୋଲି' ଆଣେ ( ଆଣନ୍ତି ) ଅବା 'ତାପବଶରୁ' ଈଶୀ 'ବୋଲି ଆଣନ୍ତି' 'ସେ କଥା' ବାର ନୁହଇ । ଯେଣୁ ବିଗତ ଶଶୀ (ବିଗତ ହୋଇଥାଏ ଶଶୀ ଏ ଦୁଇବର୍ଣ୍ଣ ଯେଉଁ କଥାରୁ ଈଶ କ ଈଶୀ ବୋଲୁଅଛୁ ତାହା ଜଣା ପଡୁନାହିଁ ) । ଏହାଦ୍ୱାରା ସ୍ୱରଭେଦ ସୂଚିତ ହେଲା । ବିଗତ ଶଶୀ ( ଚନ୍ଦ୍ର ଲୋପ ହେବାରୁ ) ପ୍ରଳୟ 'ହେଲା' ସେହି ପ୍ରଳୟ ରୂପ ସାତ୍ତ୍ୱିକ୍ୟ ଭିନ୍ନରୂପେ ( ନଷ୍ଟ ଚେଷ୍ଟାରୂପେ ) ବହୁରୂଅଛୁ । ଏରୂପେ ୧ ସାତ୍ତ୍ୱିକ୍ୟ 'ବିକାରମାନେ' ବାଧିବାରୁ ସେ ( ସୀତା ) କ୍ଷୀଣକାୟ 'ହୋଇଅଛନ୍ତି' । ୧୨ ।

୧୩ଶ ପଦ—ଏ (ଲଙ୍କା ) ପୁରେ ସେ ( ସୀତାଙ୍କ ) ବିନା ଆଉ ବାମା ବରହ୍ୱଣୀ ହୋଇ କର୍ମାଥିବ 'ଏମନ୍ତ ମନରେ' କଳ୍ପନା କଲି ବା ( ଅଥବା ) ବରହ୍ୱଣୀ ଥିବ 'କନ୍ତୁ' ଏ ଶୋଭାପର (ଏରୂପ ରୂପବତୀ ) ସୁନ୍ଦରୀ ବାର ବେଦ ( ଚଉଦ ) ଭୁବନେ କାହିଁ ( ନାହିଁ ) । ୧୩ ।

---

୨—ମକରନ୍ଦୋ ମରନ୍ଦୋଽପି ମଧୁପୁଷ୍ପ ରସସ୍ତଥେତି ପର୍ଯ୍ୟାଳଃ ।

୩—ଅଶ୍ରୁ ନେତ୍ରୋଦ୍ଭବଂ ବାରି କ୍ରୋଧଦୁଃଖପ୍ରହର୍ଷଜଃ ।

୧—ସ୍ତମ୍ଭଃ ସ୍ୱେଦୋଽଥ ରୋମାଞ୍ଚଃ ସ୍ୱରଭେଦଶ୍ଚ ବେପଥୁଃ ।
ବୈବର୍ଣ୍ଣ୍ୟ ମଶ୍ରୁ ପ୍ରଳୟ ଇତ୍ୟଷ୍ଟୌ ସାତ୍ତ୍ୱିକାଃ ସ୍ମୃତାଃ । ଇତି ଦର୍ପଣେ ।

ବିଂଶତିପାଣି ମିଳ ଏହି ସମସ୍ତୁ । ବିଚ୍ଛେଦନ କଲା ମୋ ଚିତ୍ତୁଁ ସଂଶୟ ଯେ । ବନାନ୍ତ ବିରଚନ ଉନ୍ନତି ତେଜ । ବଧିର ପର ଧୀର କଦା ନ ମଜ୍ଜ ଯେ । ୧୪ ।

ବନ୍ଧ ଗଲ ଯେ କଣ୍ଠ ମାଷଙ୍କେ ତୋର । ବଲ୍ଲଭିକୁ ଦେଖାଅ ନୋହିଲେ ମୋର ଯେ । ବଲ୍ଲଖି ହେବୁ ଏଥି ସଂଶୟ ନାହିଁ । ବ୍ରହ୍ମାଣ୍ଡେ ଅଧିକାଶ ଅଛଇ ମୁହିଁ ଯେ । ୧୫ ।

ବ୍ରହ୍ମାଦ୍ୟଙ୍କେ ରଖିବ ଦେଖିବ ଦେଖି । ହୋଇଲେ ଏତେ ନ ସହି ତା ସୁମୁଖୀ ଯେ । ବଜ୍ରପାତକୁ ଉରିକରି ସାରଙ୍ଗ । ବାରିଧର ଆଶାକୁ ଛାଡ଼ିଛି ଅଙ୍ଗ ଯେ । ୧୬ ।

---

୧୪ଶ ପଦ—ଏହି ସମସ୍ତୁ (ମୁଁ ଏରୂପ ବିସ୍ମୃତ ହୋଇ ସମସ୍ତରେ) ବିଂଶତି-ପାଣି (ରାବଣ) ମିଳି ମୋ ଚିତ୍ତୁଁ (ମୋ ମନରୁ) ସଂଶୟ ବିଚ୍ଛେଦନ (ଦୂର) କଲା । ଉନ୍ନତ (ଗର୍ବ) ତେଜ ବନାନ୍ତ (ବନସ୍ଥ) ବିରଚନ (ରଚନା କଲା) ଅର୍ଥାତ୍ ବନସ୍ଥ କରି କହିଲା । ଧୀର (ସେହି ସୀତା) ବଧିରପର (କାଲୁଣୀ ପ୍ରାୟ) କଦା (କେତେବେଳେ) ନମଜ୍ଜ (ଶୁଣିଲେ ନାହିଁ) । ୧୪ ।

୧୫ଶ ପଦ—ସେ (ରାବଣ) କଣ୍ଠ ବନ୍ଧ (କରି) ଗଲା । ମାଷଙ୍କେ (ମାସକ ମଧ୍ୟରେ) ତୋର ବଲ୍ଲଭିକୁ ଦେଖାଅ ନୋହିଲେ ମୋର ବଲ୍ଲଖି (ଭାର୍ଯ୍ୟା) ହେବୁ; ଏଥି (ଏ ବିଷୟରେ) ସଂଶୟ ନାହିଁ । 'ଯେଣୁ' ମୁଁ ବ୍ରହ୍ମାଣ୍ଡେ (ବ୍ରହ୍ମାଣ୍ଡର) ଅଧିକାଶ ଅଛଇ ।୧୫।

୧୬ଶ ପଦ—ବ୍ରହ୍ମାଦ୍ୟ (ବ୍ରହ୍ମାଆଦି) ଙ୍କେ (କେଉଁ ଦେବତା) ଦେଖି 'ତୋତେ' ରଖିବ (ରକ୍ଷା କରିବ) 'ଆମ୍ଭେ ତାହା' ଦେଖିବା । ସୁମୁଖୀ (ସୀତା) ତା (ସେହି ରାବଣର କଥା) ନ ସହି (ସହି ନପାରି) ଏତେ (ଏତକ ମାତ୍ର) ହୋଇଲେ । ସାରଙ୍ଗ (ଚାତକପକ୍ଷୀ) ବଜ୍ରପାତକୁ ଡରି କରି ୧ ଅଙ୍ଗ (ପୁଣି) ବାରିଧର (ମେଘ) ଆଶାକୁ ଛାଡ଼ିଛି କି ? (ଛାଡ଼ିନାହିଁ), ସେହିପରି ତୋତେ ଡରି ରାମଙ୍କ ଆଶା ଛାଡ଼ିବି ନାହିଁ ଏହିଭାବ । ୧୬ ।

---

୧—ପୁନରପେ ଚଙ୍କ ନିବାଶ୍ଚାଂଦୁଷ୍ଟ ସନ୍ତୁଷ୍ଟ ପ୍ରିଣଂସନେ ଇତ୍ୟମରଃ ।

ବାହୁଜ କେତେ ନାହିଁ କେ ପାରେ ଭକ୍ଷି । ବହ୍ନି କଣଙ୍କୁ ଯଥା ଚକୋର ପକ୍ଷୀ ଯେ । ବଧିବ ନଷ୍ଟେ ଥାଅ ଅଳ୍ପ ଦିବସ । ବୀରକେଶ ଆଉଁଷି ଗଲ ଲଙ୍କେଶ ଯେ । ୧୭ ।

ବସ୍ତୁ ଶୁଣି ରାମ ଶ୍ୱାସ ପକାଇ । ବୋଇଲେ ମୁଁ ସୁଧାଂଶୁ ହୃଦୟସ୍ଥାୟୀ ଯେ । ବୋଧକର ଅସର ରାମାରେ ହେଲ । ବିଧି ଜୀବନେ ଥାଉଁ କ ଶୁଣାଇଲ ଯେ ।

ବାଞ୍ଛା ନତାନତ ସରଣି ଧୀବର । ବେଗେ ହେବାକୁ ଯାଏ କର

୧୭ଶ ପଦ—ବାହୁଜ ( ପକ୍ଷୀ ) କେତେନାହିଁ ? ( ବହୁତ ଅଛନ୍ତି ) । ବହ୍ନି କଣଙ୍କୁ ( ଅଗ୍ନି କଣାକୁ ) କେ ( କେହି ) ଭକ୍ଷି ପାରେ କି ? ( ପାରଇ ନାହିଁ ) । ଯଥା ( ଯେମନ୍ତ ) ଚକୋର ପକ୍ଷୀ 'ଅଗ୍ନି କଣ ଭକ୍ଷଣ କରେ ତେମନ୍ତ ମୁଁ, ମୋତେ ରାମ ଭୋଗ କରିବେ' । ଅଳ୍ପ ଦିବସ 'କନ୍ତ' ଥାଅ ନଷ୍ଟେ ବଧିବ 'ଏହା କହି' ଲଙ୍କେଶ ( ରାବଣ ) 'ସକ୍ରୋଧେ' ବୀରକେଶ (ନିଜ) ଆଉଁଷି ଗଲ । ୧୭ ।

୧୮ଶ ପଦ—ଶୁଣି ( ହନୁମାନ୍‌ଠାରୁ ଏହାଶୁଣି ) ରାମ ଚିନ୍ତ୍ୟ 'ହୋଇ' ଶ୍ୱାସ ( ନିଶ୍ୱାସ ) ପକାଇ ବୋଇଲେ ସୁଧାଂଶୁ ( ଚନ୍ଦ୍ର ) ହୃଦୟ୍ସ୍ଥାୟୀ ( ଅଙ୍କସ୍ଥିତ ମୃଗ ) ମୁଁ ( ମୃଗ ନାମ ରାମ ଓ ମୋ ନାମ ରାମ ) ଏହାଦ୍ୱାରା ଉର୍ପାଡିଶର୍ଯ୍ୟ ସୂଚିତ ହେଲେ । ରାମାରେ (ମୋ ରାମାଠାରେ) [୧]ଅସର (ଅସୁର) ବୋଧକର ( ବୈତାଳିକ ପ୍ରାୟ ) ବୋଧକର ହେଲ । 'ଏହା ପୁଣି ହେଲ, ମୋ ରମାକୁ ଅସୁର ବେଧି ନେଲ ଏହିଭାବ' । ଅଥବା ନିଶ୍ୱାସ ପକାଇ ବୋଇଲେ ମୁଁ ସୁଧାଂଶୁ ( ଚନ୍ଦ୍ର ); ରାମାରେ ବୋଧକର ଅସର ( ତ୍ରିସ୍ୱା ବୋଧକାରୀ ଅସୁର ) ହୃଦୟସ୍ଥାୟୀ ( କଳଙ୍କ ) ହେଲ, ବିଧି ( ବିଧାତା ) ଜୀବନେ ( ମୁଁ ପ୍ରାଣରେ ) ଥାଉଁ 'ମୋତେ' କି ଶୁଣାଇଲ । 'ମୁଁ ଜୀଇଁ ଥାଉଁ ମୋ ଭାର୍ଯ୍ୟାକୁ ରାବଣ ଦୁଃଖ କହିଲ । ଏହା ଶୁଣିଲି ଧିକ୍ ଜୀବନ ଏହିଭାବ' ॥

୧୯ଶ ପଦ—ଏ ପଦ ଲକ୍ଷିତ ଲକ୍ଷଣା-ବାଞ୍ଛା ( ଏହି କାମନା ହେଲ ) [୧]ନତାନତ [୨]ସରଣି ( ବନ୍ଧୁର—ପ୍ରିସ୍ତାର ) [୩]ଧୀବର ( ଦାସ ) ବେଗେ

୧—ବିଦ୍ୟାଦୋଃସପ ଆସର ଇତ୍ୟମରଃ ।
୨—ବନ୍ଧୁରଂ ତୁ ନତାନତମିତ୍ୟମରଃ । ୨ ସରଣିଃ ପଂକ୍ତିବର୍ତ୍ମନୋରିତି ଭସଃ
୩—କୈବର୍ତ୍ତୈଦାସଧୀବର୍ଧିବତ୍ୟମରଃ ।

ମୟୂର ଯେ । ବସି ମଧ୍ୟେ ଶ୍ରୀଷମ ରଚନାବଳେ ; ବରଦ ଗାଧପାତ୍ର ସ୍ୱନାମେ କଲେ ଯେ । ୧୯ ।

ବଳିସେ ହଂସ ବାଞ୍ଛାସରେ ଏସନ । ବରତ କରିଥିଲ ସିନା ପ୍ରସନ୍ନ ଯେ । ବାଟ ତ ଦେଖାଇଲୁ ଏଥିଉତ୍ତରୁ । ବିଧାନ କହ କ କହୁଛି ସେ ଖିରୁ ଯେ । ୨୦ ।

ଟେବାଲେ କର କୋରକ କରି ମାରୁତ । ବିନାଶ ହେଲା ଏହି ସମୟେ ରତ୍ତି ଯେ । ବୃଦ୍ଧଗଣ୍ଡ ଜ୍ଞାସ୍ନାନେ ଏକା ସଞ୍ଚର । ବେଶ ମହିଳା-ମଣି ମହୀକ କରି ଯେ । ୨୧ ।

---

ହେବାକୁ ମୟୂର (ଶିଖୀ—ଅଗ୍ନିକୁ) ପ୍ରାପ୍ତି କରି (ଜାଳି) ମଧ୍ୟେ ( ତାମଧ୍ୟରେ ) ବସି ୪ଶ୍ରୀଷମ (ତପ—ତପସ୍ୟା) ରଚନା ବଳେ ସ୍ୱନାମେ (ସୀତା-ଗଙ୍ଗାରେ) ଗାଧପାତ କଲେ (ଝାସ ଦେଲେ) ୫ବରଦ (ପ୍ରସନ୍ନ) 'ହେବ' ।୧୯।

୨୦ଶ ପଦ—ହଂସ ବାଞ୍ଛାସରେ ( ମାନସ ସରୋବରରେ ) ବଳସେ ( ବଳସୁ ଅଛୁ ); ଏସନ ( ଏପରି ପଞ୍ଚାଗ୍ନି ସ୍ଥାପି ତା ମଧ୍ୟରେ ବସି ତପ କରି ଗଙ୍ଗାରେ ଝାସ ଦେଇ ) 'ଏମାନେ' ବରତ ( କରି ) 'ତାଙ୍କୁ' ପ୍ରସନ୍ନ କରିଥିଲ ସିନା, 'ତେଣୁ ବନ୍ଧୁର ଦାସ ହୋଇଥିଲ' । ଏଥିଉତ୍ତରୁ 'ହନୁମାନଙ୍କୁ କହିଲେ' 'ଏବେ' ବାଟତ ଦେଖାଇଲୁ ସେ ଭୀରୁ ( ସୀତା ) କ ବିଧାନ ( କ କ ବାର୍ତ୍ତା ) କହୁଅଛୁ 'ତାହା ମୋତେ' କହୁ । ୨୦ ।

୨୧ଶ ପଦ—'ରାମ ପଗ୍ରହରେ' ମାରୁତି (ହନୁମାନ) କର କୋରକ କରି ( ହାତଯୋଡ଼ି ) ବୋଲେ ଏହି ସମୟେ ରାତ୍ରି ବିନାଶ ହେଲା ( ପ୍ରଭାତ କାଳରେ ) ବୃଦ୍ଧ ଗଣ୍ଡ ଜ୍ଞାସ୍ନାନେ (ବୃଦ୍ଧ ଗଣ୍ଡକୀ ନଦୀକି ସ୍ନାନ କରିବାପାଇଁ ) ମହିଳାମଣି ( ସୀତା ) ମହୀକ ( ପୃଥ୍ୱୀଦେବୀଙ୍କ ) ବେଶ କରି ( ସୁବେଶ କଲାପରି) ଏକା 'ହୋଇ' ସଞ୍ଚରି (ସଞ୍ଚାରିଲେ) ।୨୧।

---

୪—ଇଷୁ ଉଷ୍ଣାର୍ଣ୍ଣମସ୍ତପ ଇତ୍ୟମରଃ ।

୫—ଅଥବରଦାସ୍ତ୍ରିଷ୍ୱାଂ କନ୍ୟାସ୍ୱାଂ ବାଚ୍ୟଲିଙ୍ଗସ୍ତୁ ପ୍ରସନ୍ନେ ଚ ସମର୍ଦ୍ଧକେ ଇତି ମେଦିନୀ ।

ବକ୍ଷକୁ ଅଶ୍ରୁଧାର ହାରକୁ ଦେଇ । ବାନ୍ଧି ଜବାଚରଣେ ଗଳାକୁ ଯାଇ ଯେ । ବଳଯେ ପାଶେ ଭୃଙ୍ଗ ଭୃଙ୍ଗୀନିକର । ବାଜେଣୀବଳା ପରଦାନ ପ୍ରକାର ଯେ । ୨୨ ।

ବଶ୍ରାମୁଁ କୃଷ୍ଣସାର ତଳରେ ଲେଶେ । ବାଳକ କୃଷ୍ଣସାରନେତ୍ରା ଅବଶେ ଯେ । ବସ୍ତାରୁଁ ତବ ନାମ ଥାଇ ନଗର । ବନ୍ଧିଲା ପ୍ରାୟ କୃଷ୍ଣ ସାରସଶର ଯେ । ୨୨ ।

ବସୋଉଁ ଯେ ସାରଙ୍ଗ ଯଥା କମଳେ । ଵଳସାଇଲେ ଦୃଷ୍ଟି ନବେ ଚଞ୍ଚଳେ ଯେ । ବଚନ ରଚନ କେ ସୁଧା ସିଞ୍ଚିଲା । ବନପ୍ରିୟ ତା ଶୁଣି ଧ୍ୱନି ମୁଞ୍ଚିଲା ଯେ । ୨୪ ।

୨୨ଶ ପଦ—'କିପରି ବେଶ କଲେ' ? ଅଶ୍ରୁଧାର (ଲୋତକଧାରରୂପ) ହାରକୁ (ହାର) ବକ୍ଷକୁ (ପୃଥ୍ୱୀର ବକ୍ଷସ୍ଥଳକୁ) ଦେଇ ଜବାଚରଣେ (ଚରଣରୂପ ଜବା ଫୁଲରେ) ଗଳାକୁ ବାନ୍ଧି ଯାଇ (ଗଲେ) ପାଶେ ବଳାସେ (ପାଖରେ ବଳସୁଥିବା) ଭୃଙ୍ଗ ଭୃଙ୍ଗୀ ନିକର (ଭ୍ରମରପନ୍ତି ରୂପ) ବାଜେଣୀବଳା ପରଦାନ (ପ୍ରଦାନ ।) ପ୍ରକାର 'ହେଲା' । 'ଶ୍ରୀଅଙ୍ଗ ସୁବାସ ପାଇ ଭ୍ରମର ଶ୍ରେଣୀ ଝଂକାର କରି ଗୋଡ଼ାଇଥିଲେ ଏହାଭାବ' । ୨୨ ।

୨୩ଶ ପଦ—ବାଳକ କୃଷ୍ଣସାରନେତ୍ରା (ବାଳମୃଗାକ୍ଷୀ ସୀତା,) ଅବଶେ (ଅବଶ ହେତୁରୁ) କୃଷ୍ଣସାର କୃଷ୍ଣସାର (ଶିଂଶପାବୃକ୍ଷ) ତଳରେ ଲେଶେ (ଲେଶମାତ୍ର) ବଶ୍ରାମୁ (ବଶ୍ରାମ କରନ୍ତେ) 'ସେ ସମୟେ' ନଗର (ସେହି ବୃକ୍ଷ ଉପରେ) ଥାଇ ତବ (ତୁମ୍ଭ) ନାମ ବସ୍ତାରୁଁ (ବସ୍ତାରଣ କରନ୍ତେ) କୃଷ୍ଣ (କନ୍ଦର୍ପ) ସାରସ ଶର (ପଦ୍ମଫୁଲ ଶରକୁ) ବନ୍ଧିଲା 'ପ୍ରାୟ ହେଲେ'॥

୨୪ଶ ପଦ— କମଳେ (ପଦ୍ମରେ) ସାରଙ୍ଗ (ଭୃଙ୍ଗ) ବସୋଉଁ (ବଶ୍ରାମ କରନ୍ତେ) ଯଥା (ଯେମନ୍ତ) 'ଶୋଭାପାଏ' ତଥା (ଦୃଷ୍ଟିକି) ଲବେ (ଲବମାତ୍ର) ଚଞ୍ଚଳେ ବଳସାଇଲେ (କଏ ରାମ ନାମ ଉଚ୍ଚାରିଲା

୧—କୃଷ୍ଣେ ଭୃଙ୍ଗ ପିକେଽଗୌ ଚ କାଦମ୍ବେ ଚ କଣ୍ଟକିନି ।
୧ୂରେ ସର୍ପେ ମନ୍ତ୍ରଭେଦେଽପି କଷ୍ଟେନ୍ଦୁ ପକ୍ଷକେ ସମେ ଇତି ଶବ୍ଦମାଳା ।

ବ୍ୟକ୍ତ ପରଚେ ଦୃଶ୍ୟ ମୁକୁଟ କୃଟ । ବଗୃର ନ ପଗୃର ବାଞ୍ଛା ପ୍ରକଟ ଯେ । ବ୍ୟବହାର ନ କରୁ ଦେଲି ମୁଁ ମୁଦା । ବଧୂ ହୋଇ ଫୁଟାଇ କୁମୁଦହୃଦା ଯେ । ୨୫ ।

ବନ୍ଧ୍ୟଶୃଙ୍ଗ ଉଦଯ୍ତ ତରଣି ପରି । ବକ୍ଷୋଜ ପରେ ଆଗ କରି ତା ଧରି ଯେ । ବୋଲି ଦେଲେ ସୁମୁଖୀ ଅନ୍ତର ମୁହିଁ । ବଭୁଶ୍ରୀକର କମ୍ପା ଗୁଞ୍ଜିଲୁ ତୁହ୍ନି ଯେ । ୨୬ ।

---

ବୋଲି ଘୁଞ୍ଚିଲେ ) । ଦେ ( ମୋତେ କଏ ) ସୁଧା ସିଞ୍ଚିଲା ( ଅମୃତ ସେଚନ ରୂପ ) ବଚନ ( କଥା ) ରଚନ 'କଲା' ( କହିଲା ) ତା ଶୁଣି ( ଏମନ୍ତ ସୀତା କହିବାର ଶୁଣି ) ବନପ୍ରିୟ ( କୋକଳ ) ଧ୍ୱନ ମୂର୍ଚ୍ଛିଲା ( ନ ଢଲା ) 'କୋକଳ ସ୍ୱରରୁ ସେ ସ୍ୱର ଅଧିକ ହେଲ ଏହି ଭାବ' । ୨୪ ।

୨୫ଶ ପଦ—ଚ୍ୟକ୍ତ (ମୋହର ମୂର୍ତ୍ତି ) ପରଚେ 'ହୃଅନ୍ତେ' (ତାଙ୍କୁ ଦେଖାନ୍ତେ ) ମୁକ୍ତଟ ଦୃଶ୍ୟ ( ସେ ମୋ ମୁକୁଟକୁ ଦେଖିଲେ ) 'ଏଣୁ' କୃଟ ବଗୃର ( କପଟ ମନେ କରି ) ବାଞ୍ଛା ପ୍ରକଟ ( ପ୍ରକାଶ୍ୟଭାବରେ ) ନ ପଗୃର ( ନ ପଗୃରଲେ ) 'ସେ' ୧ ବ୍ୟବହାର ( ନାନା ସନ୍ଦେଶ ହରଣ ) ନ କରୁଁ ମୁଁ ମୁଦା ଦେଲି । 'ସେ ମୁଦ୍ରିକା' ବଧୂ ( ଚନ୍ଦ୍ର ) ହୋଇ 'କୁମୁଦପରି' ସୀତାଙ୍କ ମୁଦ୍ରିତ ହୃଦୟକୁ ଫୁଟାଇଦେଲ' 'ସେ ତ' କୁମୁଦହୃଦା 'ତାଙ୍କୁ ପ୍ରଫୁଲ୍ଲ କଲ ଏହି ଭାବ' । ୨୫ ।

୨୬ଶ ପଦ—ବନ୍ଧ୍ୟଶୃଙ୍ଗ ( ବନ୍ଧ୍ୟପର୍ବତ ଶୃଙ୍ଗରେ ) ଉଦୟ ତରଣି ( ସୂର୍ଯ୍ୟ ଉଦୟ ହେଲ ) ପରି ବକ୍ଷୋଜ ପରେ ( ପୟୋଧର ଉପରେ ) ଆଗ କରି ତା ( ସେହି ମୁଦାକ ) ଧରି ( ଥୋଇ ) "ଦେବାରୁ ଦଶିଲ" । 'ଏହା ଦ୍ୱାରା ପ୍ରିୟାର ପୟୋଧରସ୍ପର୍ଶ ସୂଚିତ ହେଲ' । 'ଏ ଚକ୍ଷୁରୁ' ସୁମୁଖୀ ( ସୁମୁଖୀ ସୀତା ) ବୋଲି ଦେଲେ ( ସେ ମୁଦାକ କହଲେ ) ମୁହିଁ ଅନ୍ତର 'ହୋଇଥିଲି', ତୁହ୍ନି କମ୍ପା ବଭୁଶ୍ରୀକର (ପ୍ରଭୁଙ୍କ ଶ୍ରୀହସ୍ତକୁ) ଗୁଞ୍ଜିଲୁ * ॥

---

୧—ନାନାସନ୍ଦେଶହରଣୋ ବ୍ୟବହାର ଇତି ସ୍ମୃତିଃ । ଇତି କାତ୍ୟାୟନଃ ।

*—ପ୍ରିୟା ରକ୍ତୈ ମୟାରଣ୍ୟେ ରାମ ତ୍ୟକ୍ତ ତ୍ୱଯା ପଥି ।
ବଡ ମୁଦ୍ରେ ସୁରକ୍ଷୀଣାଂ ପ୍ରତ୍ୟୟଂ କଃ କରିଷ୍ୟତି ।

ବାରିପୂର୍ଣ୍ଣିତା କୁମ୍ଭେ ଇଚ୍ଛି ଭରତ । ବୋଇଲେ କାହିଁ କି କଥନ ଗୁପତ ଯେ । ବ୍ୟାଖ୍ୟାନ କଲି ମୁହିଁ ଦ୍ରୋଣଚରିତ । ବନାଳିକ କଟାକ୍ଷ ଭାବ ଯେମନ୍ତ ଯେ ।।୨୭।।

ବିରଚିତ୍ତ ଭାଷେ ଯେ ପ୍ରଭୁ ରୂପ । ବିଶୋଧନେ ଧ୍ୱଂସିଲା ମୁନିଙ୍କ ତପ ଯେ । ବିରତ ହେଲେ ଜନ୍ମାନ୍ତରେ ସଙ୍ଗତି । ବିଜନ୍ୟ ଭାଗ୍ୟ ମୋରେ ଏତେ ପୀରତି ଯେ । ୨୮ ।

ବିସର୍ଜି ନାହିଁ ପ୍ରାଣ ଏହି ମୋ କାମ । ବ୍ୟର୍ଥ ନୋହିବ ମଧୁଶଯ୍ୟା କୁସୁମ ଯେ । ବୋଲିବ ମନ ମୋର ସେହି ମୋହନେ । ବିଶ ହୋଇଛି ଏକା ରଜନୀ ଦିନେ ଯେ । ୨୯ ।

---

୨୭ଶ ପଦ—କୁମ୍ଭେ ( ବକ୍ଷୋଜକୁମ୍ଭରେ ) ବାରିପୂର୍ଣ୍ଣିତା (ନେତ୍ରଜଳ ପୂର୍ଣ୍ଣିତାକୁ ) ଇଚ୍ଛି (ଇଚ୍ଛିଲେ ) । 'ଶୁଭକାର୍ଯ୍ୟରେ ପୂର୍ଣ୍ଣ କୁମ୍ଭ ସ୍ଥାପନ କରିବାର ବିଧିଅଛି' 'ଶୋକାଶ୍ରୁରେ ବକ୍ଷସ୍ଥଳ ତିନ୍ତାଇଲେ ଏହି ଭାବ' । ବୋଇଲେ ( ମୋତେ କହିଲେ ) ଗୁପତ ( ଗୁପ୍ତକଥା ) କି କଥନ ( କହିଅଛନ୍ତି ) କହ । ମୁହିଁ ଦ୍ରୋଣ ଚରିତ ( ଚିତ୍ରକୂଟର କାକ ଚରିତକୁ ) ବ୍ୟାଖ୍ୟାନ କଲି ( କହିଲି ) 'ପୁଣି' ଯେମନ୍ତ (ଯେପରି) ୧ବନାଳିକାର ( ଗେରୁସମ୍ବନ୍ଧ ) ଚିହ୍ନ (ତିଳକ ) ଭାବ 'କହିଲି' । ୨୭ ।

୨୮ଶ ପଦ—ବିରଚିତ୍ତ (ସୀତା) ଭାଷେ ( କହିଲେ) । ଯେ ( ଯେଉଁ ) ପ୍ରଭୁ ରୂପ ( ପ୍ରଭୁଙ୍କ ସୌନ୍ଦର୍ଯ୍ୟ ) ମୁନିଙ୍କ ତପ ( ମୁନିମାନ ତପସ୍ୟାକୁ ) ବିଶୋଧନେ ( ବିଶୋଧନ କରି ) ଧ୍ୱଂସିଲା । 'ସେମାନେ କାମାର୍ତ୍ତ ହେବାରୁ' ବିରତ ହେଲେ ( ତାଙ୍କୁ ବରଦେଲେ ) ଜନ୍ମାନ୍ତରେ ସଙ୍ଗତି ( ଅନ୍ୟ ଜନ୍ମରେ ତାଙ୍କ ସଙ୍ଗେ ଆମ୍ଭର ମିଳନ ହେବ) ମୋରେ ( ମୋଠାରେ ) 'ତାଙ୍କର ଯାହା' ଏତେ ପୀରତି ( ପ୍ରୀତି ) ବିଜନ୍ୟ ( ବିଶେଷରେ ଜାତ ହୋଇଅଛି ) 'ଏଣୁ ମୋହର ବଡ଼' ଭାଗ୍ୟ । ୨୮ ।

୨୯ଶ ପଦ—ମୋ ଏହିକାମ ( ମୋର ଏରୂପ କାମନା ହେବାରୁ ) ପ୍ରାଣ ବିସର୍ଜି (ଛାଡ଼ି ) ନାହିଁ । ମଧୁଶଯ୍ୟା କୁସୁମ ( ଅନ୍ୟ ସ୍ତ୍ରୀ ର ଶରୀର ) 'ଏକଥା'

---

୧—ଗୈରିକଂ ତୁ ବନାଳକମିତ୍ୟମରକୋଷେ ।

ବିବୁଧ ନୋହେ ପାନ କର ପୀୟୁଷ । ବଗ୍ଭୋଗେ ଇକ୍ଷୁରସେ ହେବାକୁ ଅଂଶ ଯେ । ବନଜଜମା ବୋଲାଇ ସେ ସ୍ୱାଭ ନାହିଁ । ବିଷ-ବିଚ୍ଛୁରେ ପ୍ରୀତି ମଧୁପେ ସ୍ନେହ ଯେ । ୩୦ ।

ବୁଝାଇ ଏହା ଯେଣୁ ଆସ ଉଚିତ । ପାର ବୈରୀ ବଧି ରଖନ୍ତୁ କାର୍ତ୍ତି ଯେ. ଚକଳ ଥିଲେ ଦେବ ଅନଳେ ଝାସ । ବହନ୍ତି ଜନେ ଝାସ ଲଗାନ୍ତି ଦୋଷ ଯେ । ୩୧ ।

ବେଦନା ନିବେଦନା କଲେ ଯେତେକ । ବେଦ ପ୍ରବାସେ ହେବ କହୁଁ ପୁସ୍ତକ ଯେ । ବୋଲି ସେ ଶିରୋମଣି ଦେଲେ ଟମା କରେ । ବାହାଙ୍କୁ ପଠାଇଦେଲ ସଙ୍ଗରେ ଯେ । ୩୨ ।

---

ବ୍ୟର୍ଥ ନୋହେ । 'ହେ ମାରୁତି' ହେତୁ ଲୋକେ ( ସେହୁ ମୋହିନଙ୍କୁ ) ବୋଲିବ ମୋର ମନ ରଜନୀ ତନେ ( ତବାଗ୍ରହ ) ଏବା ( କେବଳ ) 'ତାଙ୍କଠାରେ' ବଶ ହୋଇଅଛି (ଅନ୍ୟ ପୁରୁଷରେ ନାହିଁ) । ୨୯ ।

୩୦ଶ ପଦ—'ପୁଣି କହିଲେ' ମୁଁ ବବୁଧ ( ଦେବତା ) 'କନ୍ତୁ ତାଙ୍କ ପର ମୋହର ଆଚରଣ' ନୋହେ 'କାରଣ; ସେ ପୀୟୂଷ ( ଅମୃତରସ ) ପାନ କରି ଇକ୍ଷୁରସେ ( ଲୁଚ ଆଁୟୁ ରସ ) ବଗ୍ଭୋଗେ (ଭୋଗରେ) ବଶ ହେବାକୁ 'ଅନାସକ୍ତ' । 'ପୁଣି ମୁଁ' ବନଜଜମା ( ପଦ୍ମ ) ବୋଲିଇ 'ଜନ୍ତୁ' ହେ ସ୍ୱାଭ ( ତ ହ୍ଲାଜ ବ୍ୟବହାର ) 'ମୋହର' ନାହିଁ । ସେ ବିଷ୍କବସୁରେ (ହୃଦୟଠାରେ) ପ୍ରୀତ 'କର' 'ପୁଣି ମଧୁପେ ( ଭ୍ରମରଠାରେ ) ସ୍ନେହ ହୁଏ । ଏହା ଦ୍ୱାରା ପଦ୍ମମାର ନ୍ୟତ୍ରୁଗୃହଣୀତ୍ଵ ସୂଚିତ ହେଲ । ୩୦ ।

୩୧ଶ ପଦ—ଏହା ବୁଝାଇ ଉଚିତ ( ବେଗେ ) 'ଗ୍ରମଙ୍କୁ' ଘେନ ଆସ । 'ସେ' ଯାର "ଗ୍ରମ" ବନ୍ଧୁବ୍ରୀ (ଶତ୍ରୁ ପ୍ରାବଣକୁ ) ବଧି କାର୍ତ୍ତି ରଖନ୍ତୁ । 'ତାହାଙ୍କର ମୋଠାରେ' ବକଳ ( ମଦେହ ) ଥିଲେ ଅନଳେ (ଅଗ୍ନିରେ) ଝାସ ଦେବ । ଦୋଷ ଲଗାନ୍ତେ ଜନେ 'ଅଗ୍ନିରେ' ଝାସ ବହନ୍ତି ( ଦିଅନ୍ତି ) 'ସେହିପରି ମୁଁ ଝାସ ଦେବ' । ୩୧ ।

୩୨ଶ ପଦ—'ସେ' ଯେତେକ ବେଦନା ( ହୃଦୟ କଷ୍ଟ ) ନିବେଦନା କଲେ (କହିଲେ) 'ତାହା କହୁଁ' (କହନ୍ତେ) ବେଦ ପ୍ରବାସେ ପୁସ୍ତକ ହେବ । 'ଏଣୁ ତାହା କହିବାର ନୁହେଁ । 'ତତ୍ପରେ' ଶିରୋମଣି ( ମଥାମଣି ) ମୋ'

ବକ୍ଷେ ଥୋଇଲେ ଯେହ୍ନ ମଣି ଯନ୍ତ୍ରକୁ । ବଧିରେ ଜପୁଥିଲେ, ନାମମନ୍ତ୍ରକୁ ଯେ । ବାଣ୍ଠି ଔଷଧ ଶ୍ରୁତିମୁଖରେ ପିଇ । ବେଗେ ତନ୍ଦ୍ରା-ଜ୍ୱରକୁ ଉଣା କରାଇ ଯେ । ୩୩ ।

ବାଳୀ ନାମମାଳୀକ ସବଗ ରଜ୍ଜୁ । ବଶେ ଗୁନ୍ଥିବଚନ ସେମାଳ ମଞ୍ଜୁ ଯେ । ବାରିଜମୁଖି ମାନୋପୃକ୍ତ ଈକ୍ଷଣା । ବନ୍ଧୂକଅଧର ପାଟଳୀଶ୍ରବଣା ଯେ । ୩୪ ।

ବିମଳ ତିଳଫୁଲ ନାସା ଶୋଭନ । ବର୍ଣ୍ଣ ଚମ୍ପାଶିରୀଷ ମୃଦୁଅଙ୍ଗିନ ଯେ । ବଞ୍ଜୁଳାଙ୍ଗୁଳି କାଞ୍ଚି ନଖଞ୍ଚକ୍ଷଣା । ବରଉତ୍ପଳ-ବାମି ଜିବାଚରଣା ଯେ । ୩୫ ।

---

କରେ (ମୋ ହସ୍ତରେ) ଦେଲେ । ସେ (ହନୁମାନ) 'ଏମନ୍ତ' ବୋଲି ବାପାଙ୍କୁ (କାନରୁ) ସନ୍ତରେ (ଶୀଘ୍ର) 'ମଣି' ଦିଆଇ ଦେଲ । ୩୨ ।

୩୩ଶ ପଦ—ମଣି (ସେହି ମୁଦ୍ରାମଣି ରୂପ) ଯନ୍ତ୍ରକୁ ଯେହ୍ନ (ରାମ-ହସ୍ତରେ ଧରି) ବକ୍ଷେ (ବକ୍ଷସ୍ଥଳରେ) ଥୋଇଲେ । ବଧିରେ ନାମ (ସୀତା ନାମ ରୂପ) ମନ୍ତ୍ରକୁ ଜପୁଥିଲେ । ବାଣ୍ଠି 'ରୂପ' ଔଷଧ ଶ୍ରୁତି ମୁଖରେ (କର୍ଣ୍ଣକୁହରରେ) ପିଇ ତନ୍ଦ୍ରା 'ରୂପ' ଜ୍ୱରକୁ ବେଗେ ଉଣା କରାଇ (କରା-ଇଲେ) । ବୈଦ୍ୟ ଯନ୍ତ୍ର ମନ୍ତ୍ର ଔଷଧ ବ୍ୟବହାର କରନ୍ତି, ସେହିରୂପ ତନ୍ଦ୍ରାବ୍ୟାଧିଗ୍ରସ୍ତ ରାମ ମଣିଯନ୍ତ୍ର ହୃଦସ୍ଥରେ ଯେହ୍ନଲେ, ନାମମନ୍ତ୍ର ଜପିଲେ, ବାଣ୍ଠି ଔଷଧ ପିଇଲେ ଏହିଭାବ । ୩୩ ।

୩୪ ୩୫ଶ ପଦ—ହେ କାଳେ ବାଳୀ (ସୀତା) ନାମ ମାଳକ (ମାଳାକୁ) ସବଗ (ସେହି) ରଜ୍ଜୁ (ବନ୍ଧନରେ) ବଚନ ବଶେ (କଥା ବଶରେ) ମଞ୍ଜୁ (ମନୋହର କରି) ଗୁନ୍ଥି (ଗୁନ୍ଥିଲେ) । 'ସେ ନାମ-ମାଳ କିରୂପ' ? ହେ ବାରିଜମୁଖି ! ହେ ମନୋପୃକ୍ତଈକ୍ଷଣେ ! ହେ ବନ୍ଧୂକଅଧରେ ! ହେ ପାଟଳୀଶ୍ରବଣେ ! ହେ ବିମଳତିଳଫୁଲନାସାଶୋଭନ ! ହେ ବର୍ଣ୍ଣଚମ୍ପା ! ହେ ଶିରୀଷ ମୃଦୁଅଙ୍ଗିନ ! ହେ ବଞ୍ଜୁଳାଙ୍ଗୁଳି ! ହେ କାଞ୍ଚନଖଞ୍ଚକ୍ଷଣା ! ହେ ବର-ଉତ୍ପଳ ବାମି ! ହେ ଜବାଚରଣେ ! "ଏହିରୂପ ନାମ ମାଳ" । ୩୪।୩୫ ।

ବିଷାଦ ହର ହର ପୁଣି ଉଚ୍ଚାରି । ବପୁରେ ଗଲ ପ୍ରେମଅଙ୍କୁର ପୂରି ଯେ । ବିଶେଷେ ସ୍ନେହେ ପୁନଃ ହୋଇଲେ କାହ୍ନ । ବଢ଼ସୁନ୍ଦରୀ ଥିଲି କି ଯୋଗେ ପାଇ ଯେ । ୩୬ ।

ବାଳାହ୍ୱିଁ ଗୁରୁସ୍ନେହ୍ନି ଝିନବସନେ । ବିଦୂର କରୁଥାଇ ମୋ ଆଳିଙ୍ଗନେ ଯେ । ବାଣରେ ବାଣ ପରି ମୋ ଅଙ୍ଗେ ମିଶି । ବୋଲ ହେଲି କୁଙ୍କୁମ ପ୍ରାୟୁ ମୁଁ ଦଶି ଯେ ।୩୭।

ବର୍ଣ୍ଣିଙ୍କେ ପିନା ମାତ୍ର ରହଇ ଭେଦ । ବସିବା କାଳେ କୋଳେ ଶିବସମ୍ପଦ ଯେ । ବିଭେଦ ନ ଥାଇତ ବିଷ୍ଣୁ ଶିଷ୍ଟରେ । ବିଯୋଗୀ ହୋଇଥିଲି ବ୍ରହ୍ମ ପରରେ ଯେ । ୩୮ ।

---

୩୬ଶ ପଦ—'ଏରୂପେ ମାଳ ଗ୍ରନ୍ଥି ଲି ପରେ' ଏମନ୍ତ ଉଚ୍ଚାରି (କହିଲେ) ହେ ହର ! ବିଷାଦ ( ଏ ଚିନ୍ତା ) ହର ( ଦୂରକର ) । 'ଏମନ୍ତ ବୋଲନ୍ତେ" ବପୁରେ (ଦେହଯାକ) ପ୍ରେମ ଅଙ୍କୁର ( ପୁଲକ ) ପୂରିଗଲା । 'ପୁଲକରେ ପ୍ରେମ ଅଙ୍କୁର ଉଠିଲା ଏହିଭାବ'[1] । ''ଏମନ୍ତେ ସାନ୍ନିଧ୍ୟକଶ୍ୱବ ଉପୁଜିବାରୁ' ବିଶେଷେ ପୁନଃ (ବିଶେଷରେ ପୁଣି) କହ୍ନ ହୋଇଲେ ବଢ଼ [1]ସୁନ୍ଦରୀ 'ସେ' । 'ତାକୁ ମୁଁ' କି ଯୋଗେ ପାଇଥିଲି । ୩୬ ।

୩୭ଶ ପଦ—[2]ବାଳାହ୍ୱିଁ (ପ୍ରିୟାମଠ) ଗୁରୁସ୍ନେହ୍ନି (ବଡ଼ସ୍ନେହବିଷ୍ଟଳା) ମୋ ଆଳିଙ୍ଗନେ 'ଦେହ ଦେହ ଅନ୍ତ ହେବା ଭୟରେ' ଝିନବସନେ (ଝିନବସନକୁ) ବିଦୂର କରୁଥାଇ । ବାଣରେ ବାଣ 'ମିଶିଲି' ପରି ମୋ ଅଙ୍ଗେ ମିଶି 'ଯାଇ' ତେଣୁ ମୁଁ କୁଙ୍କୁମ ବୋଳ ହେଲି ପ୍ରାୟୁ ଦଶି (ଦଶକ) ॥

୩୮ଶ ପଦ—'ମୋ କୋଳେ ବସିବା କାଳେ ଶିବ ସମ୍ପଦ 'ମିଳେ' । ବର୍ଣ୍ଣିଙ୍କେ ମାତ୍ର ପିନା (ବର୍ଣ୍ଣି ମାନଙ୍କରେ ପିନା) ଭେଦ ରହଇ 'ଶିବ ଶୁକ୍ଳବର୍ଣ୍ଣ ମୁଁ କୃଷ୍ଣବର୍ଣ୍ଣ' । 'ପ୍ରକୃତ ହୀତା ବୁହେଁ ଏକବର୍ଣ୍ଣ ଅଟନ୍ତ' । 'ପୁଣ' ବିଷ୍ଣୁ (ମୁଁତ) [3]ଶିଷ୍ଟରେ ( ଲକ୍ଷ୍ମୀଠାରେ ) ବିଭେଦ ନ ଥାଇ ତ । ଦେହ

---

[1]—ନବଯୌବନସମ୍ପନ୍ନା ସୁନ୍ଦରୀତ୍ୟଭିଧୀୟତେ । ଇତି ସୁନ୍ଦରୀ ଲକ୍ଷଣଂ ।
[2]—ଷୋଡ଼ଶାବ୍ଦା ଭବେଦ୍‌ବାଳା ତତସ୍ତରୁଣିରୁଚ୍ୟତେ ।
[3]—ଯସ୍ୟାଃ ପଦଂ ନ ଷଣ୍ମୁକ୍ତଂ ଶ୍ରୀଃ, ଇତି ମହାନାଟକେ ।

ବାଳା ଅନୁସରଣେ ସ୍ୱତ ମୁଁ ଗ୍ଲୁଇ । ବକ୍ତ୍ରପଦ୍ମ ଚୁମ୍ବନେ ଭ୍ରମର ହୋଇ ଯେ । ବ୍ରହ୍ମନଶା ଅଭାଗ୍ୟ କାହୁଁ ଘୋଟିଲା । ଦେନକଥା ଏ ଢେନି ଅନ୍ତର ହେଲା ଯେ । ୩୯ ।

ବ୍ରହ୍ମା ହେଲୁ ତୁ ଭାଗ୍ୟ ଭାନୁ ଉଦରେ । ବିଧାନ ହେବ ପ୍ରେମସୃଷ୍ଟି ତୋ ମତେ ଯେ । ବୋଇଲା ହନୁମାନ ଅଶ୍ରୁପ୍ରଳୟ । ବଶୀର୍ଣ୍ଣ ହେଲା ଏବେ ତେଜ ସଂଶୟ ଯେ । ୪୦ ।

ବରାହବର ଯୋଗେ ଧବ୍ରାସୁନ୍ଦରୀ । ବଳେ ବାରସସ୍ଥଳକୁଁ ଆଣି ଉଦ୍ଧରି

---

ପଣରେ ( ଶିଜ ଗୌଣ୍ଣ ବକ୍ଷ୍ଟ ଲକ୍ଷ୍ମୀ, ଏ ଦୃହ୍ମଙ୍କ ସମାନ ) ମୁଁ ବନ୍ଦୋଶୀ ହୋଇଥିଲି । ୩୮ ।

୩୯ଶ ପଦ—ବାଳା ଅନୁସରଣେ ( ସୀତାଙ୍କୁ ଅନୁସରଣ କରିବାରେ) ମୁଁ ଗ୍ଲୁଇ ( ଗ୍ଲୁଇପ୍ରାୟ ) ସ୍ୱତ ( ଏହା ଯଥାର୍ଥ ) 'ତାହାର' ବକ୍ତ୍ରପଦ୍ମ ( ମୁଖପଦ୍ମ ) ଚୁମ୍ବନେ ( ଚୁମ୍ବିବାରେ ) ଭ୍ରମର 'ପ୍ରାୟ' ହୋଇ "ଥିଲି" 'ମୋର' ଅଭାଗ୍ୟ ବ୍ରହ୍ମ ନଶା 'ପ୍ରାୟ' କାହୁଁ ଆସି ଘୋଟିଲା ଏ ଘେନ ଦେନ କଥା (ଗ୍ଲୁଇ ପ୍ରାୟ ଅନୁସରବା ଓ ଭୃଙ୍ଗପ୍ରାୟ ଚୁମ୍ବିବା କଥା ) ଅନ୍ତର (ଭିନ୍ନ) ହେଲା । ୩୯ ।

୪୦ଶ ପଦ—'ପୁଣି ହନୁମାନଙ୍କୁ କହିଲେ ହେ ମାରୁତେ' ତୁ ବ୍ରହ୍ମା ହେଲୁ 'ଜନ୍ମାନ୍ତରେ ହୋଇଥାନ୍ତ' । ଭାନୁଉଦତ ( ସୁଗ୍ରୀବ ) ଭାଗ୍ୟଭାନୁ 'ରୂପେ' ଉଦରେ (ଉଦିତ ହେଲେ ) 'ମୋ ଅଭାଗ୍ୟ ବ୍ରହ୍ମନଶା ନାଶ ହେବ' । ତୋ ମତେ ( ତୋ ସମ୍ମତିରେ ) ପ୍ରେମ ସୃଷ୍ଟି ବିଧାନ ( ନବାକ୍ତ ) ହେବ । 'ଏମନ୍ତ ଶୁଣି' ହନୁମାନ୍ ବୋଇଲେ ଅଶ୍ରୁପ୍ରଳୟ ତେବେ ବଶୀର୍ଣ୍ଣ ହେଲା ସଂଶୟ ତେଜ (ଗ୍ଲୁଡ଼) । 'ପ୍ରଳୟାନ୍ତରେ ପୁନା ଭାନୁର ଉଦୟ ଓ ସୃଷ୍ଟିର ସର୍ଜନା ହୁଏ, ପ୍ରଳୟରେ ତ ନ ହୁଏ, ଆପଣ ଅଶ୍ରୁପ୍ରଳୟକୁ ଗ୍ଲୁଡ଼ିଲେ ମୁଁ ବ୍ରହ୍ମା ହେବି, ସୁଗ୍ରୀବ ସୂର୍ଯ୍ୟ ହେବ, ଅଭାଗ୍ୟ ବ୍ରହ୍ମନଶା ନାଶଯିବ, ପ୍ରେମସୃଷ୍ଟିର ସର୍ଜନା ହେବ ଏହି ତାତ୍ପର୍ଯ୍ୟାର୍ଥ' । ୪୦ ।

୪୧ଶ ପଦ—ବରାହବର ଯୋଗେ (ଶ୍ରେଷ୍ଠ ଯୁଦ୍ଧଯୋଗରେ) ଧରା (ବନ୍ଦୀ) 'ହୋଇଥିବା' ସୁନ୍ଦରୀ ( ସୀତାଙ୍କୁ ) ବଳେ ( ସମର୍ଥପଣରେ ) *ବାରସସ୍ଥଳକୁ

---

*—ଚାରି ସହସ୍ର ସ୍ଥଳ ବାରସସ୍ଥଳ ଲଙ୍କାପକ୍ଷେ—ବାର ସହସ୍ରସ୍ଥଳ—ଜଳମଗ୍ନ

ଷ୍ଟେ ଯେ । ବରୁଣ ଥିଲା ପୁରେ କେଳି ରଚବ । ବିଜୟ ଦୈତ୍ୟ ସତ କାହିଁ ବଞ୍ଚିବ ଯେ । ୪୧ ।

ବସ୍ତ୍ରାଳଶପଦରେ ଏ ଚମତ୍କାର । ବୁଧେ ହେଲା ନ କର ମନେ ବସ୍ତୁର ଯେ । ବୋଲଇ ଉପଇନ୍ଦ୍ର ଭଞ୍ଜ ଏ ଗୀତ । ବୈଦେହୀଶବିଳାସ ନାମ ଉଦିତ ଯେ । ୪୨ ।

---

( ଲଙ୍କାପୁରରୁ ) ଅଦ୍ଧର ୨ ବରୁଣ ଥିଲାପୁରରେ ( ପ୍ରାକାରଥିବାପୁରରେ ) କେଳି ରଚବ । ବିଜୟଦୈତ୍ୟ ( ରାବଣ ) କାହିଁ ବଞ୍ଚିବ (ବଞ୍ଚିବନାହିଁ ) 'ଏବ୍ୟ' ସତ (ନିଶ୍ଚୟ) । 'ଏ ବାଚ୍ୟାର୍ଥ' । ବଗହ୍ୱର ( ଶ୍ୱେତବରାହ ) ଯୋଗେ ( ରୂପେ ଆପଣ ) ଜବାରସନ୍ନକୁ ( ଜଳରେ ମଗ୍ନହୋଇଥିବା ) ଧରା ସୁନ୍ଦରୀ (ଭୂଦେବୀକୁ) ଉଦ୍ଧର ଆଣି ବରୁଣଥିଲାପୁରେ ( ସମୁଦ୍ରରେ ) କେଳି ରଚଥିଲ । ଏ ସତ (ପିଛନୁହେ) ବିଜୟ (ଅଜୟ) ଦୈତ୍ୟ (ହିରଣ୍ୟାକ୍ଷ) 'କମ୍ପା ଦେତ୍ୟରୂପୀ ବିଜୟୀ ହିରଣ୍ୟାକ୍ଷ' କାହିଁ ବଞ୍ଚିଲ (ବଞ୍ଚିଲନାହିଁ) । 'ଏ ଧ୍ୱନ୍ୟର୍ଥ ।' ※ । ୪୧ ।

୪୨ଶ ପଦ—ବୁଧେ (ହେ ବୁଧଜନ ମାନେ) ଏ ଛାନ୍ଦ, 'ବସ୍ତ୍ରାଳଶପଦରେ' ଚମତ୍କାର (ଆଶ୍ଚର୍ଯ୍ୟ) 'ହୋଇଅଛି' । 'ଏଣୁ' ମନେ ( ମନମଧ୍ୟରେ ) ହେଲା ନ କର (ମାତ୍ସର୍ଯ୍ୟ) ବସ୍ତୁର 'କର' । ବୈଦେହୀଶ ବିଳାସ ନାମ (ନାମରେ) ଉଦିତ 'ହୋଇଥିବା' ଏ ଗୀତ ଉପଇନ୍ଦ୍ର ଭଞ୍ଜ (ହରେନ୍ଦ୍ର ଭଞ୍ଜ କବି) ବୋଲଇ (କହିଲେ) । ୪୨ ।

—※—

---

୨—ବରୁଣ୍ଡେ କୃଶାନୋଽପି ପ୍ରାକାରେ ବରୁଣଂ ବୃତୌ ଇତି ବିଶ୍ୱଃ ।

ଜ—ଜଳୌଘମଗ୍ନା ହିତଗତରା ଧରା ଇତି

※ ବାଚ୍ୟାତିଶାୟି ନ ବ୍ୟଙ୍ଗେ ଧ୍ୱନ ସ୍ତକାବ୍ୟମୁତ୍ତମମିତ୍ୟଲଂକାରେ ।

## ଊନଚତ୍ୱାରିଂଶ ଛାନ୍ଦ ।

( ମୃଣୋଭ୍ୱ ଉଆଇବା ବାଣୀରେ )

ରାଗ-ମଙ୍ଗଳ ।

ବାତସୁତ ଶୁଭ୍ରପକ୍ଷ ଉତ୍ତର । ବଢ଼ୁଛି, କଲି ରାମଚନ୍ଦ୍ରର । ୧ ।
ବିରାଜ ଧନୁରେ ମଣ୍ଡଳ ରଚ । ବିହିତ, କର ଶର ସେ ରୁଚ । ୨।
ବିସ୍ତାର କରେ କୁମୁଦ ପ୍ରସିଦ୍ଧ । ବିହିତ,ପଦ୍ମ ପରେରେ ନୋଧ ।୩।

---

୧ମ ପଦ—ବାତସୁତ (ହନୁମାନ) ୧ଉତ୍ତର (ପଶ୍ଚାତ୍ୟ) ଶୁଭ୍ର (ଶୁକ୍ଳ) ପକ୍ଷ ରୂପେ ରାମଚନ୍ଦ୍ରର ( ଦାଶରଥିଙ୍କର ) ବଢ଼ୁଛି ( ପ୍ରଫୁଲ୍ଲ ) କଲି 'ଶୁକ୍ଳ ପକ୍ଷ' ଚନ୍ଦ୍ରର ରାମ ( ରମଣୀୟତା ) ବଢ଼ୁଛି ( ବିଶେଷରେ ବୃଦ୍ଧି କରେ ) 'ଏ ପଦ ରୂପକଶ୍ଳେଷ' । ୧ ।

୨ୟ ପଦ—ଧନୁରେ (ଗୁଣରେ) ମଣ୍ଡଳରଚ (କର୍ଣ୍ଣପର୍ଯ୍ୟନ୍ତ ଧନୁକୁ ଟାଣି ମଣ୍ଡଳାକାର କରି ) ବିରାଜ ( ବିରାଜମାନ ହେଲେ ) । କର ( ହସ୍ତରେ ) ଶର ( ବାଣର ) ରୁଚ ( ଶୋଭାକୁ ) ବିହିତ ( କଲେ ) । 'ଚନ୍ଦ୍ର ଯେରୂପ ମଣ୍ଡଳକ ରଚ ଧନୁ ରାଶିରେ ବିରାଜନ୍ତି ଏବଂ କର ( କିରଣସମୂହଙ୍କର ) ସରସେ ( ସରସରେ ) ରୁଚ୍ଚ ( ସୌନ୍ଦର୍ଯ୍ୟକୁ ) ବିହିତ କରନ୍ତି ରାମ ତଦ୍ରୂପ ଏହା ତାତ୍ପର୍ଯ୍ୟାର୍ଥ' ।୨।

୩ୟ ପଦ—'ରାମଚନ୍ଦ୍ର' ୧କୁଚ-ମୁଦ (ପୃଥ୍ୱୀର ଆନନ୍ଦକୁ) ପଷିଦ୍ଧ 'ରୂପେ' ବିସ୍ତାର କରେ (କରନ୍ତି)। ୨ପଦ୍ମ ( ପଦ୍ମପକ୍ଷୀୟ ) ପରରେ ( ଶତ୍ରୁଠାରେ ) କ୍ରୋଧ ବିହିତ (କରନ୍ତି) । 'ଚନ୍ଦ୍ର ତଦ୍ରୂପ' କୁମୁଦ ( କୈରବ—କଇଁଫୁଲର ) ବିସ୍ତାରକରେ ( ବିସ୍ତାରକରଣରେ ) ପ୍ରସିଦ୍ଧ 'ଅଟେ' । ପଦ୍ମ (ପଦ୍ମ ଫୁଲ ପକ୍ଷ) ପରରେ (ଉଲ୍ଲଙ୍ଘନରେ) କ୍ରୋଧ ବିହିତ (କରେ) ।୩ ।

---

୧—ପ୍ରତୀଚ୍ୟୋତ୍ତରେ ସମେ ଇତ୍ୟମରଃ ।
୧—କୁଃ ପୃଥ୍ୱୀଂ ସର୍ବାଖ୍ୟାତା କ୍ଷ୍ମାସ୍ୱାଂକୁ ତଥାପ୍ୟସ୍ଥ ମିତ୍ୟେକାକ୍ଷରଃ ।
୨—ପଦ୍ମଃ ସ୍ୟାତ ପନ୍ନଗଚ୍ୟୁହନିଧିସଂଖ୍ୟାନ୍ତରେଂସ୍ୱୁଜେଇତି ବିଶ୍ୱଃ ॥

ବର୍ଧିରେ ଉଦଯ଼ ଗିରି ଉପର । ବନ୍ଦାରକାସ୍ତି କଉଶିକର ।୪।
ହୋଇଲେ ଯିବା ଏହି ଅନୁକୂଳେ । ବନିତା ଅଙ୍ଗେ ଶୁଭ ଦଶିଲେ ।
•ବିଶେଷ ଲାବଣ୍ୟଲକ୍ଷ୍ମୀର ପୁର । ବଦିତ ମଧ୍ୟେ ସିଂହାବତାର ।୬।
ବାଦ୍ୟ ପାରାବତ ହୁଁ ହୁଁ ଆରମ୍ଭି । ବେଗରେ ଦ୍ୱିଜ ସମ୍ମତ ଲଭି ॥

୪ର୍ଥ ପଦ—'ରାମଚନ୍ଦ୍ର' ବର୍ଧିରେ (ଦୈବବଶରେ) ଗିରି ଉପର (ମାଲ୍ୟବାନ ପର୍ବତ ଉପରେ) ଉଦଯ଼ (ବଜେ କରିଅଛନ୍ତି)। ୧କଉଶିକର (କୌଶିକ ବିଶ୍ୱାମିତ୍ରଋଷିଙ୍କର) ବନ୍ଦାରକାସ୍ତି 'ଅଟନ୍ତି' 'ଯାଗରକ୍ଷା ଦ୍ୱାରା ଏହି ଭାବ'। 'ଚନ୍ଦ୍ର ଉଦ୍ଭୂ ପ' ବର୍ଧିରେ (ବର୍ଧିରେଜ) ଗିରିଉପର (ଉଦଯ଼ଗିରି ଉପରେ) ଉଦଯ଼ - 'ହୋଇ' ୧କଉଶିକର (ପେଚକମାନଙ୍କର) ବନ୍ଦାରକାସ୍ତି 'ଅଟନ୍ତି'। ୪।

୫ମ ପଦ—ହୋଇଲେ (ରାମ୍ କହିଲେ) ଏହି ଅନୁକୂଳେ (ଏହି ଅନୁକୂଳରେ) ଯିବା । ବନିତା (ପ୍ରିୟାର) ଅଙ୍ଗେ (ଅଙ୍ଗମାନଙ୍କରେଥିବା) ଶୁଭ (ଶୁଭଲକ୍ଷଣମାନ) ଦଶିଲେ (ଦଶିଲଣି)। ୫।

୬ଷ୍ଠ ପଦ—'ସେ ପ୍ରିୟା' ବିଶେଷେ (ବିଶେଷରେ) ଲାବଣ୍ୟ ଲକ୍ଷ୍ମୀର (ଲାବଣ୍ୟ ଶୋଭାର) ପୁର (ସ୍ଥାନ) ଅଟେ । 'ତାହାର' ମଧ୍ୟେ (ମଧ୍ୟଭାଗରେ) (ଅର୍ଥାତ୍ କଟୀରେ) ସିଂହାବତାର ବଦିତ (ପ୍ରକାଶିତ) ହୋଇଅଛି। 'ସିଂହକଟୀ ଏହି ଭାବ'। ଏହାଦ୍ୱାରା ଲକ୍ଷ୍ମୀ ନୃସିଂହ ଦୁହିଙ୍କ ଅନୁକୂଳ ସମନ୍ଧରେ କରିବାର ସୂଚିତ ହେଲା। ୬।

୭ମ ପଦ—ହୁଁ ହୁଁ ଆରମ୍ଭି 'କରି' ବାଦ୍ୟ (ବାଦ୍ୟମାନ ହୋଇ) ୧ ପାରାବତ (କଳରବ) 'ହେଲା'। ବେଗରେ ୨ଦ୍ୱିଜ (ପକ୍ଷୀ) ସେ ଦ୍ୱିଜ (ବ୍ରାହ୍ମଣରେ) ସମ୍ମତ (ସ୍ୱୀକାରକୁ) ଲଭି (ଲଭିଲା)। 'ଅନୁକୂଳ ସମଯ଼ରେ ଉପେ ହୁଁ (ସମୟହେଳା) କହି ସମ୍ମତ ଦଅନ୍ତି ଏଠାରେ ପାରାଙ୍କ ହୁଁ ହୁଁ ଶବ୍ଦ ବିପ୍ରସମ୍ମତିକ ସୂଚେଇ ଦେଲ ଏହି ଫଳିତାର୍ଥ'। ୭।

---

୧—କୌଶିକୋ ଗୁଗ୍ଗୁଲୁ ଲୂକବ୍ୟାଳଗ୍ରାହେଷୁ କୌଶିକଃ । ଇତି ବିଶ୍ୱଃ ।
୧—ପାରାବତଃ କଳରବ ଇତ୍ୟମରଃ ।
୨—ପକ୍ଷିବିପ୍ରାଣ୍ଡଜା ଦ୍ୱିଜା ଇତ୍ୟମରଃ ।

ବାର ଲଗ୍ନ ଯୋଗ ଜାମ୍ବବ ହେଜ । ବହନ, ବନ୍ଦାପନା ସରଜ ।୮।
ବନପ୍ରିୟ ଗାନ ଗୀତ ମଙ୍ଗଳେ । ବିୟତେ,ରାଜହଂସ ମିଳଲେ ।୯।
ବାମେ ଶିବା ଗତ ଶବ ଘେନିଣ । ବାହାର, ହେଲେ ରାମ ଲକ୍ଷ୍ମଣ ।୧୦।
ବିଜୟ ମାରୁତ ଅଙ୍ଗଦସ୍କନ୍ଧେ । ବିନୟେ, ସଙ୍ଗେ ସୁଗ୍ରୀବ ବୋଧେ ।୧୧
ବେନିଭ୍ରାତ ବେନିଭ୍ରାତେ ରୁଚିର । ବିପତି, ବୃଷ କି ହରି ହର ।୧୨।
ବୁଜାଇ ନୟନ ରଜନୀକରେ । ବଳରେ, ସୃଷ୍ଟି କବଳ କରେ ।୧୩।

---

୮ମ ପଦ—ଜାମ୍ବବ (ମନ୍ତ୍ରୀ) ବାର ଲଗ୍ନ ଯୋଗ ହେଜ ( ବୁଝିଲେ ) 'ଯାତ୍ରାକୁ ଉତ୍ତମ ହେଲା ଜାଣି' ବହନ ( ବେଗରେ ) ବନ୍ଦାପନା ସରଜ (କଲେ) । ୮ ।

୯ମ ପଦ—ବନପ୍ରିୟ (କୋକିଳର) ଗାନ ମଙ୍ଗଳେ ଗୀତ (ମଙ୍ଗଳଗୀତ) ହେଲା । ବିୟତେ ( ଆକାଶରେ ) 'ଆସି' ରାଜହଂସ 'ମାନେ' ମିଳିଲେ । 'ଏହାଦ୍ୱାରା ମଙ୍ଗଳ ସୂଚିତ ହେଲା' ଏହିଭାବ । ୯ ।

୧୦ମ ପଦ—*ବାମେ (ବାମଭାଗରେ) ଶବଘେନିଣ ଶିବା (ଶୃଗାଳୀ) ଗତ 'କଲେ' । 'ଏମନ୍ତ ଶୁଭ ଅନୁକୂଳରେ' ରାମ ଲକ୍ଷ୍ମଣ ବାହାରହେଲେ ।୧୦।

୧୧ଶ ପଦ—ସଙ୍ଗେ ( ତାଙ୍କ ସଙ୍ଗରେ ) ସୁଗ୍ରୀବ ବିନୟେ (ବିନୟକରି) ବୋଧେ (ବୋଧିଲେ) ମାରୁତ ଅଙ୍ଗଦ ସ୍କନ୍ଧେ ( କାନ୍ଧରେ ) 'ଦୁହେଁଦୁଇଭାଇ' ବିଜୟ (ବିଜେ କଲେ ) ୧୧ ।

୧୨ଶ ପଦ—'ଏମନ୍ତ ସୁଗ୍ରୀବ ବଚନ୍ନେ' ବେନିଭାତ ( ରାମଲକ୍ଷ୍ମଣ ଦୁଇ-ଭାଇ) ବେନିଭ୍ରାତ ( ହନୂମାନ୍ ଅଙ୍ଗଦ ଏ ଦୁଇଭାଇଙ୍କ ) ସ୍କନ୍ଧେ ( କାନ୍ଧରେ ) 'ବସିବାରୁ' ବିପତି ( ଗରୁଡ଼ ) ବୃଷ ( ବୃଷଭ ) 'ଏଦୁହିଙ୍କ ଉପରେ' ହରି ହର (ବିଷ୍ଣୁ ଶିବ କି 'ଏରୂପ' ରୁଚିର (ମନୋହର) 'ଦିଶିଲେ' । ୧୨ ।

୧୩ଶ ପଦ—ରଜନୀକରେ ( ଧୂଳିସମୂହରେ ) ନୟନ ( ନେତ୍ର ) ବୁଜାଇ (ବୁଜାଇଲେ) । 'ସୈନ୍ୟମାନେ' ବଳରେ ସୃଷ୍ଟିକି କବଳ (ଗ୍ରାସ) କଲେ । ସୈନ୍ୟ 'ଯିବାରେ ସୃଷ୍ଟି ଅଦୃଶ୍ୟହେଲା ଓ ଧୂଳି ଉଡ଼ିବାରେ ଚକ୍ଷୁ ବୁଜି ହୋଇଗଲା ଏହିଭାବ' । ଏ ବାଚ୍ୟାର୍ଥ ॥ ହରି ହରପକ୍ଷେ—† ହରି

---

*ବାମେ ଶବଶିବାଳୁମ୍ପା ଦକ୍ଷିଣେ ଗୋମୃଗଦ୍ୱିଜା ଇତି ଜ୍ୟୋତିଃଶାସ୍ତ୍ରେ ।
†ନମେଷୋନ୍ମେଷାଭ୍ୟାଂ ପ୍ରଳୟମୁଦୟଂ ଯାତି ଜଗଦତି ॥

ବ୍ୟୋମଗଙ୍ଗାରେ ସ୍ୱେଦ ନଦୀ ବାନ୍ଧି । ବିଗ୍ରହେ,ଜଡ଼ି ଚେତନ୍ୟେ ସମ୍ପାଦି
ବାସୁକି ସମାନ ସୋଦର ଡାକି । ବସୁଧା,ଥିବା ସଂଯତେ ଟେକି ।୧୫।
ବଲ୍ଲଭ ସଙ୍ଗମ୍ମା ନବଯୁବତି । ବହିଲା, ସେହି ଉପମା କ୍ଷିତି ୧୬ ।
ବ୍ୟଥା ପାଇଲେ ତାହା ନ ଗଣିଲା । ବିବେକ, ଚିରସନ୍ତାପ ଗଲା ।୧୭।

---

( ଭଗବାନ୍ ) ନୟନ ବୁଜାଇ 'ସ୍ୱୟଂ ବୁଜିବାରେ' ରଜନୀ ( ରାତ୍ରି) ) କରେ (କରନ୍ତି) । * ହର ( ଶିବ ) ବଳରେ ସୃଷ୍ଟି କବଳ (ଗ୍ରାସ ) କରେ (କରନ୍ତି) । ୧୩ ।

୧୪ଶ ପଦ—ସୈନ୍ୟ ଯିବାରେ ତାଙ୍କ ଦେହରୁ ବହିବା ସ୍ୱେଦ (ଝାଳ) ନଦୀ 'ରୂପ' ରହିଗଲା ବ୍ୟୋମ ଗଙ୍ଗା ( ଆକାଶ ଗଙ୍ଗା ) ସଙ୍ଗେ ବାନ୍ଧି ହେଲା ( ସମାନ ହେବାକୁ ବସିଲା ) । ବିଗ୍ରହେ ( ସୈନ୍ୟଙ୍କ ଦେହ ସବୁ ) ଜଡ଼ ( ନିସ୍ପନ୍ଦ ହେବାରୁ—ସନ୍ଧି ନ ରହିବାରୁ ) ଚେତନ୍ୟେ ( ସେ ରୂପ ) ସମ୍ପାଦି (ସମ୍ପାଦିତ କଲେ ) । 'ସ୍ୱେଦ ଝଲେ ନ ପଡ଼ିଲା ଏହିଭାବ ।'

୧୫ଶ ପଦ—ବାସୁକି 'ନାଗ' ଆପଣା ସମାନ ସୋଦର (ଭାଇମାନଙ୍କୁ) ଡାକି 'ବୋଇଲେ' 'ତୁମ୍ଭେ ଆସ' । ବସୁଧା ( ମହୀକି ) ସଂଯତେ ( ଯତ୍ନରେ ) ଟେକି ଥିବା । 'ରାମଙ୍କ ସୈନ୍ୟ ଭାର ହେତୁରୁ ମୁଁ ପୃଥ୍ୱୀକି ଧରି ନ ପାରିବି ଏହିଭାବ' । ୧୫ ।

୧୬ଶ ପଦ—ନବଯୁବତି ( ନବାଙ୍ଗନା ) ବଲ୍ଲଭ ( ପ୍ରିୟର ) ସଙ୍ଗମ୍ମା (ସଙ୍ଗମକୁ ) ହେଲା (ଲଭିଲେ) "ଯେଉଁପରି ହୁଏ' କ୍ଷିତି ( ପୃଥିବୀ ) ସେହି ଉପମା ବହିଲା (ପାଇଲା ) ।୧୬ ।

୧୭ଶ ପଦ--'କ୍ଷିତି, ସୈନ୍ୟ ଯିବା' ବ୍ୟଥା ପାଇଲେ 'କିନ୍ତୁ ତାହା ( ସେ ବ୍ୟଥାକୁ ) ନ ଗଣିଲା ( ଗଣନା ନ କଲେ ) ତାହାର ଏମନ୍ତ ବିବେକ 'ହେଲା' 'ରାବଣଯୋଗୁଁ ମୋହର ' ଥିଲା ଯେଉଁ ଚିର ସନ୍ତାପ (ମନଦୁଃଖ) 'ସେ ଏବେ' ଗଲା 'ରାବଣ ମରିବ ଏହି ଭାବ' । 'ନବଯୁବତି ଯେରୂପ ନଖକ୍ଷତାଦି ବ୍ୟଥା ପାଇଲେ ସୁଦ୍ଧା ତାକୁ ଗଣନା ନ କରେ ମୋହର ଚିରକାଳ କାମସନ୍ତାପ ଗଲା ଏମନ୍ତ ବିବେକ ତାହାର ହୁଏ' । ୧୭ ।

---

* ହରଃ ସଂହର୍ତ୍ତୃଭୀଃନଂ ଇତି ।

ବିକଳ କେତକୀରେ ଭୃଙ୍ଗପ୍ରାପ୍ତେ । ବନ୍ଧିବା, ମାର୍ଗ ବାୟୁ ନ ପାଏ ।୧୮।
ବଜ୍ରପାତ ଘୋଷ ନିଷାଦ ରବେ । ବିଷାଦ, ବଳ ଜାର ସ୍ୱଭାବେ ।୧୯।
ବାରାଂନିଧିକ କେତେଦିନେ ଭେଟି । ବୀତ ତା, ଅଧିକରେ ପ୍ରକଟି ।୨୦।
ବାଣାପୁଞ୍ଜ ପ୍ରାପ୍ତେ ବହୁପ୍ରବାଳେ । ବିରାଜ, ଖ୍ୟାତ ଇକ୍ଷ୍ୱାକୁ କୁଳେ ।୨୧।
ବୃନ୍ଦ ବୃନ୍ଦ ହୋଇ କଚ୍ଛପଯୁକ୍ତ । ବିଶିଷ୍ଟ, ସାରଗୁଣାକ ବ୍ୟକ୍ତ ।୨୨।

---

୧୮ଶ ପଦ—କେତକୀର (କେତକୀ ପୁଷ୍ପରେ ) ଭୃଙ୍ଗ ( ଭ୍ରମର ) ବିକଳ 'ହେଲେ' ପ୍ରାପ୍ତେ ବାୟୁ ( ପବନ ) ବନ୍ଧିବା ମାର୍ଗ ( ବାଟ ) ନ ପାଏ ( ନ ପାଇ ) 'ବିକଳ ହେଲେ' । 'ଏହାଦ୍ୱାରା ସୈନ୍ୟଙ୍କର ଅତି ସାନ୍ଦ୍ରତ୍ୱ ସୂଚିତ ହେଲା' । ୧୮ ।

୧୯ଶ ପଦ—ବଜ୍ରପାତ ( ବଜ୍ରପତନ ) 'ତୁଲ୍ୟ' ଘୋଷ ( ଧ୍ୱନି ) ନିଷାଦରବେ ( ଗୁହ ଧଣ୍ଡପାଣି ଡାକ ଦ୍ୱାରା ) ବଳ ( ବଳରାଜା ) ଜାର ସ୍ୱଭାବେ ( ଜାରଗିବା ସ୍ୱଭାବରେ ) କମ୍ପି, ( ଜାର ପୁରୁଷ ସ୍ୱଭାବରେ ) ବିଷାଦ ( ଖେଦ ) 'ଲଭିଲା' । ୧୯ ।

୨୦ଶ ପଦ—ବାରାଂନିଧିକ ( ସମୁଦ୍ରକୁ ) କେତେ ଦିନେ ଭେଟି ( କେତେଦିନରେ ଯାଇ ଭେଟିଲେ ) । ବହୁତଲୋକ ଦେଖିବାରୁ ବୀତ ( ସମୁଦ୍ରଜଳରାଶି) ଅଧିକରେ ପ୍ରକଟି ( ପ୍ରକାଶ ପାଇଲା ) । ୨୦ ।

୨୧ଶ ପଦ —'ସେହି ସମୁଦ୍ର' ବାଣାପୁଞ୍ଜ ପ୍ରାପ୍ତେ ବିରାଜି ( ବିରାଜିଲା ) ବାଣାପୁଞ୍ଜ ବହୁ ୧ପ୍ରବାଳେ (ଚଳିକା ଦଣ୍ଡମାନଙ୍କରେ) ବିରାଜେ 'ପୁଣି' ୨ଇକ୍ଷାକୁ କୁଳେ ( କଇଁବୁମ୍ବା ସମୂହରେ ) ଖ୍ୟାତ ( ପ୍ରସିଦ୍ଧ ) । 'ଅଥବା ସମୁଦ୍ର' ବହୁ ପ୍ରବାଳେ ( ବହୁତ ପ୍ରବାଳିଙ୍କରେ ) ବିରାଜନ୍ତି ଏବଂ ଇକ୍ଷ୍ୱାକୁ କୁଳେ ( ରାମ ଲକ୍ଷ୍ମଣଙ୍କ ଦ୍ୱାରା ) ଖ୍ୟାତ ହୋଇଅଛି । ୨୧ ।

୨୨ଶ ପଦ—'ପୁଣି ସେ ବାଣା ସମୂହ' ବୃନ୍ଦ ବୃନ୍ଦ ହୋଇ କଚ୍ଛପ ( ବାଣାର ଅବୟବମାନଙ୍କରେ ) ଯୁକ୍ତ 'ହୋଇଥାଏ' ବିଶିଷ୍ଟ ୧ସାର (ସ୍ଥିରାଂଶ 'ଆଦି' ଗୁଣ ( ତାହମାନଙ୍କରେ ) ବ୍ୟକ୍ତ ( ପ୍ରକାଶ ପାଇଥାଏ ) । ସମୁଦ୍ରରେ

---

୧—ପ୍ରବାଳୋ ବଲ୍ଲକୀଦଣ୍ଡେ ବିଦ୍ରୁମେ ନବପଲ୍ଲବେ । ଇତି ବିଶ୍ୱଃ ।
୨—ଇକ୍ଷାକୁ କଟୁତୁମ୍ବ୍ୟାଂ ସ୍ତ୍ରୀ ସୂର୍ଯ୍ୟବଂଶନୃପେ ପୁମାନ । ଇତି ମେଦିନୀ ।
୧—ସାରୋବଲେ ସ୍ଥିରାଂଶେ ଚ ସକ୍ଥିର୍ ପୁଂସି ଜଲେ ଧନେ ଇତି ମେଦିନୀ।

ବାର୍ତ୍ତାବହ ଲଙ୍କେଶ୍ବରେ କହିଲ । ବାହୁଡ଼ି, ପୂର୍ବପଦ ଅଇଲ । ୨୬ ।
ବାନର ଋକ୍ଷ କେତେ ରାଜା ପୁଚ୍ଛେ । ବାରିଧି, ଲଙ୍ଘନରେ କି ଇଚ୍ଛେ ॥
ବୋଲେ ଚର କି ପଚର ସେ ସୈନ୍ୟ । ବାରିଧି,ବେଳା ଭେଟ ରଞ୍ଜନ ॥
ବୋଲନ୍ତି ପିଇଲି ଅଗସ୍ତି ଏକ । ବହୁତ, ଗ୍ରାସେ କେତେ ଉଦକ ।୨୯
ବିନାଶରେ ପୂର୍ବପୁରୁଷ କାଳି । ବୁଝିବା, ବୋଲି ରାମ ବୋଲନ୍ତି ।୩୦।

୨୬ଶ ପଦ—ବାର୍ତ୍ତାବହ ( ଦୂତ ) ଲଙ୍କେଶ୍ବରେ ( ରାବଣଙ୍କସମୁଖେ ) କହିଲ 'ଏବଂ ସେ' ବାହୁଡ଼ି ପୂର୍ବପଦ ( ପୂର୍ବସ୍ଥାନକୁ ) ଅଇଲ । ଅଥବା ପୂର୍ବପଦ ଯେ ବାନର ଆସିଥିବା ଚିହ୍ନିରୁ ବା ହୁଡ଼ି ଅର୍ଥାତ୍ ବା ଅକ୍ଷର ଗଲେ ନର ରହିଲ । 'ଦୂତ ନର ଅଇଲ ବୋଲି ରାବଣ ଆଗରେ କହିଲ ଏହିଭାବ' ଜମ୍ବୁ ପୂର୍ବପଦ ( ବୃକ୍ଷିବଂଶୀ ସିନ୍ଧୁକୂଳେ ସ୍ଥିତ କପି ସୈନ୍ୟ ବୃନ୍ଦ ବଢ଼ିତ ) ଏହା ରାବଣ ଆଗରେ ଦୂତ ଜଣାଇଲ । ୨୬ ।

୨୭ଶ ପଦ—ଦୂତ ଏମନ୍ତ କହନ୍ତେ ରାଜା ( ରାବଣ ) ପୁଚ୍ଛେ (ପଚାରିଲ ) ବାନର ଋକ୍ଷ ( କପି ଭଲ୍ଲୁକ ) କେତେ ? ବାରିଧି ଲଙ୍ଘନେ ( ସମୁଦ୍ର ତରିବା ପକ୍ଷରେ ) କି ଇଚ୍ଛେ ( କି ଚିନ୍ତା କରୁ ଅଛନ୍ତି ) । ୨୭ ।

୨୮ଶ ପଦ—'ତାହା ଶୁଣି' ଚର ବୋଲେ ( ଦୂତ କହିଲ ) ସେ ସୈନ୍ୟ 'ସଂଖ୍ୟା' କି ପଚର ? ବାରିଧି ବେଳା ଭେଟ ରଞ୍ଜନ ( ସମୁଦ୍ରତଟରେ ଥିବାରୁ ସମୁଦ୍ର ଦ୍ବାରା ଭେଟ ହେବାର ରଞ୍ଜନ ହୋଇଅଛି ) । ୨୮ ।

୨୯ଶ ପଦ—'ସୈନ୍ୟମାନେ' ବୋଲନ୍ତି ଏକ ( ଜଣେ ) ଅଗସ୍ତି 'ଋଷି' 'ସମୁଦ୍ରକୁ' ପିଇଲ । ବହୁତ ଗ୍ରାସେ ( ବହୁତ କେତେ ଗ୍ରାସରେ ) ଉଦକ ( ଏ ଜଳ ) କେତେ । ଅଥବା ବହୁତ ଅଗସ୍ତି 'ଆମ୍ଭେ' ଗ୍ରାସେ (ଗ୍ରାସ କରୁଥାଇଁ ) ଏ ଉଦକ କେତେ 'ପିଇ ଶୁଖାଇ ଦେବା' । ୨୯ ।

୩୦ଶ ପଦ—* ପୂର୍ବ ପୁରୁଷ ( ରାମଙ୍କ ପୂର୍ବପୁରୁଷ ସଗର ରାଜାଙ୍କ ) କାଳି 'ଏ ସାଗର' ବିନାଶରେ ( ଏହା ଲୋପ ହୋଇଥିବ ) ବୋଲି ରାମ ବୋଲନ୍ତି 'ଏହ' ବୁଝିବା । ୩୦ ।

ଋକ୍ଷାଚ୍ଛଭଲ୍ଲ ଭଲ୍ଲୁକା ଇତ୍ୟମରଃ ।

*—ସଗର ରୁ ସାଗରଃ । କାରି ଗଙ୍ଗା କରି ଭଗୀରଥାବଧି ।

ବକ୍ତ୍ରବକାରେ କହେ ଲଙ୍କେଶ୍ୱର । ବାରତା, ଯାକ ମିଥ୍ୟା ତୋହର ॥
ବ୍ରହ୍ମାଣ୍ଡରେ ଏତେ ବାନର କାହିଁ । ବଶ ସେ, ପୁଣ ମନୁଷ୍ୟେ ହୋଇ ॥
ବିଭୀଷଣ ଶୁଣି ଯୋଡ଼ିଲା କର । ବୋଇଲା, ସତ କହୁଛି ଗୁର । ୩୩ ।
ବଣା ହେଉ ହନୂମାନ ଆସିବା । ବାଳକ, ବନାଶିବା ଭଷିବା । ୩୪ ।
ବୋଲେ ରାବଣବଧ-ବଗୃରିଲେ । ବୃହାର, ନିପୁରାରି କ କଲେ । ୩୫ ।
ବସାଇ ଦ୍ୱାସ୍ଥ ପାଶରେ ନର୍ତ୍ତନ । ବରଚ, ବୋଲୁ ଲଙ୍ଘିଲେ ଘେନ । ୩୬ ।
ବଜ୍ରଶୂଳ ନ୍ଲେମ ବନ୍ଧ ନ କର । ବାନର, ନର କ କର ପାର । ୩୭ ।

---

୩୧ଶ ପଦ—ଲଙ୍କେଶ୍ୱର ବକ୍ତ୍ରବକାରେ ( ମୁଖ ବକ୍ର କରି ) କହେ ତୋହର ବାରତା ( ବାର୍ତ୍ତା ) ଯାକ ମିଥ୍ୟା 'ଅଟେ' । ୩୧ ।

୩୨ଶ ପଦ—ତୁ ଯେତେ କହିଲୁ ଏତେ ବାନର ବ୍ରହ୍ମାଣ୍ଡରେ କାହିଁ 'ଥାଇପାରନ୍ତି' । ସେ ( ବାନର ) ପୁଣି ମନୁଷ୍ୟେ ( ମାନବର ) ବଶ ହୋଇ 'ଅଛନ୍ତି' 'ଏଣୁ ଏ ସବୁ ମିଛ' । ୩୨ ।

୩୩ଶ ପଦ—ଶୁଣି ( ରାବଣଙ୍କ କଥା ଶୁଣି ) ବିଭୀଷଣ କର ଯୋଡ଼ିଲା ବୋଇଲା ଗୁର ସତ କହୁଛି 'ମିଛ ନୋହେ' । ୩୩ ।

୩୪ଶ ପଦ—ହନୂମାନ ଆସିବା 'ଦେଖି' ବଣା ହେଉ ( ହେଉଛ ) । 'ରାମ' ବାଳକ ବନାଶିବା 'କଥା' ଭଷିବା (କହିବାର) 'ଶୁଣିଛ' । ୩୪ ।

୩୫ଶ ପଦ—ବିଭୀଷଣ କଥା 'ଶୁଣି' ରାବଣ ବୋଲେ ବୃହାର ( ଇନ୍ଦ୍ର ) ନିପୁରାରି ( ଶିବ ) 'ମୋହର' ବଧ ବଗୃରିଲେ କ କଲେ ? 'କିଛି କରି ପାରିଲେ ନାହିଁ' । ୩୫ ।

୩୬ଶ ପଦ—'ଇନ୍ଦ୍ରକୁ' ଦ୍ୱାସ୍ଥ (ଦ୍ୱାରୀ) ପାଶରେ ବସାଇ 'ମହାଦେବଙ୍କୁ' ନର୍ତ୍ତନ ( ତାଣ୍ଡବ ନୃତ୍ୟ ) ବରଚ ( କର ) 'ଏମନ୍ତ' ବୋଲୁ ( ବୋଲନ୍ତେ ) ଲଙ୍ଘିଲେ 'କି' 'ନୃତ୍ୟ ନ କଲେ' 'ଏହା ମନରେ' ଘେନ ( ବିଗୃର ) । ୩୬ ।

୩୭ଶ ପଦ—'ଇନ୍ଦ୍ରର' ବଜ୍ର 'ମହାଦେବଙ୍କ' ଶୂଳ 'ମୋ ଦେହରେ' ବାଜି ନ୍ଲେମ ବନ୍ଧ ନ କରି 'ପାରିଲା' 'ଏତ' ବାନର ନର 'ମୋହର' କ କରି ପାରି ( କିଛି କରି ପାରିବେ ନାହିଁ ) । ୩୭ ।

ବିଭୀଷଣ କଲା ପ୍ରବିତ୍ରଚନ୍ଦ୍ର । ବିବେକ, କର ଚନ୍ଦ୍ରେ ତୋହର । ୩୮
ବନ୍ଧ ନ ପାରିଲ ପଶାକାଟିକି । ବୃଷାଙ୍କ. ଟିଶ ଥିଲ ଯେ ନେଇ । ୩୯ ।
ବକ୍ତ୍ରରେ ନମ୍ରତ ଚୈତ୍ୟ ନ ମଳ । ବାଳତ,ଫେନେ ବଧ ହୋଇଲ ॥୪୦
ବୋଲନ୍ତି ଲଙ୍କେଶ ସକୋପ ହୋଇ । ବଚନ୍, ପର ଦର୍ପ ଦେଖାଇ ॥
ବସୁଧା ଯୁକ୍ତ ସ୍ୱନାମକ କଟ । ବାହାର, କର ଲଙ୍କାରୁ ଦେଇ । ୪୨ ।
ବିଭୀଷଣ ଆଢ ଗୁଣ ମନ୍ତ୍ରୀ ସଙ୍ଗେ । ବିହଗ, ଗଲା ନଭରେ ରଙ୍ଗେ । ୪୩ ।
ବଳାହକ ପ୍ରାପ୍ତେ ଦିଶେ ଦିବନ୍ତ । ବେତ୍ତାଣ,ବାମ ସେ ବନ୍ଦପନ୍ତ । ୪୪ ।

୩୮ଶ ପଦ – 'ଏମନ୍ତ ଶୁଣି' ବିଭୀଷଣ ପ୍ରତି ଦଶକନ୍ଧର ଭର୍ତ୍ସି ତୋହର ଚନ୍ଦ୍ରେ ବିବେକ (ବିଗ୍ରହ) କଲା । ୩୮ ।

୩୯ଶ ପଦ—ଭୁ ଯେ ବୃଷାଙ୍କ ଟିଶ ( କୈଳାସ ) ନେଇଥିଲୁ 'ଅନ୍ତାଳ ଚୈତ୍ରେଣ୍ଟରେ' ପଶାଚ ଠି କ ବନ୍ଧ ନ ପାରିଲୁ । 'କଳଗର୍ବ ଏ କରୁଛୁ ଏହାଭାବ' । ୩୯ ।

୪୦ଶ ପଦ—'ତ୍ୱ ଙ୍କ' ବକ୍ତ୍ରରେ ନମ୍ରତ ଚୈତ୍ୟ ନ ମଳ ! 'ପୁଣି' ବାଳକ (କଳର) ଫେନେ (ଫେଣରେ) ବଧ ହୋଇଲ । ୪୦ ।

୪୧ଶ ପଦ—ଲଙ୍କେଶ (ରାବଣ) ସକୋପ (କୋପଯୁକ୍ତ) ହୋଇ କହିଲ 'କି ରେ ! ତୁ ମୋତେ' ପର (ଶତ୍ରୁ) ଦର୍ପ (ଗର୍ବ) ଦେଖାଉଛୁ ( ଜଣାଉଛୁ ) 'ବୃଥା ଅହଙ୍କ ନହିଲ' ✝ । ୪୧ ।

୪୨ଶ ପଦ—ବସୁଧା ( ମହୀ )-ଯୁକ୍ତ ସ୍ୱନାମ ( ରାବଣ..ମହୀରାବଣକୁ ) କହି ଲଙ୍କାରୁ ବିଭୀଷଣଙ୍କ ଚରଣ ବାହାର କରି ଦେଇ (ଦେଲା) । ୪୨ ।

୪୩ଶ ପଦ—'ବିଭୀଷଣ' ✝ ବିବିଧ ଆଢ ଗୁଣମନ୍ତ୍ରୀ ସଙ୍ଗେ 'ରଙ୍ଗେ' ରଙ୍ଗେ ( ଆନନ୍ଦେ ) ନଭରେ ( ଆକାଶରେ ) ବିହଗ ଗଲା ( ପକ୍ଷୀପ୍ରାୟ ) ଉଡ଼ିଗଲା । ୪୩ ।

୪୪ଶ ପଦ—ବଳାହକ ( ମେଘ ) ପ୍ରାପ୍ତେ ଉଦେ ( ଉଠମାନଙ୍କର ) ଦିଶନ୍ତି 'ମେଘମାନଙ୍କ ନେତ୍ରାଣ ନାମ ଶୁଣି ପିଲା ... ) ବନ୍ଦପନ୍ତ କ ॥

*— ଈଶ୍ୱରେଚ୍ଛା ଗରୀୟସୀ ଏହାର ।
✝— ଉପଦେଶୋ ହି ମୂର୍ଖାଣାଂ ପ୍ରକୋପାୟ ନ ଶାନ୍ତୟେ ।
✝— ଉତସ୍ତତ୍ତ୍ୱଭିଃ ସହମନ୍ତ୍ରି ପୁତ୍ରୈରୁପେତ୍ୟ ରକ୍ଷଃକୁଳଧୂମକେତୁଃ ।

ବଦନେ ସ୍ୱେଦ ଜଳବିନ୍ଦୁ ପ୍ରକଟ । ବାସବ, ଧନୁପରି ମୁକୁଟ ।୪୫।
ବହଇ ଶ୍ୱାସ ଝଂଝାନିଳ ବତ । ବଚନ, ଘୋଷ କରି ଜନିତ ।୪୬।
ବନୀକାପତ ମହୀଧର ତୁଳା । ବଳାସ, ଆସି ତା ପାଶେ କଲା ।୪୭।
ବଟ ସୁବେଳେ ରାମ ବିଷ୍ଣୁ ସ୍ଥିତେ । ବଧିବେ, ରକ୍ଷପ୍ରଳୟ ସତେ ।୪୮।
ବାର୍ତ୍ତାପାଇ ରାମ ରାଜ ପ୍ରେଷଣ । ବଦନେ, ଜ୍ୟୋତିର୍ବିଦ ଲକ୍ଷ୍ମଣ ।୪୯।
ବୁଡ଼ାଇ ମାନପାତ୍ର କରି ଜଳେ । ବୁଝିଲେ, ଶୁଭ ଅଶୁଭ ବେଳେ ।୫୦।

---

୪୫ଶ ପଦ—'ତାଙ୍କ ଦେହରୁ' ବନ୍ଧେ ( ବହି ପଡ଼ୁଥିବା ) ସ୍ୱେଦ (ଝାଳ) ଜଳବିନ୍ଦୁ ( ମେଘ ଜଳବିନ୍ଦୁ ପ୍ରାୟ ) ପ୍ରକଟ 'ହେଲା' । ମୁକୁଟ ( ତାଙ୍କ ଶିରର ମୁକୁଟ) ବାସବ' (ଇନ୍ଦ୍ର ) ଧନୁ ପରି 'ଅଟେ' । ୪୫ ।

୪୬ଶ ପଦ—ବହଇ (ତାଙ୍କର ବହୁଥିବା) ଶ୍ୱାସ ( ନିଶ୍ୱାସ ) ୧ଝଂଝାନିଳବତ ( ଝଂଝାପବନ ପରି ) 'ହୋଇଛି' । ବଚନ ( ବିଭୀଷଣ କଥା ) ଘୋଷ (ଘନ ଗର୍ଜନ ) ଜନିତ ହେଲା । ୪୬ ।

୪୭ଶ ପଦ—ବନୀକାପତ ( ସୁଗ୍ରୀବ ) ମହୀଧର ( ପର୍ବତ ) ତୁଳା ( ତୁଲ୍ୟ ) ହେଲା ତା ପାଶେ ( ବିଭୀଷଣ ) ଆସି ବିଳାସ 'କଲା' ପର୍ବତରେ ମେଘ ବିଳାସ କରଇ । ଏ ରୂପକ ହେଲା । ୪୭ ।

୪୮ଶ ପଦ—ସୁବେଳେ (ସୁବେଳ ପର୍ବତ) ବଟ ( କଳ୍ପବଟ ) ହେଲା ଯହିଁରେ ରାମ 'ରୂପୀ' ବିଷ୍ଣୁ ସ୍ଥିତେ ( ସ୍ଥିତି ହେବା ମାତ୍ରେ ) ରକ୍ଷପ୍ରଳୟ (ରାକ୍ଷସ ବଂଶ ନାଶକ) ବଧିବେ (ନାଶିବେ) । ସତେ ( ଏହା ସତ୍ୟ ଅଟେ ) ॥

୪୯ଶ ପଦ—'ବିଭୀଷଣ ଆସିବାର' ବାର୍ତ୍ତା ପାଇ ରାମରାଜା ଜ୍ୟୋତିର୍ବିଦ (୨ଜ୍ୟୋତିର୍ବିଦ) ଲକ୍ଷ୍ମଣ ୨ଜ୍ୟୋତିର୍ବିଦ (ଜ୍ୟୋତିଃଶାସ୍ତ୍ରବେତ୍ତା) ହେଲେ 'ତାଙ୍କୁ' ବଦନେ (ବେଗରେ) ପ୍ରେଷଣ 'କଲେ' ( ପଠାଇଦେଲେ ) । ୪୯ ।

୫୦ଶ ପଦ—'ବିଭୀଷଣଙ୍କୁ' ମାନପାତ୍ର ( ବେଳା ପରିମାଣ ପାତ୍ର ଘଟୀ ଯନ୍ତ୍ର—ଖଣ୍ଡୁରି) କରି ଜଳେ ବୁଡ଼ାଇ ବେଳେ ( ଅରେ ) ଶୁଭ ଅଶୁଭ

---

୧—ଝଂଝାନିଲଃ ପ୍ରାବୃଷିକ ଇତି ।
୨—ସାମ୍ବତ୍ସରେ ଜ୍ୟୋତିଷିକୋ ଦୈବଜ୍ଞ ଗଣକାବପି ଇତ୍ୟମରଃ ।

ବିହରି ହରି ସଙ୍ଗେ ହରି ହେଲା । ବିଲୋକି, ଗ୍ରାମ ଗ୍ରାମ ପଠିଲା ।୫୧
ବିନାଶେ ଖର ତେଜ ଆହ୍ଲାଦେ । ବିଗୃହେ ହରି କରି ତା ହ୍ରଦେ
ବିଶ୍ୱ-ଆତ୍ମା ରୂପସୁମନା ମୋଦେ । ବିଗୃହେ, ହରି କରି ତା ହ୍ରଦେ ॥
ବିଲକ୍ଷିତ ଏ ହରି ବନ୍ଦେ ପାଦେ । ବିଗୃହେ, ହରି କରି ତା ହ୍ରଦେ ॥

---

'ଛଆ' ବୁଝିଲେ 'ଏ ଅବଶ୍ୟ ସୀ ନୁହେ ବୋଲି ଜାଣି ପାରିଲେ' । ଜ୍ୟୋତିର୍ବିତ୍ରମାନେ ଖୁରପାଣ ଜଳରେ ବୁଡ଼ାଇ ଶୁଭ ଅଶୁଭ ଦେଲା ବୁଝନ୍ତି ସେରୂପ ଲକ୍ଷଣ ବୁଝିଲେ ।

୫୧ଶ ପଦ—ହରି (ବାନରଙ୍କ) ସଙ୍ଗେ ବିହରି (କ୍ରୀଡ଼ା କରି) ହରି (ଶୁକ ପକ୍ଷୀ) ହେଲା । ବିଲୋକି (ରାମଙ୍କୁ ଦେଖି) ଗ୍ରାମ ଗ୍ରାମ ପଠିଲା (ଉଡ଼ିଲା) । ୫୧ ।

୫୨ଶ ପଦ—ବିନାଶେ (ବିନାଶ କରିଥିଲେ) ଖରତେଜ (ଖର ରାକ୍ଷସର ତେଜକୁ) 'ଏମନ୍ତ ଯେଉଁ' ଆହ୍ଲାଦ (ସଂସାର ରକ୍ଷେରୂପ ଆହ୍ଲାଦ) 'ତହିଁରେ ଯୁକ୍ତ ଥିବାରୁ' ତା ହୃଦେ (ତାହାର ମନରେ) ହରି (ଚନ୍ଦ୍ର) ଏ 'ଏମନ୍ତ' କରି ବିଗୃହେ କାହିଁକିନା, ଚନ୍ଦ୍ର ଖରତେଜ (ତୀକ୍ଷ୍ଣ ତେଜକୁ) ଆହ୍ଲାଦରେ ବିନାଶ କରେ । ୫୨ ।

୫୩ଶ ପଦ—ବିଶ୍ୱ ଆତ୍ମରୂପ (ସଂସାରର ଆତ୍ମା ସ୍ୱରୂପ) 'ଅଟନ୍ତି' । ସୁମନା ମୋଦେ (ଦେବତାଙ୍କୁ ଆନନ୍ଦିତ କରନ୍ତି) 'ଏଣୁ' ତା ହୃଦେ (ତା ଚିତ୍ତରେ) ହରି (ସୂର୍ଯ୍ୟ ଏ) 'ଏମନ୍ତ' କରି ବିଗୃହେ (ବିଗୃହିଲା) । କାହିଁକି ନା, ସୂର୍ଯ୍ୟ ବିଶ୍ୱାତ୍ମରୂପ ସଂସାର-ବ୍ୟାପକ ଅଟନ୍ତି ଅଥବା ବିଶ୍ୱ (ସନ୍ତମାନଙ୍କର) ଆତ୍ମାରୂପ ଅଟନ୍ତି । ଛନ୍ଦୋମୟ ମୂର୍ତ୍ତିରୁ ବ୍ରହ୍ମସ୍ୱରୂପମାନଙ୍କରେ ଯୁକ୍ତ ଅଟନ୍ତି । ୫୩ ।

୫୪ଶ ପଦ—ବିଲକ୍ଷିତ ଏ (ଏ ଚନ୍ଦ୍ର ସୂର୍ଯ୍ୟ ଲକ୍ଷିତ ନୁହନ୍ତି) । ହରି (ବାନରମାନେ) ପାଦେ (ପାଦଦ୍ୱୟ) ବନ୍ଦେ (ବନ୍ଦୁଅଛନ୍ତି) 'ଏଣୁ' ତା ହୃଦେ ହରି (ବିଷ୍ଣୁ) କରି ବିଚାରେ । କାହିଁକିନା, ବିଷ୍ଣୁଙ୍କ ପାଦ ଏହୁଁ (ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ) ଏମାନେ ବନ୍ଦନ୍ତି । ୫୪ ।

---

୧ — ହରି ଯମାର୍କ ଚନ୍ଦ୍ରେନ୍ଦ୍ର ସମୋପେନ୍ଦ୍ର ମସ୍ତକପ୍ରୁ ଭଜ୍ୟମସ୍ତ ।

ବାରେ ଫଣସୂ ଦଣ୍ଡକ ରଭସେ । ବୈକୁଣ୍ଠ ମୂର୍ତ୍ତି ଦଣ୍ଡକେ ଦିଶେ ॥
ବସୁଧାପାତ ଦଣ୍ଡକ ସଦୃଶୀ । ବୋଇଲେ, ଉଠ ଦଣ୍ଡକବାସୀ ।୫୬।
ବିନ୍ୟସ୍ତ କରି କକ୍ଷେ ଉଭା ହୋଇ । ବସାଇ, ତାର ଚିତ୍ତ ରସାଇ ॥
ବିଶ୍ୱରେ ରାମ ନାମ ଥିବା ଯାଏ । ବିରହେ, ଥିବୁ ବରଦାୟକ ।୫୮।
ବାହାର କରି ଯମଦାନ୍ତ ବାସ । ବାନ୍ଧିଲେ, ଶାଢ଼ୀ ହେଲୁ ଲଙ୍କେଶ ॥
ବ୍ୟବସ୍ଥିତେ ରାମ ପଦ୍ମରୁ ତହିଁ । ବ୍ୟବସ୍ଥା, ସର୍ବ ଲଙ୍କାର କହି ।୬୦।

୫୫ଶ ପଦ—ରଭସେ ( ବେଗରେ ) ବାରେ ( ଥରେ ) ଫଣସୂଦଣ୍ଡକ ( ଚନ୍ଦ୍ର ସୂର୍ଯ୍ୟାଦି ଫଣସୂର ଦେଖିବା ) 'ଦେଲ' । କାରଣ, 'ତାକୁ' ଦଣ୍ଡକେ ( ଦଣ୍ଡ ମାତ୍ରକେ ) ବୈକୁଣ୍ଠ ମୂର୍ତ୍ତି ( ନାରାୟଣ ମୂର୍ତ୍ତି ) ଦିଶେ (ଦେଖା ଗଲା) 'ବାନରମାନେ ଜନ୍ମ ଚନ୍ଦ୍ର ସୂର୍ଯ୍ୟପରି ଦିଶିଲେ' ।୫୫।

୫୬ଶ ପଦ—'ବିଭୀଷଣଙ୍କୁ ବୈକୁଣ୍ଠମୂର୍ତ୍ତି ଦିଶନ୍ତେ' ଦଣ୍ଡକ ସଦୃଶୀ (ଦଣ୍ଡତୁଲ୍ୟ ହୋଇ) ବସୁଧାପାତେ ( ଭୂମିରେ ପଡ଼ିଲା ) 'ତାହାଙ୍କୁ ଦେଖି' ଦଣ୍ଡକବାସୀ (ରାମ) ଉଠ ବୋଲନ୍ତେ 'ଉଠ ଲ' । ୫୬ ।

୫୭ଶ ପଦ—କର ( ହସ୍ତକୁ ) କକ୍ଷେ ( କାଖରେ ) ବିନ୍ୟସ୍ତ 'କରି' ( ରଖି ) ଉଭା ହୋଇ ( ହେଲା ) 'ତାକୁ ପାଖରେ' ବସାଇ ତାର ଚିତ୍ତ ରସାଇ (ରସାଇଲେ) । ୫୭ ।

୫୮ଶ ପଦ—ବିଶ୍ୱରେ ( ସଂସାରରେ ) 'ମୋ' ରାମ ନାମ ଥିବା ଯାଏ ( ଯାଏ ) ବିରହେ ( ଏ ଦେହରେ ) ଥିବୁ 'ଏମନ୍ତ' ବରଦାୟକ 'ହେଲେ' ତାକୁ ଏରୂପ ବର ଦେଲେ । ୫୮ ।

୫୯ଶ ପଦ—ଯମଦାନ୍ତ ( ଦନ୍ତାଗ୍ର ଶସ୍ତ୍ରରୁ ) ବାସ ( ପତନୀ ବସ୍ତ୍ର ) ବାହାର କରି (କାଢ଼ି) ଶାଢ଼ୀ ବାନ୍ଧିଲେ 'ତୁ ଆଜଠାରୁ' ଲଙ୍କେଶ ହେଲୁ । ଅଥବା ଯମତର ( ଯମ ଭୟରୁ ) ବାହାର କରି ଶାଢ଼ୀ ବାନ୍ଧିଲେ ବାସ (ଏତ ବସ୍ତ୍ର ଦ୍ୱାରା) 'ତୁ ଆଜଠାରୁ' ଲଙ୍କେଶ ହେଲୁ । ୫୯ ।

୬୦ଶ ପଦ—'ତଦନ୍ତେ' ରାମ ବ୍ୟବସ୍ଥିତେ ( ବିଧିମତେ ଲଙ୍କାରାଜ୍ୟ କରି ) ପଦ୍ମରୁ ( ପଦ୍ମରନ୍ତେ ) ତହିଁ ( ସେଠାରେ ) ଲଙ୍କାର ସର୍ବ (ସମସ୍ତ) ବ୍ୟବସ୍ଥା କହି (ବିଭୀଷଣ କହିଲେ) । ୬୦ ।

ବିରଜାମଣ୍ଡଳେ ତପସ୍ୟା କୃତ । ବ୍ରହ୍ମାର, ବରେ ଜଗତଜିତ ।୬୧।
ବାଷଠି ପଦେ ଉପଇନ୍ଦ୍ର ଭଞ୍ଜ । ବିରଚେ, ଶୁଦ୍ଧ ସୁଜନେ ହେଜ ।୬୨।

— ୫୦ —

---

୬୧ଶ ପଦ—'ରାବଣ' ବିରଜା ମଣ୍ଡଳେ, ତପସ୍ୟାକୃତ (ତପକଲାବା) ବ୍ରହ୍ମାର ବରେ ଜଗତଜିତ (ଜଗତକୁ ଜିଣିଥା) ଇଥାମାନ ବହ୍ନୁଳା।

୬୨ଶ ପଦ—ସୁଜନେ (ସୁଜନମାନେ) ହେଜ ବାଷଠି 'ପଦେ' (ପଦରେ) ଉପଇନ୍ଦ୍ରଭଞ୍ଜ 'କବି' ଏ ଶୁଦ୍ଧେ ବିରଚେ (ବିରଚିଲେ) ।୬୨।

---

ପ୍ରିଣ୍ଟର ଶ୍ରୀ ବସନ୍ତ ଷାଠିଆ
ଶ୍ରୀ ରାଧାନାଥ କୋ-ଅପରେଟିଭ ପ୍ରେସ, କଟକ-୨,—୧୯୬[illegible]

ପ୍ରଚ୍ଛଦପଟ୍ଟ ମୁଦ୍ରଣ : ମନମୋହନପ୍ରେସ କଟକ-୨